# ମହତାବ ପରିକ୍ରମା


ଉପଦେଷ୍ଟା

ଶ୍ରୀ ସତ୍ୟପ୍ରିୟ ମହାନ୍ତି

ସଭାପତି

ଶ୍ରୀ କାହ୍ନୁ ଚରଣ ଲେଙ୍କା

ସଂପାଦକ

ଶ୍ରୀ କମଳ ଲୋଚନ ମହାନ୍ତି

ପରିକଳ୍ପନା ସଂପାଦକ

ଶ୍ରୀ ନଗେନ୍ଦ୍ର ମୋହନ ମହାନ୍ତି



ଏକାମ୍ର ଥିଏଟର୍ସ, ଭୁବନେଶ୍ୱରଙ୍କ ଦ୍ୱାରା ପ୍ରକାଶିତ

ମହ୍ତାବ ପରିକ୍ରମା

*

ପ୍ରକାଶକ
ଏକାମ୍ର ଥିଏଟର୍ସ,
୨୦୯୭, ରାମେଶ୍ୱର ପାଟଣା
ଭୁବନେଶ୍ୱର

*

ପ୍ରକାଶ କାଳ :
ନଭେମ୍ବର ୧୯୮୦

*

ମୁଦ୍ରଣ :
ଅଗ୍ରଣୀ ପ୍ରେସ୍,
ଭୁବନେଶ୍ୱର-୧

*

ମୂଲ୍ୟ :
ପନ୍ଦର ଟଙ୍କା

Paper used for Printing of this book was made available by Government of India at conessional rates.

JAGAJIVAN RAM

Tele : 37 65 65

KRISHNA MENON MARG.
NEW DELHI-110001

*the 17 NOVEMBER 1980*

I am very happy to know that a special literary supplement entitled "Mahatab Parikrama" is going to be brought out on the 82nd Birthday of Dr. Hare Krishna Mahatab, on 21st November, 1980. Dr. Mahatab is one of the senior most leaders of the nation who dedicated his life for obtaining freedom and for building it on a formidable foundation of Gandhian philosophy. His contribution towards upliftment and betterment of Oriya people during his tenure as a Chief Minister of Orissa is very well known. He is an eminent scholar and writer of renown and he will ever be remembered for his outstanding literary contributions. The nation requires the guidance and advice of a leader of his calibre in solving the present pressing problems.

Dr. Mahatab is the leading light and we must honour him with all sincerity.

I wish every success to the special literary suppliment.

JAGJIVAN RAM

# ପରିକ୍ରମାର ଲେଖକ ଲେଖିକା

ପଣ୍ଡିତ ପ୍ରବୋଧକୁମାର ମିଶ୍ର
ଡଃ ହରେକୃଷ୍ଣ ମହତାବ
ନିତ୍ୟାନନ୍ଦ କାନୁନଗୋ
ହରିହର ମହାପାତ୍ର
ରାଜକିଶୋର ଦାସ
କମଳ ଲୋଚନ ମହାନ୍ତି
ଗୋପୀନାଥ ମହାନ୍ତି
କାଳନ୍ଦୀଚରଣ ପାଣିଗ୍ରାହୀ
ହରିହର ପଟେଲ
ସାଠକଣ୍ଡ ହୋତା
ମହାପାତ୍ର ନୀଳମଣି ସାହୁ
ଡଃ ନଟବର ସାମନ୍ତରାୟ
ବ୍ରଜକିଶୋର ଧଳ
ଡଃ ଗୌରାଙ୍ଗ ଚରଣ ମହାପାତ୍ର
ହେମନ୍ତକୁମାର ଦାସ
ଡଃ ରାଜେଶ୍ୱରୀ ଦଳବେହେରା
ରମେଶଚନ୍ଦ୍ର ଧଳ
ଡଃ ମନ୍ମଥନାଥ ଦାସ
ଡଃ ପ୍ରହ୍ଲାଦ ପ୍ରଧାନ
ଡଃ ବୈଦ୍ୟନାଥ ମିଶ୍ର
ଡଃ ନବୀନକୁମାର ସାହୁ
ଦୁର୍ଗାଚରଣ କୁଅଁର
ଗୋବିନ୍ଦ ମିଶ୍ର
ରାଜକିଶୋର ରାୟ
ଚନ୍ଦ୍ରଶେଖର ମହାପାତ୍ର
ଶାନ୍ତନୁକୁମାର ଆଚାର୍ଯ୍ୟ
ରଜନୀକାନ୍ତ ଦାସ
ପରମାନନ୍ଦ ଅଧିକାରୀ

ହୃଦାନନ୍ଦ ରାୟ
ନରହରି ଉପାଧ୍ୟାୟ
ଅମର ସିଂ
ଫକୀର ହୁସେନ
ସୁରେନ୍ଦ୍ରନାଥ ଶର୍ମା
ନନ୍ଦନ ଶତପଥୀ
ଶ୍ରୀହର୍ଷ ମିଶ୍ର
ବିଭୂତି ପଟ୍ଟନାୟକ
ରାଧାଶ୍ୟାମ ଦାସ
ବିଜୟଲକ୍ଷ୍ମୀ ଲେଙ୍କା
ରବୀନ୍ଦ୍ରନାଥ ଦାସ
ବଂଶୀଧର ଭୂୟାଁ
ଚିନ୍ତାମଣି ବେହେରା
ଗଣେଶପ୍ରସାଦ କରଶର୍ମା
ଜୟନ୍ତକୁମାର ମହାନ୍ତି
କୁଳମଣି ମହାରଣା
ବିଶ୍ୱମ୍ଭର ପଣ୍ଡା
ଜ୍ୟୋତିପ୍ରକାଶ କର



## "ଜୟତୁ ମହତାବ୍"

କୀର୍ତ୍ତିସ୍ତେ ନନ୍ଦଭରତେ ହସତି ବୈ
ସଂଗ୍ରାମଶୀଳା ମତିଃ ।
ଜାଗ୍ରସ୍ତେ ନବ-ଜୀବନେ ଜନଯୁତ୍ତ
ପ୍ରାଣପ୍ରଦା ସଂଗତିଃ ।
ହେ ସତ୍ୟୋନ୍ନତ-ପୌରୁଷୈକଜନକ !
ସ୍ଫୂର୍ତ୍ତୀ ଚ ତେ ଭାରତୀ
ଉତ୍କୃଷ୍ଟଂ ସକଳଂ ସ୍ମରନ୍ତି ବିବୁଧାଃ
ପ୍ରୀତାତ୍ମନା ସ୍ଫୂର୍ତ୍ତିଧୃକ୍ ।
ନବୋତ୍କଳସ୍ୟ ପ୍ରତିପତ୍ତି-ବାଂଧବ !
ତ୍ୱମେବ 'ତାତସ୍ତ୍ୱ ବନ୍ଧୁସ୍ତ୍ୱ ନନୁ
ଜୟନ୍ତୁ ଜାତଃ ,ନବ-ଶକ୍ତି-ମଣ୍ଡିତା
ଚକାସ୍ତି ସଦ୍‌ଭାରତମଣ୍ଡଳେଽଖିଳା ।

ପଣ୍ଡିତ **ପ୍ରବୋଧ କୁମାର ମିଶ୍ରଃ**

# ୧୯୨୧ ସାଲର ଗୋଟିଏ ଚିତ୍ର

ହରେକୃଷ୍ଣ ମହତାବ୍

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ଇଉରୋପୀୟ ମହାଯୁଦ୍ଧ ପରେ 'ଶାନ୍ତି, ଶାନ୍ତି' ରବରେ ପୃଥିବୀ କମ୍ପୁଥିଲା ଓ ଇଂଲଣ୍ଡ ହିଁ ସର୍ବୋଚ୍ଚ ସ୍ୱରରେ ଏହି ଶାନ୍ତି ବାର୍ତ୍ତା ପ୍ରଚାର କରୁଥିଲା, ସେତେବେଳେ କିଏ ବିଶ୍ୱାସ କରିବ ଯେ ଓଡ଼ିଶା ପରି ଭୂମିରେ ପୂର୍ଣ୍ଣ ଅହିଂସାତ୍ମକ ଗୋଟିଏ ଆନ୍ଦୋଳନକୁ ବନ୍ଦ କରିବା ପାଇଁ କେତେ ଲୋକ ଭୟଙ୍କର ଭାବରେ ଘରପୋଡ଼ି ଦେବା ଉପାୟ ଅବଲମ୍ବନ କରିଥିଲେ । ସେତେ ବେଳର ବିଭୀଷିକା ବର୍ତ୍ତମାନ ସୁଦ୍ଧା ପୁରପଲ୍ଲୀର ଲୋକେ ଭୁଲି ନାହାନ୍ତି । ଏ ଭୟଙ୍କର କାଣ୍ଡର କେନ୍ଦ୍ର କଟକରେ ଥିଲା ଓ ଭିନ୍ନ ଭିନ୍ନ ସହର, ମଫସଲରେ ଏ ଘୃଣ୍ୟ କାର୍ଯ୍ୟ ସେଇଠୁଁ କରା ହୋଇଥିଲା । ଏ ବିଷୟ ବର୍ଣ୍ଣନା କଲାବେଳେ ଲେଖକ ବଡ ସାବଧାନ ଅଛି, କାଳେ ଅତିରଞ୍ଜିତ ଦୋଷରେ ପଡ଼ିଯିବ; ମାତ୍ର, କମେଇ କରି ଲେଖିଲେ ମଧ୍ୟ ଲେଖକ ସେ ଦୋଷରୁ ବୋଧହୁଏ ମୁକ୍ତି ପାଇବନାହିଁ । କାରଣ ସେ ଭୟଙ୍କର ବ୍ୟାପାର ମନୁଷ୍ୟର କଳ୍ପନାତୀତ ।

ଖୁବ୍ କମ୍‌ରେ ଅନ୍ତତଃ ୨୦,୦୦୦ ଘର ପୋଡା ହୋଇଥିଲା । ଏକା କଟକରେ ପ୍ରାୟ ୮୦୦୦ ଘର ପୋଡା ହୋଇଥିଲା । ପ୍ରାୟ ଏକମାସ ପର୍ଯ୍ୟନ୍ତ ସର୍ବତ୍ର ଘରପୋଡ଼ିର ଆତଙ୍କ ବ୍ୟାପୀ ରହିଥିଲା । ଲୋକେ ରାତିରେ ଶୋଇଲେ ନାହିଁ । ରାତିଦିନ 'ହେଇ ଗଲାରେ, କିଏ ଗଲାରେ' ବୋଲି ଚିତ୍କାର କରି ଘର ଜଗି ବସିଲେ । ରାତି ଅଧରେ ସ୍ତ୍ରୀଲୋକଙ୍କ ଆର୍ତ୍ତନାଦ ବର୍ତ୍ତମାନ ସୁଦ୍ଧା ଲେଖକର କାନରେ ବାଜୁଛି । ଦିନ ବେଳେ ସୁଦ୍ଧା ଘରେ ନିଆଁ ଲଗାଇ ଦିଆ ହେଉଥିଲା । ଏହି ଅଗ୍ନିକାଣ୍ଡ ଲୋକଙ୍କ ଧୈର୍ଯ୍ୟ ଓ ଅହିଂସାରେ ପଦାଘାତ କରି ଅଗ୍ରସର ହେଲା । କିଏ ଘରେ ନିଆଁ ଲଗାଉଥିଲା, ଠିକ୍ କରି କହି ହେବ ନାହିଁ, ମାତ୍ର ଲୋକେ ବିଶ୍ୱାସ କରନ୍ତି ଯେ କେତେକ ପୋଲିସ କର୍ମଚାରୀ ଏ ଜଘନ୍ୟ କାର୍ଯ୍ୟ କରୁଥିଲେ । ପୋଲିସ ବାଲା କହୁଥିଲେ ଯେ କଂଗ୍ରେସ୍‌ର ଲୋକେ ନିଆଁ

ଲଗାଇ ଦେଉଛନ୍ତି । ସହରରେ ଓ ଗାଁରେ ପୋଲିସ କନେଷ୍ଟବଳ ଚୌକିଦାର-ମାନଙ୍କୁ ଘର ପୋଡ଼ି ଅଭିଯୋଗରେ ଧରି ଲୋକେ ମାଡ଼ ଦେଉଥିଲେ । ଥରେ କଟକରେ ଜଣେ ପୋଲିସ କନେଷ୍ଟବଳକୁ ଲୋକେ ଧରି ମାଡ଼ି ବେଦେଡ଼ା କରି ଗଡ଼ାରେ ପକାଇ ଦେଲେ । କଂଗ୍ରେସର କେତେଜଣ କର୍ମୀ ତାକୁ ସ୍ୱରାଜ୍ୟ ଆଶ୍ରମକୁ ନେଇ ଆସି ତା'ର ସର୍ବପ୍ରକାର ଶୁଶ୍ରୂଷା କରିଥିଲେ । ତା'ର ପୋଷାକ ରକ୍ତରେ ଭିଜି ଯାଇ ଥିବାରୁ ତା'ର ପୋଷାକ ବଦଳାଇ ଅନ୍ୟ ଲୁଗା ପିନ୍ଧିବାକୁ ଦେଇଥିଲେ । ସ୍ୱରାଜ୍ୟ ଆଶ୍ରମରେ ଖଦଡ଼ ଛଡ଼ା ତ ଅନ୍ୟ ଲୁଗା ନଥିଲା; କନେଷ୍ଟବଳ ଯେଉଁ ଲୁଗା ଖଣ୍ଡି ପିନ୍ଧିଲା ସେଖଣ୍ଡି ତେଣୁ ଖଦଡ ଥିଲା । କନେଷ୍ଟବଳ ଆଶ୍ୱସ୍ତ ହୋଇ ତା' ସ୍ଥାନକୁ ଚାଲିଗଲା । ଏହି ଘଟଣାକୁ ପୋଲିସ ଚିତ୍ର କଲେ ଯେ କଂଗ୍ରେସର ଲୋକେ ଜଣେ କନେଷ୍ଟବଳକୁ ମାରି ଜବରଦସ୍ତି ଖଦଡ ପିନ୍ଧେଇ ଦେଇଛନ୍ତି । ଜବରଦସ୍ତି ମହାସଭାରେ ମିଶାଇବା ପାଇଁ ଘର ପୋଡ଼ି ଦେଇଛନ୍ତି । ଏହାହିଁ କଂଗ୍ରେସର ଲୋକଙ୍କ ବିରୁଦ୍ଧରେ ଅଭିଯୋଗ ଥିଲା । ଅହିଂସାର ଅବତାର ପଣ୍ଡିତ ଗୋପବନ୍ଧୁଙ୍କ ବିରୋଧରେ ମଧ୍ୟ ଏହିପରି ଭାବରେ ସାକ୍ଷ୍ୟ ଦିଆ ହୋଇଥିଲା । ଗୋପବନ୍ଧୁ କଂଗ୍ରେସରେ ଲୋକଙ୍କୁ ମିଶାଇବା ପାଇଁ କିପରି ଯୋର ଜବରଦସ୍ତି କରୁଛନ୍ତି, ଏକଥା ପ୍ରମାଣ କରିବାକୁ ଯାଇ ଉପରୋକ୍ତ କନେଷ୍ଟବଳ ଘଟଣା ମଧ୍ୟ କୁହା ହୋଇଥିଲା । ପୋଲିସ ଯାହା କହୁଥାଉ ପଛକେ । ପ୍ରକୃତ ଘଟଣା ତାହା ନଥିଲା । କାରଣ ଅନେକ କଂଗ୍ରେସରେ ଯୋଗ ଦେଇଥିବା ଲୋକର ଘର ମଧ୍ୟ ପୋଡ଼ି ଯାଇଥିଲା ଓ ଓ ବହୁ ଲୋକଙ୍କୁ ପୋଲିସ କର୍ମଚାରୀଙ୍କୁ ଘରପୋଡ଼ି ଅଭିଯୋଗରେ, ଧରି ମାରିବା ଅପରାଧରେ ଜେଲ ଦିଆ ହୋଇଥିଲା । ଲୋକେ ଯେ ପୋଲିସ କର୍ମଚାରୀଙ୍କୁ ସନ୍ଦେହ କରୁଥିଲେ ଏଥିରେ ପ୍ରଶ୍ନ କରିବାର କିଛି ନାହିଁ । ଜନମତ ଏପରି ଉତ୍‌କ୍ଷିପ୍ତ ହୋଇ ଉଠିଥିଲା ଯେ ପୋଲିସ କର୍ମଚାରୀମାନେ ଘରୁ ବାହାରି ପାରୁ ନଥିଲେ । ପ୍ରତ୍ୟେକ ପୋଲିସ ଲୋକଙ୍କୁ ସନ୍ଦେହ କରି ବସ୍ତିକୁ ବା ସାହିକୁ ଲୋକେ ଛାଡ଼ି ଦେଉ ନାହିଁ । ଏହି ସମୟରେ କଟକରେ ରିଜର୍ଭ ପୋଲିସ କନେଷ୍ଟବଲମାନେ ଧର୍ମଘଟ କରିବେ ବୋଲି ବସିଥିଲେ । ଧର୍ମଘଟର କାରଣ ସେମାନଙ୍କ ବିରୋଧରେ ଲୋକମତ ବୋଲି କୁହା ଯାଇଥିଲା । କଟକ ପୋଲିସଙ୍କ ଏ କାର୍ଯ୍ୟ ସାଇମନ କମିଶନ ରିପୋର୍ଟ ପ୍ରଥମ ଭାଗରେ ସ୍ଥାନ ପାଇଛି ।

ଲେଖକ ପକ୍ଷରେ ଏହା ନିତାନ୍ତ ଦୁଃଖର ବିଷୟ ଯେ, ଘର ପୋଡ଼ିକୁ କିଏ କରଉ ଥିଲା, ସେ ଆଜି ଜଗତକୁ ଘୋଷଣା କରିବାକୁ ସମର୍ଥ ନୁହେଁ । ସେତେବେଳକାର ବାଲେଶ୍ୱର ପୁଲିସ ସାହେବ ଯଦି ବଞ୍ଚିଥାନ୍ତେ ଓ ଲେଖକ ଯଦି ସେ ସମୟରେ ହଠାତ୍ ଧରହୋଇ ଜେଲ ଚାଲିଯାଇ ନଥାନ୍ତା ତେବେ ସେ ଆଜି ନିର୍ଭୟରେ କହି ଦିଅନ୍ତା ଘରପୋଡ଼ାଳିମାନେ କିଏ !

ଯେତେବେଳେ ଘରପୋଡ଼ିର ଆତଙ୍କ କଟକରୁ ବାଲେଶ୍ୱର ବ୍ୟାପିଲା ଓ ସଙ୍ଗେ ସଙ୍ଗେ ଏକ କଥା ମଧ୍ୟ କୁହା ଗଲାଯେ କଂଗ୍ରେସର ଲୋକେ ଘରପୋଡ଼ି ଦେଇଛନ୍ତି; ଲେଖକ ସେତେବେଳେ ବାଲେଶ୍ୱର ତତ୍‌କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ ଶ୍ୟାମଲାଲ ଗୁପ୍ତ ଓ ପୋଲିସ ସାହେବ ହଡ୍‌ସନ୍ ସାହେବଙ୍କଠାରୁ ଲେଖିଥିଲା ଯେ ରାଜନୈତିକ ମତଭେଦକୁ ପଛକୁ ଘଞ୍ଚାଇ ଦେଇ ଉପସ୍ଥିତ ସମସ୍ୟାରେ ଏକ ଯୋଗ ହୋଇ ସହରରେ ଶାନ୍ତି ସ୍ଥାପନ କରିବା କର୍ତ୍ତବ୍ୟ । ଏ ପ୍ରସ୍ତାବରେ ସେ ଦୁହେଁ ଏକମତ ହୋଇଥିଲେ । ଲେଖକର ପରାମର୍ଶ ଅନୁସାରେ ଗୋଟିଏ ସାଧାରଣ ସଭାରେ "ସହର ସଂରକ୍ଷଣ ସମିତି" ନାମରେ ଗୋଟିଏ ସମିତି ଗଠିତ ହେଲା । ଏ ସମିତିର କାମ ହେଲା ସ୍ଥାନେ ସ୍ଥାନେ ପାଣି କଳସୀ ମହଜୁତ ରଖିବା । ଯେଉଁସବୁ ଗରୀବ ଲୋକେ ରାତିସାରା ଘର ଜଗି ଦିନରେ କାମ କରିପାରୁ ନାହାଁନ୍ତି ସେମାନଙ୍କୁ କିଛି କିଛି ଅର୍ଥ ସାହାଯ୍ୟ ଦେବା । ଯେଉଁମାନେ ରାତିସାରା ଘର ଜଗିବା ଯୋଗୁଁ ଦୀପ ଜାଳି ରଖିବା ପାଇଁ ତେଲ ପାଉ ନାହାଁନ୍ତି ସେମାନଙ୍କୁ ତେଲ ଯୋଗାଇବା, ରାତିଦିନ ସହର ପରିକ୍ରମା କରି ସତର୍କ କରାଇବା ଏବଂ ପୋଲିସକୁ ସନ୍ଦେହ କରି କେହି ଯେପରି ମାରଧର ନକରନ୍ତି, ତାହାର ବ୍ୟବସ୍ଥା କରିବା ।

ଏ ସମିତିର ସଭାପତି ଶ୍ୟାମଲାଲ ଗୁପ୍ତ, ସହକାରୀ ସଭାପତି ହଡସନ୍ ସାହେବ୍ ଓ ଲେଖକ ସମ୍ପାଦକ ହୋଇଥିଲେ । ସଭାପତି ପ୍ରଥମେ ଏ ସଭାକୁ ନିଜ ହାତରୁ ୧୦ଟଙ୍କା ଚାନ୍ଦା ଦେଇଥିଲେ । ରାତିଦିନ ସହରତମାମ୍ ପହରା ଦିଆ ହୋଉଥିଲା । କେତେକ ସ୍ଥାନରେ ନିଆଁ ଲଗାଉ ଥିବାବେଳେ ଲୋକକୁ ଧରାହୋଇ ବିଚାର ପାଇଁ ପଠା ହୋଇଥିଲା । ବିଚାରରେ ଏମାନଙ୍କୁ ପାଗଳ ବୋଲି ଘୋଷଣା କରି ଛାଡ଼ି ଦିଆ ଯାଇଥିଲା । ଘଟଣା ଚକ୍ରରେ ଦିନସାରା ଘରେ କବାଟ କିଳି ରହନ୍ତି ଓ

ଘଟିରେ ଏମାନେ ବାହାରନ୍ତି । ଏହିପରି ଦଶବାର ଜଣ ଲୋକ ଧରାପଡ଼ିଲେ । ଏମାନଙ୍କ ସମ୍ବନ୍ଧରେ ବହୁତ ତଥ୍ୟ ଆବିଷ୍କୃତ ହୋଇଥିଲା । ଏସବୁ ହଡ୍‌ସନ ସାହେବଙ୍କୁ କୁହାହୋଇ ଥିଲା । ସେ ହସିଦେଇ କହିଥିଲେ "ଏ ସବୁ ଅନୁସନ୍ଧାନ କରି ଲାଭ ନାହିଁ ।" ଆଶ୍ଚର୍ଯ୍ୟର ବିଷୟ ଏହି ଦଳଟି ଧରା ହେବା ପରେ ଘରପୋଡ଼ି ଆତଙ୍କ ବନ୍ଦ ହୋଇ ଯାଇଥିଲା । "ସହର ସଂରକ୍ଷଣ ସମିତି"ର କାର୍ଯ୍ୟ ଶେଷ ହେଲା । ଯାହା ଯାହା ଏ ସମିତି ଜାଣି ପାରିଥିଲେ ଲେଖା ହୋଇଥିଲା, ମାତ୍ର ଅଳ୍ପଦିନ ପରେ ଲେଖକ ଧରା ହୋଇ ଯିବାରୁ ଓ ଏ ମଧ୍ୟରେ ହଡ୍‌ସନ୍ ସାହେବ ମରି ଯିବାରୁ ସେ ସମିତିର ରିପୋର୍ଟ ପ୍ରକାଶିତ ହୋଇ ପାରିଲା ନାହିଁ । ହଡ୍‌ସନ୍ ସାହେବ୍ ଜଣେ ସଦାଶୟ ଉଚ୍ଚଦରର କର୍ମଚାରୀ ଥିଲେ । ଶାସନ ଯନ୍ତ୍ର ତାଙ୍କ ହୃଦୟକୁ ଗ୍ରାସ କରି ପାରି ନଥିଲା । ଘରପୋଡ଼ି କଥା ମନେଥିବା ପର୍ଯ୍ୟନ୍ତ ତାଙ୍କର ନାମ କଟକର ମନେଥିବ ।

ଗୋଟିଏ କଥା, ହଜାର ହଜାର ଘର ପୋଡ଼ିଗଲା । କିନ୍ତୁ ସରକାରଙ୍କ ତରଫରୁ କୌଣସି ଅନୁସନ୍ଧାନ ବା ସନ୍ତୋଷଜନକ କୈଫିୟତ ଆଜି ପର୍ଯ୍ୟନ୍ତ ଲୋକଙ୍କୁ ମିଳି ନାହିଁ । ସେତେବେଳେ କଂଗ୍ରେସ ବାହାରେ ଯେଉଁସବୁ ଶିକ୍ଷିତ ଓ ସାଧାରଣ ସେବୀ ବୋଲି ପରିଚିତ ଭଦ୍ରଲୋକ ଥିଲେ, ସେମାନେ ପଦେ ହେଲେ ପାଟି ଫିଟାଇ ନାହାଁନ୍ତି । ଯାହା ହେଉ ଏ ଘରପୋଡ଼ିରେ ଓଡ଼ିଶାର ନିର୍ଯ୍ୟାତନା ଶେଷ ନୁହେଁ, ଆହୁରି ମଧ୍ୟ ଅଛି ।

( ୧୯୩୪ ମସିହାରେ ପ୍ରକାଶିତ 'ଦଶବର୍ଷର ଓଡ଼ିଶା'ରୁ ଉଦ୍ଧୃତ )



# କର୍ମଯୋଗୀ ମହତାବ

## ନିତ୍ୟାନନ୍ଦ କାନୁନଗୋ

ମହତାବଙ୍କ ସହିତ ଘନିଷ୍ଠ ଭାବରେ ପରିଚିତ ହେବାର ସୌଭାଗ୍ୟ ବହୁ-ବର୍ଷ ଧରି ମୋର ହୋଇଅଛି । କେବେହେଲେ ଆଳସ୍ୟରେ ମୁହୂର୍ତ୍ତେ ହେଲେ ସମୟ ବ୍ୟୟ କରିବା ମୁଁ ଦେଖି ନାହିଁ । ବର୍ତ୍ତମାନ ତାଙ୍କର ଦୈନନ୍ଦିନ କାମର ଆଲୋଚନା କଲେ ଦେଖାଯିବ ସେ ଅତି ପ୍ରତ୍ୟୁଷରୁ ଉଠି କିଞ୍ଚିତ ବ୍ୟାୟାମ, ନିତ୍ୟକର୍ମ ଓ ପ୍ରାର୍ଥନା ଆଦି ସାରି ପଦାକୁ ବାହାରନ୍ତି । ପ୍ରାୟ ବାରଟା ଗୋଟାଏ ପର୍ଯ୍ୟନ୍ତ ଲୋକଙ୍କ ସହିତ ଦେଖା କରୁଥା'ନ୍ତି ଏବଂ ଚିଠିପତ୍ର ମଧ୍ୟ ଉତ୍ତର ଦିଅନ୍ତି । ପ୍ରତ୍ୟହ ନାନା-ଆଡୁ ବହୁ ଚିଠିପତ୍ର ତାଙ୍କ ପାଖକୁ ଆସେ । ଲୋକଙ୍କ ସହିତ ସାକ୍ଷାତ ଏବଂ ପତ୍ର ବିନିମୟ ଦ୍ୱାରା ଓଡିଶାର ଦୂର ଦୂରନ୍ତର ସବୁସ୍ଥାନର ସମ୍ବାଦ ତାଙ୍କ ପାଖରେ ଥାଏ ଏବଂ ସବୁ ଅଞ୍ଚଳର ସମସ୍ୟା ମଧ୍ୟ ତାଙ୍କୁ ଜଣା ଥାଏ । କୌଣସି ସମସ୍ୟା ସମ୍ବନ୍ଧରେ ବା ଅଞ୍ଚଳ ସମ୍ବନ୍ଧରେ ବା ଲୋକ ସମ୍ବନ୍ଧରେ କିଛି ଭୁଲ କଥା କହି ତାଙ୍କୁ ଭୁଲେଇଦେବା ପ୍ରାୟ ଅସମ୍ଭବ । ତାଙ୍କର Indexed mind, ବହୁ ବିଷୟ ଜଣା ଅଛି ଏବଂ ପ୍ରୟୋଜନ ଅନୁସାରେ ଯେଉଁ ବିଷୟ ସମ୍ବନ୍ଧରେ ଯାହା ଜଣା ଅଛି, ଯେତେ ପୁରାତନ ହେଲେ ମଧ୍ୟ ତାଙ୍କୁ ସେ ସ୍ମରଣ କରି ପାରନ୍ତି । ଅନେକ ଲୋକଙ୍କୁ ଅନେକ ବିଷୟ ଜଣା ଅଛି । କିନ୍ତୁ ପ୍ରୟୋଜନ ଅନୁସାରେ ସେ ସମ୍ବନ୍ଧରେ ସବୁ-ବିଷୟ ମନେ କରିପାରନ୍ତି ନାହିଁ । ଏବେ ମଧ୍ୟ ପଚାଶ ଷାଠିଏ ବର୍ଷ ତଳର ବହୁ ଅଜ୍ଞାତ ବିଷୟ ସେ ମନେରଖି ପ୍ରାଞ୍ଜଳ ଭାବରେ ଲେଖାରେ ବା କଥାରେ ପ୍ରକାଶ କରିପାରୁଛନ୍ତି ।

ଦ୍ୱିପ୍ରହରରେ ସାମାନ୍ୟ ଭୋଜନ କରି ଟିକିଏ ବିଶ୍ରାମ କରନ୍ତି ବା କେବେ ବିଶ୍ରାମ କରନ୍ତି ନାହିଁ, ଭୋଜନ ସମ୍ବନ୍ଧରେ ଅନେକଥର ନାନା ପ୍ରକାର ପରୀକ୍ଷା ବା Experiment କରିଛନ୍ତି, କେବେ ଦିନକୁ ଥରେ ଖାଇଛନ୍ତି କେବେ ସନ୍ଧ୍ୟାପର ଖାଇବା ବନ୍ଦ, କେବେ ସମ୍ପୂର୍ଣ୍ଣ ନିରାମିଷ କେବେ କେବଳ ଫଳ ଆହାର ଇତ୍ୟାଦି ।

ମୋଟ ଉପରେ ତାଙ୍କର ଖାଇବାରେ ବିଶେଷ ଆଗ୍ରହ ନାହିଁ । କୌଣସି ଖାଇବା ଜିନିଷପ୍ରତି ଆକର୍ଷଣ ମଧ୍ୟ ନାହିଁ । ଯାହା କେବଳ ଜୀବନ ଧାରଣ ପାଇଁ ଖାଇବା ଦରକାର ।

ଦ୍ୱିପ୍ରହରରେ ପ୍ରତିଦିନ ନିୟମିତ ସାଢ଼େ ଦୁଇଟାବେଳେ ଭୁବନେଶ୍ୱରରୁ କଟକ ଆସନ୍ତି । ସେଠି ତିନିଚାରିଘଣ୍ଟା ରହି ଖବର କାଗଜ ଓ ଛାପାଖାନାର କାମ ଦେଖନ୍ତି ଓ ବହୁଲୋକଙ୍କ ସହିତ ସାକ୍ଷାତ କରନ୍ତି । ତାହାପରେ ରାତି ଆଠଟା ସାଢ଼େ-ଆଠଟା ସୁଦ୍ଧା ଭୁବନେଶ୍ୱର ଫେରି ପୁଣି ଲୋକଙ୍କ ସହିତ ସାକ୍ଷାତ କରନ୍ତି । ତାହା-ପର ଲେଖାଲେଖି କରନ୍ତି ଏବଂ ଅନେକ ଡେରିରେ ଶୋଇବାକୁ ଯା'ନ୍ତି । ଇଏ ହେଲା ଦୈନନ୍ଦିନ ନିୟମିତ କାମ । ଏହାରି ମଧ୍ୟରେ ସଭା ସମିତି ଆଦି କଟକରେ ବା ଭୁବନେଶ୍ୱରରେ ପ୍ରାୟ ଥାଏ । ପ୍ରତ୍ୟେକ ସଭାରେ ଅନ୍ତତଃ ଦୁଇଘଣ୍ଟା ବସିବାକୁ ହୁଏ । ପ୍ରତ୍ୟେକ ସଭାର ବିଷୟବସ୍ତୁ ବିଷୟରେ ସେ ନିଜକୁ ପ୍ରସ୍ତୁତ କରନ୍ତି । ଅନ୍ୟମାନଙ୍କ ପରି ସଭାରେ ବସି ତତ୍‌କାଳୀନ ଯାହା ମନକୁ ଆସିଲା ତାହା ଏବଂ ଅନେକ ସମୟରେ ଅପ୍ରାସଙ୍ଗିକ କଥା କେବେ କୁହନ୍ତି ନାହିଁ ।

ପ୍ରାୟ ପ୍ରତିଦିନ ପ୍ରଜାତନ୍ତ୍ର ପାଇଁ ଦୁଇ-ଚାରି Column ଲେଖା ଦିଅନ୍ତି । ନିଜର ସମ୍ପାଦିତ ଝଙ୍କାର ଓ ଅନ୍ୟାନ୍ୟ ମାସିକ ପତ୍ରିକାରେ ମଧ୍ୟ ପ୍ରବନ୍ଧ ଲେଖନ୍ତି । ଏହାଛଡ଼ା ଅନେକ ବହି ମଧ୍ୟ ସେ ଲେଖିଛନ୍ତି । ସେଥିମଧ୍ୟରୁ କେତେକ ପ୍ରକାଶିତ ହୋଇଛି ଏବଂ ଅନେକ ଅପ୍ରକାଶିତ ଅଛି । ଏପରି ଦୈନନ୍ଦିନ କାର୍ଯ୍ୟ ସେ ନିରବଚ୍ଛିନ୍ନ ଭାବରେ ବହୁଦିନୁ କରି ଆସୁଛନ୍ତି ଓ କରୁଅଛନ୍ତି । ଅବଶ୍ୟ ସ୍ଥାନ କାଳ ପାତ୍ର ପରିବର୍ତ୍ତନ ଅନୁସାରେ ତାଙ୍କର କର୍ମ ମଧ୍ୟ ପରିବର୍ତ୍ତିତ ହୋଇଛି । ସେ ଯେତେବେଳେ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ ବା ରାଜ୍ୟପାଳ ଥିଲେ ସେସବୁ କାର୍ଯ୍ୟ ସୁନ୍ଦରରୂପେ କରିଛନ୍ତି । ମାତ୍ର ସର୍ବଦା ସବୁ-ଅବସ୍ଥାରେ ସେ ନିରଳସ ଭାବରେ କର୍ମତତ୍ପର ରହିଛନ୍ତି ।

ଭଗବାନଙ୍କ କୃପାରୁ ଏହିପରି କର୍ମଯୋଗର ସାଧନା ବହୁ ବର୍ଷ ପର୍ଯ୍ୟନ୍ତ ସେ କରନ୍ତୁ ।

※

# ସମାଲୋଚନାର ଆଲୋଚନା

ହରିହର ମହାପାତ୍ର

ବହୁ ଦିନ ତଳର କଥା । ମହତାବ ବାବୁ ମୁଖ୍ୟମନ୍ତ୍ରୀ ଡକଟର ମହତାବ ହୋଇ ନ ଥାନ୍ତି । କଟକ ମେଡ଼ିକାଲର ବାର୍ଷିକ ଉତ୍ସବ । କର୍ଣ୍ଣେଲ ପାପାଟଲ୍ଲ ଅଧ୍ୟକ୍ଷ । ମହତାବ ସଭାପତି । ସେତେବେଳେ ଗୋଟିଏ ସଭାପାଇଁ ଉଦ୍‌ଘାଟକ, ସଭାପତି, ମୁଖ୍ୟ ଅତିଥି, ସମ୍ମାନନୀୟ ଅତିଥିର ଚାଲ ଆସି ନ ଥାଏ । ଜଣକୁ କେବଳ ମର୍ଯ୍ୟାଦା ଦିଆଯାଇ ସଭାପତି କରାଯାଉଥାଏ । ସେହି ମୁଖ୍ୟ ସ୍ଥାନରେ ଥାଆନ୍ତି ମହତାବ । ଅଧ୍ୟକ୍ଷ ରିପୋର୍ଟ ପଢ଼ିଲେ, ଚିକିତ୍ସାର କୃତିତ୍ୱ, ଶିକ୍ଷାର ସାଫଲ୍ୟ, ହସପିଟାଲର ଅଭାବ ଇତ୍ୟାଦି । ତା ପରେ ନିମନ୍ତ୍ରଣ କରାଗଲା ଉପସ୍ଥିତ ଭଦ୍ରବ୍ୟକ୍ତିଙ୍କ ମଧ୍ୟରୁ କେହି ଯଦି କିଛି କହିବେ । ଦେଖିଲି, କେହି ଉଠୁ ନାହାନ୍ତି । ଗୋଟିଏ ପର୍ଯ୍ୟାୟ ଶୂନ୍ୟ କାହିଁକି ଯିବ ? ମୁଁ ଆସ୍ତେ ଆସ୍ତେ କିଞ୍ଚିତ ଦ୍ୱିଧାର ସହିତ ମଞ୍ଚ ଉପରକୁ ଯାଇ ଲକ୍ଷ୍ୟ କଲି କେତେକଙ୍କର କୌତୂହଳୀ ଦୃଷ୍ଟି ଆଉ କେତେକଙ୍କର ଉପହାସସୂଚକ ସ୍ମିତ ହାସ୍ୟରେଖା । ଚିକିତ୍ସାରେ ତ୍ରୁଟି, ଆଉଟ୍‌ଡୋରରେ ଅବହେଳା ରୋଗୀ ଭର୍ତ୍ତି ହେବାରେ ବିସ୍ତୃତ ଦୁର୍ନୀତି ଓ ପାଟର ଅଭାବ. ସାଧାରଣ ଲୋକଙ୍କର ହସ୍‌ପିଟାଲ ଉପରେ ଭରସାର କ୍ରମହ୍ରାସ ସମ୍ବନ୍ଧରେ କହି ତିନିଗୋଟି ଘଟଣାର ମୁଁ ଉଲ୍ଲେଖ କଲାବେଳେ ଦେଖିଲି ବହୁ ଲୋକଙ୍କର ଆହ୍ଲାଦ ଓ କର୍ତ୍ତୃପକ୍ଷଙ୍କର ଅବସାଦ । ମୋ ସ୍ଥାନକୁ ଫେରି ଆସିଲାପରେ ପ୍ରତିବେଶୀ କାଶୀବାବୁ (ଡ଼ଃ କାଶୀନାଥ ମିଶ୍ର) କହିଲେ, "ଧୂଳିଆ ଜଦା କିଛି କୁଆଡ଼େ ନପାରି ଗୋଟକିନା କାମୁଡ଼ି ଦିଏ" କଥାରେ ଶ୍ଳେଷ ଆଚ୍ଛାଦନରେ ସମର୍ଥନ ଥିଲା ପରି ଲାଗିଲା । ସେ ନିଜେ ଖାଣ୍ଟି, ଖଣ୍ଡାଧାରରେ ଚାଲିବା ଲୋକ, କିନ୍ତୁ କ୍ଷମତାଧାରୀ ନଥାଇ ହଲିଲପାଣିରେ ଗୋଡ ପୂରାଇବାକୁ ନାରାଜ । ଉତ୍ସବମୁଖର ପରିବେଶରେ ଅଶାନ୍ତ ବ୍ୟତିକ୍ରମ ମୁଁ ସୃଷ୍ଟି କଲା ପରି ଜଣାଗଲା । କର୍ଣ୍ଣେଲ ପାପାଟଲ୍ଲଙ୍କ ସହିତ ମୋର ଦୃଢ଼ ବନ୍ଧୁତ୍ୱ ଥାଏ । ତାଙ୍କ ପ୍ରତି କୌଣସି ଆକ୍ଷେପ ଇଚ୍ଛା ନଥିଲା । ଅନୁଷ୍ଠାନଗତ ତ୍ରୁଟିରେ ତାଙ୍କର ଯାହା ପରୋକ୍ଷ ଦାୟିତ୍ୱ ।

ତା ପରେ ସଭାପତିଙ୍କର ଅଭିଭାଷଣ । ତା'ର ପୂର୍ବାଭାସ ଦେବାପାଇଁ ମୋ କଥା କହିବାକୁ ପଡ଼ିଲା । ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ମହତାବ ବାବୁ ଅଚକିତ ନୁହନ୍ତି ଏବଂ ପରିସ୍ଥିତି ସମ୍ଭାଳିବାରେ ସେ ଧୁରନ୍ଧର । ମୋ ମନ୍ତବ୍ୟ ଏକପ୍ରକାର ତାଙ୍କ ଶାସନର ପ୍ରତିକୂଳ ଧରାଯାଇପାରେ ଏବଂ ଓଡ଼ିଶାର ଏକ ବୃହତ୍ ଓ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନର ପରିଚାଳନା ଉପରେ ଦୋଷାରୋପ । ଆଜିକାଲି ଢଙ୍ଗରେ ମୋ ଭୂମିକାକୁ ଅସୂୟାଗତ ବିଭ୍ରାନ୍ତକାରୀ ଅପଚେଷ୍ଟା କହି ଉଡ଼ାଇ ଦେବାର ବାହୁସ୍ଫୋଟ କରାଯାଇ ପାରିଥାଆନ୍ତା । କିନ୍ତୁ ସେଦିନର ମୁଖ୍ୟମନ୍ତ୍ରୀ ପନ୍ଥା ଧରିଲେ ଅନ୍ୟରୂପ । ଭାଷଣର ଆରମ୍ଭରୁ କହିଲେ, କୌଣସି ବିଷୟରେ ପ୍ରକାଶ୍ୟ ସମାଲୋଚନା ହେଲେ ତାହାର ଆଲୋଚନା ଓ ଅନୁସନ୍ଧାନ ହେବା ଯଥାର୍ଥ । କର୍ତ୍ତୃପକ୍ଷ ସେଥିରେ ଦୁଃଖିତ ହେବା ସ୍ୱାଭାବିକ କିନ୍ତୁ ଶାସନର ତାହା ଅଙ୍ଗୀଭୂତ । ତ୍ରୁଟିଶୂନ୍ୟ ବୋଲି ଅହଙ୍କାର କଲେ ତ୍ରୁଟିର ନିରାକରଣ ହେବ ନାହିଁ । Public criticismର (ଏହି ଶବ୍ଦ ବ୍ୟବହାର କରିଥିଲେ) ଗୁରୁତ୍ୱ ହେଉଛି ତାହା ଅନୁକ୍ରମରେ ସନ୍ଧାନ ନେଇ ପ୍ରତିକାରର ଆଶୁ ବ୍ୟବସ୍ଥା କରିବା । ତାହାଦ୍ୱାରା ସର୍ବ ସାଧାରଣଙ୍କର ଅନୁଷ୍ଠାନ ଉପରେ ଆସ୍ଥା ଫେରି ଆସେ । ଏହି ପ୍ରକାରର ତାତ୍ତ୍ୱିକ ବିଚାର ଉପସ୍ଥାପନ କରିବା ଦ୍ୱାରା ପାପାଟାଲ ଓ ଅନ୍ୟମାନଙ୍କର ବିକ୍ଷୋଭ ଦୂର ହୋଇଗଲା ଓ ସମାଲୋଚନାର କଟୁତା ହ୍ରାସ ଲଭିଲା । ପ୍ରତିକୂଳ ଅବସ୍ଥାକୁ ଲଂଘନ କରିବା ପାଇଁ ଅବାସ୍ତବ ଦୃଷ୍ଟିକୋଣ ବା ପ୍ରତିପକ୍ଷ ଉପରେ ବିଷ ଉଦ୍‌ଗାରଣ ଅପରିପକ୍ୱତାର ପରିଚାୟକ । ମହତାବ ବାବୁଙ୍କ ଡିପ୍ଲୋମାସିରେ ତାହାର ସ୍ଥାନ ନାହିଁ ।

ଦୀର୍ଘକାଳ ଶାସନ ବା ରାଜନୀତି କ୍ଷେତ୍ରରେ କେହି ନେତୃତ୍ୱ ଗ୍ରହଣ କଲେ, ବନ୍ଧୁକୁ ଶତ୍ରୁ ଓ ଶତ୍ରୁ ବନ୍ଧୁ କରିବା ସାଧାରଣ କଥା । ଦୀର୍ଘକାଳ ଦୂର କଥା, ଗୋଟିଏ ଗୋଟିଏ ପାଳି ଜିଲ୍ଲା ବୋର୍ଡ, ମ୍ୟୁନିସିପାଲିଟି ବା ପଞ୍ଚାୟତ ସ୍ତରରେ କ୍ଷମତାକୁ ଆସି ଲୋକେ ସେ ପ୍ରକାର ଘୂର୍ଣ୍ଣିବାତ୍ୟାରେ ପଡୁଥିବାର ଲକ୍ଷ୍ୟ କରାଯାଏ । ଡକ୍ଟର ମହତାବ ବାଲେଶ୍ୱର ଜିଲ୍ଲାବୋର୍ଡଠାରୁ କେନ୍ଦ୍ର ସରକାରର ମନ୍ତ୍ରୀ ଓ ରାଜ୍ୟପାଳ ଭବନରେ ଶାସନ ଦାୟିତ୍ୱ ଗ୍ରହଣ କରି ଆସିଛନ୍ତି ଏବଂ ବହୁ ପ୍ରତିପକ୍ଷଙ୍କର ବିରୋଧ ଓ ସମାଲୋଚନାର ଶରବ୍ୟ ହୋଇଛନ୍ତି । କିନ୍ତୁ ପ୍ରତିପକ୍ଷକୁ ଶତ୍ରୁ ନକରି,

ସୌଜନ୍ୟରେ (ବାହ୍ୟିକ ହେଉପଛେ) ହୀନବଳ କରିବା ତାଙ୍କର ସ୍ୱାଭବଗତ କୌଶଳ ହୋଇ ଆସିଛି । ବ୍ୟକ୍ତିଗତ ସୁସମ୍ପର୍କ ରକ୍ଷା କରିବା ତାଙ୍କର ଅନ୍ୟଏକ ପନ୍ଥା । ଡ଼ାକ୍ତର ବିଧାନ ରାୟଙ୍କର ଏହି ଗୁଣ ଥିଲା । ବିଧାନ ସଭାରେ କମ୍ୟୁନିଷ୍ଟ ମାନଙ୍କର କଟୁ ବିରୋଧରେ ସେ ମ୍ରିୟମାଣ ହେଲେ ସୁଦ୍ଧା, ସନ୍ଧ୍ୟାପରେ କମ୍ୟୁନିଷ୍ଟ ସଭ୍ୟଙ୍କ ପରିବାରର ରୋଗାଗ୍ରସ୍ତଙ୍କୁ ଚିକିତ୍ସା କରିବା ପାଇଁ ଅକୁଣ୍ଠିତ ଚିତ୍ତରେ ସେ ସ୍ୱତଃପ୍ରବୃତ୍ତ ହୋଇ ଯାଉଥିବାର ଦେଖାଯାଉଥିଲା । ଫଳରେ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ବ୍ୟକ୍ତିଗତ ଅଶ୍ରଦ୍ଧା ବା ଶତ୍ରୁତାର ସେ ସମ୍ମୁଖୀନ ହେଉ ନଥିଲେ । ବରଂ ପ୍ରତିପକ୍ଷଙ୍କର ସହାୟତା କୌଣସି କ୍ଷେତ୍ରରେ ଲୋଡ଼ିଲେ, ତାହା ତାଙ୍କର ସହଜ ପ୍ରାପ୍ୟ ହେଉଥିଲା । କ୍ଷମତାଗତ ପରିସର ଓ ବ୍ୟକ୍ତିଗତ ସମ୍ପର୍କକୁ ଅବସ୍ଥାନୁଯାୟୀ ନିୟନ୍ତ୍ରଣ କରିବା ପଟୁତା ବିଧାନ ରାୟଙ୍କ ପରି ମହତାବଙ୍କଠାରେ ଦେଖ ଯାଏ । ତାଙ୍କ ଜୀବନରେ ସାର୍ଥକତାର ଏହା ଏକ ବିଶିଷ୍ଟ କାରଣ ହୋଇଛି ।

ସମାଲୋଚକକୁ ଦୂଷ୍ଟ ନକରି; ସମାଲୋଚନାର ଆଲୋଚନା କରିବା ତାଙ୍କର ଅନ୍ୟ ଏକ ସୁବିଦିତ ପନ୍ଥା । ଏଥିରେ ସେ ପ୍ରାୟ ଅଦ୍ୱିତୀୟ । ଏହାର ବହୁ ନିଦର୍ଶନ ଦିଆଯାଇ ପାରିବ । ରାଜେନ୍ଦ୍ର ନାରାୟଣ ସିଂହ ଏହି ମାର୍ଗ ଅବଲମ୍ବନ କରୁଥିବାର ଲକ୍ଷ୍ୟ କରାଯାଇ ଥିଲା । ରାଜନୀତିରେ ମହତାବ ବାବୁ ଏହି କୌଶଳ ପ୍ରୟୋଗ କରିଥିବାରୁ, ତାଙ୍କର ନିକଟତମ କନିଷ୍ଠ ସହକର୍ମୀ ଅନେକ ଦୂରେଇ ଯାଇଥିଲେ ମଧ୍ୟ ବ୍ୟକ୍ତିଗତ ତିକ୍ତତାରେ ଆଚ୍ଛନ୍ନ ହୋଇ ନାହାନ୍ତି । ଭିନ୍ନ ମତ ବା ଭିନ୍ନ ପନ୍ଥାକୁ ଆଲୋଚନା କଲେ ତାହାର ଉପାଦେୟତା ଅଛି କି ନାହିଁ ଜଣାପଡ଼େ ଏବଂ ସେ ପ୍ରକାର ଆଲୋଚନା ପରେ ସେଥିରୁ କିଛି ଗ୍ରହଣ କଲେ ଗ୍ରାହକର ମର୍ଯ୍ୟାଦା ବୃଦ୍ଧି ପାଏ । ଆଲୋଚନା ବାସ୍ତବମୂଳକ ହେବା ଆବଶ୍ୟକ । କ୍ଷମତାଧିକାରୀ ଯଦି ନିଜକୁ, ନିଜର ଉକ୍ତି ଓ ନୀତିକୁ ସବୁବେଳେ ଓ ସର୍ବାଦୌ ଅଭ୍ରାନ୍ତ ବୋଲି ଜାହିର କରନ୍ତି ଏବଂ ସବୁ ସମାଲୋଚନା ବା ଅନ୍ୟ ମତକୁ କେବଳ ଶତ୍ରୁତାର ଆୟୁଧ ବୋଲି ବାରମ୍ବାର ଘୋଷଣା କରନ୍ତି, ସେଥିରେ ନିଜର ଓ ନିଜ ପକ୍ଷର ଅହଙ୍କାର ସାବ୍ୟସ୍ତ ହୋଇପାରେ କିନ୍ତୁ ନିରପେକ୍ଷ କାହାରି ହୃଦବୋଧ ହୁଏ ନାହିଁ । କ୍ଷମତାସୀନ ଲୋକର ବ୍ୟକ୍ତିତ୍ୱ ବାହାରେ କଳ୍ପିତ ହୁଏ । କାର୍ଯ୍ୟକାରୀତା ଦୃଷ୍ଟିରୁ ସଫଳ ହୋଇଥିବା ଡକ୍ଟର ମହତାବଙ୍କର ସମାଲୋଚନାର ଆଲୋଚନା କୌଶଳ କ୍ଷମତାସୀନ ଲୋକଙ୍କର ପ୍ରଣିଧାନର ଯୋଗ୍ୟ । ସେଥିରେ ସ୍ୱପକ୍ଷ, ପ୍ରତିପକ୍ଷ, ନିରପେକ୍ଷ, ସମସ୍ତେ ଲାଭବାନ ହେବେ । ●

# ଇତିହାସ ସୃଷ୍ଟିକାରୀ ଐତିହାସିକ

ରାଜକିଶୋର ଦାସ

ଚଳିତ ମାସ ତା ୨୧ ରିଖରେ ଡକ୍ଟର ହରେକୃଷ୍ଣ ମହତାବଙ୍କର ୮୨ତମ ଜନ୍ମ ଦିବସ ରାଜ୍ୟସାରା ପାଳିତ ହେଉଛି । ଏହି ଉଦ୍ଦେଶ୍ୟରେ ରାଜ୍ୟର ବିଭିନ୍ନ ସ୍ଥାନରେ ସମିତିମାନ ଗଠନ କରାଯାଇ ଅଛି । ଏ ଅବସରରେ ମୁଁ ଡଃ: ମହତାବଙ୍କ ବିଷୟରେ କେଇପଦ ଲେଖିବା ପାଇଁ ସୁଯୋଗ ପାଇଥିବାରୁ ନିଜକୁ ଭାଗ୍ୟବାନ ମନେ କରୁଛି ।

ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ମୋର ତାଙ୍କ ସହିତ ଘନିଷ୍ଠ ଭାବେ ସମ୍ପର୍କ ରହିଅଛି । ତାଙ୍କ ଜୀବନର ପ୍ରତ୍ୟେକ କାର୍ଯ୍ୟ କ୍ଷେତ୍ରରେ ସେ ନିଜର ସ୍ୱାଭାବିକ ନେତୃତ୍ୱ ପ୍ରତିପାଦିତ କରି ଆସିଛନ୍ତି । ଜଣେ ସୁଦକ୍ଷ ଶାସକ ହିସାବରେ ସେ ନିଜ ରାଜ୍ୟ ତଥା କେନ୍ଦ୍ର ଶାସନରେ ନିଜର ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭାର ମଧ୍ୟ ପରିଚୟ ଦେଇ ଆସିଛନ୍ତି । ଶାସନ କ୍ଷେତ୍ରରେ ଅବସର ନେଲାପରେ ମଧ୍ୟ ରାଜ୍ୟର ଶାସନଭାର ଗ୍ରହଣ କରୁଥିବା ନେତୃବୃନ୍ଦଙ୍କର ଆଜି ବି ସେ ବନ୍ଧୁ, ପରାମର୍ଶଦାତା ଓ ଦିଗଦର୍ଶକ । ରାଜ୍ୟର ଏକାଧିକ ମୁଖ୍ୟମନ୍ତ୍ରୀ ତାଙ୍କର ରାଜନୈତିକ ଶିଷ୍ୟ ଓ ଶାସନ କ୍ଷେତ୍ରରେ ତାଙ୍କର ପରାମର୍ଶ ଗ୍ରହଣ କରିଛନ୍ତି ।

ଡଃ: ମହତାବ ଗଣତନ୍ତ୍ର ଶାସନର ପକ୍ଷପାତୀ ହୋଇଥିବାରୁ ବିରୋଧୀ ଦଳର ଭୂମିକା ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ ଓ ନିଜେ ଶାସନ ମୁଖ୍ୟ ଥିଲା ସମୟରେ ବିରୋଧୀ ଦଳ ଗଠନର ପୃଷ୍ଠପୋଷକତା କରୁଥିଲେ । ପ୍ରଜାତନ୍ତ୍ରର "ଗାଁ ମଜଲିସ୍" ସ୍ତମ୍ଭରେ ସେ ଜନତାର ଅଭାବ ଓ ଅସୁବିଧା ପ୍ରତିଫଳିତ କରିବା ବେଳେ ନିଜ ସରକାରର କାର୍ଯ୍ୟକଳାପ ଉପରେ ମଧ୍ୟ ଟିପପଣୀ ପ୍ରକାଶ କରିବାକୁ କୁଣ୍ଠାବୋଧ କରୁ ନ ଥିଲେ । ଅଥଚ ମହତାବଙ୍କର ଏହି କାର୍ଯ୍ୟ ଦ୍ୱାରା ତାଙ୍କର

ସହକର୍ମୀ ଓ ବନ୍ଧୁମାନେ ଅନେକ ସମୟରେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହୋଇ ଥାଆନ୍ତି ।

ରାଜନୈତିକ ଜୀବନରେ ଆମଦେଶର ଖୁବ୍ କମ୍ ନେତା ଡଃ: ମହତାବଙ୍କ ଭଳି ଦୁଃଖ ଦୈନ୍ୟର ସମ୍ମୁଖୀନ ହୋଇଛନ୍ତି । ତାଙ୍କର ଦୀର୍ଘ କର୍ମମୟ ଜୀବନକାଳ ମଧ୍ୟରେ କଳା, ସାହିତ୍ୟ, କ୍ରୀଡ଼ା ଏବଂ ଅନ୍ୟାନ୍ୟ ଅନେକ ସାମାଜିକ ଅନୁଷ୍ଠାନର ଉନ୍ନତି ପାଇଁ ଡଃ: ମହତାବଙ୍କର ଅବଦାନ ଅମୂଲ୍ୟ ଓ ଅତୁଳନୀୟ । ହୀରାକୁଦ ବହୁମୁଖୀ ଯୋଜନା; ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ, ଓଡ଼ିଶା ଶାସନ ସହିତ କ୍ଷୁଦ୍ର କ୍ଷୁଦ୍ର ଗଡ଼ଜାତ ରାଜ୍ୟଗୁଡ଼ିକର ସମ୍ମିଶ୍ରଣ ତାଙ୍କ ଜୀବନରେ ଓଡ଼ିଶା ପାଇଁ କେତୋଟି ଜାଜ୍ଜ୍ୱଲ୍ୟମାନ ଅବଦାନ ।

ଜଣେ ଐତିହାସିକ ଆଜି ନିଜ ପାଇଁ ଇତିହାସ ସୃଷ୍ଟି କରିଛନ୍ତି ।

ଆଜିର ଏହି ଅବସରରେ ଭଗବାନଙ୍କ ଠାରେ ଏତିକି ପ୍ରାର୍ଥନା ଦେଶର ସେବା କରିବା ପାଇଁ ଭଗବାନ ଡଃ: ମହତାବଙ୍କର ତ୍ୟାଗପୂତ, କର୍ମମୟ ଜୀବନକୁ ଆହୁରି ଦୀର୍ଘ କରନ୍ତୁ ।



# ଅଗ୍ରଲେଖ

## କମଳ ଲୋଚନ ମହାନ୍ତି

ବିଶାଳ ଉତ୍କଳ ନିର୍ମାତା, କର୍ମଯୋଗୀ, ସାଂସ୍କୃତିକ, ସାମ୍ବାଦିକ, ଯୁଗ-ପ୍ରବର୍ତ୍ତକ ଡକ୍ଟର ମହତାବ ଆଉ ବ୍ୟକ୍ତିବିଶେଷ ନୁହନ୍ତି । ଏକକ ଭବରେ ସେ ଏକ ବିରାଟ ଅନୁଷ୍ଠାନ ।

ଅଗରପଡାର ଏକ ଧନାଢ୍ୟ ପରିବାରରେ ତାଙ୍କର ଜନ୍ମ । ସୁନା ଚାମଚ, ରୂପା ବାଟିଆରେ ରାଜକୀୟ ସ୍ୱାଦ ଗ୍ରହଣ ବାଲ୍ୟକାଳ ବିତାଇଲେ । କୈଶୋର, ଯୌବନରେ ରାଜକୀୟ ପରିବେଶରେ ଗଣତନ୍ତ୍ରର ସ୍ୱପ୍ନରେ ବିହ୍ୱଳିତ ହୋଇ ଦେଶ-ଦଶର ସେବାରେ ବ୍ରତୀ ହୋଇ ଉଠିଲେ ।

ତାଙ୍କର ଅମର କୃତି 'ପ୍ରତିଭା' ଉପନ୍ୟାସର ନାୟକ ସେ । ମାତୃପ୍ରତିମ ସ୍ୱର୍ଗୀୟା ସୁଭଦ୍ରା ଦେବୀ ନାୟିକା 'ପ୍ରତିଭା'ର । ନିଜ ଧର୍ମରେ ସହଧର୍ମିଣୀଙ୍କୁ ଅନୁପ୍ରାଣିତ କରି ଦମ୍ପତିଯୁଗଳ ଭାରତର ମୁକ୍ତି ସଂଗ୍ରାମରେ ଝାସ ଦେଲେ ।

ଗାନ୍ଧିଜୀଙ୍କର ସ୍ୱପ୍ନ ସଫଳ ହେଲା । ଭାରତ ବିଦେଶୀ ବନ୍ଧନରୁ ମୁକ୍ତ ହେଲା । ସଂଗ୍ରାମୀ ମହତାବ ସ୍ୱାଧୀନୋତ୍ତର ଓଡ଼ିଶାର ହେଲେ କର୍ଣ୍ଣଧାର । ବାପୁଜୀଙ୍କର କଳ୍ପିତ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ବିପ୍ଳବକୁ ରୂପାୟନ କରିବାରେ ଜୀବନ ଉତ୍ସର୍ଗ କଲେ । ପ୍ରଗତିଶୀଳ ଦୁନିଆ ସାଙ୍ଗରେ ପାଦ ମିଳେଇ ଆମ ରାଜ୍ୟକୁ ଆଗେଇ ନେବାରେ ତାଙ୍କର ଉଦ୍ୟମ ଏପର୍ଯ୍ୟନ୍ତ ବି ଅପ୍ରତିହତ ରହିଚି ।

ତାଙ୍କ ପାଇଁ ଆମେ ପ୍ରତ୍ୟେକ ଓଡ଼ିଆ ଗର୍ବିତ । କାରଣ ସେ ଅନେକ କ୍ଷେତ୍ରରେ ହେଉଛନ୍ତି ପ୍ରଥମ ଓଡ଼ିଆ ।

ପ୍ରଥମ ଓଡ଼ିଆ କେନ୍ଦ୍ର ମନ୍ତ୍ରୀ । ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ, ପ୍ରଥମ ଗଭର୍ଣ୍ଣର ଓ ବ୍ରିଟିଶ କମନୱେଲ୍ଥର ପ୍ରଥମ ଓ ପ୍ରାୟ ଶେଷ ଓଡ଼ିଆ ପ୍ରତିନିଧି । ତେଣୁ ବିଂଶ ଶତାବ୍ଦୀର ଯେ କେତେଜଣ ସୁପୁରୁଷ, କର୍ମଯୋଗୀ, ଦେଶ ବତ୍ସଳ ଜନନାୟକ ଜନ୍ମଗ୍ରହଣ କରିଛନ୍ତି, ସେମାନଙ୍କ ଭିତରେ ଡକ୍ଟର ମହତାବ ଅଗ୍ରଗଣ୍ୟ । କୁଳବୃଦ୍ଧ ମଧୁସୂଦନ ଓ ଦେଶପ୍ରାଣ ଗୋପବନ୍ଧୁଙ୍କ ଯୋଗ୍ୟ ଦାୟାଦ ଡକ୍ଟର ମହତାବ ।

ମଧୁସୂଦନଙ୍କ ଦେଶ ମିଶ୍ରଣ ସ୍ୱପ୍ନ, ଓଡ଼ିଆ ପ୍ରାଣ ବିହ୍ୱଳତାକୁ ଡକ୍ଟର ମହତାବ ଉତ୍ତରାଧିକାରୀ ହିସାବରେ ସଫଳତା ସହକାରେ କାର୍ଯ୍ୟକାରୀ କରିଛନ୍ତି ।

ପ୍ରାତଃସ୍ମରଣୀୟ ଗଜପତିଙ୍କ ସ୍ୱତନ୍ତ୍ର ଉତ୍କଳ ପ୍ରତିଷ୍ଠା ଯେପରି ଓଡ଼ିଆ ଜାତୀୟ ଇତିହାସରେ ଏକ ଚମତ୍କପ୍ରଦ ଘଟଣା, ଡକ୍ଟର ମହତାବଙ୍କ ବୃହତ୍ ଉତ୍କଳ ଗଠନ ସେହିପରି ଗର୍ବ ଓ ଗୌରବର କାହାଣୀ । ତେଣୁ ଓଡ଼ିଶାର ଭୌଗୋଳିକ ଓ ଐତିହାସିକ ଘଟଣାବଳୀ ଓ ମାନଚିତ୍ରରେ ଡକ୍ଟର ମହତାବଙ୍କ ଇମେଜ ଚିରକାଳକୁ ଜାଜ୍ୱଲ୍ୟମାନ ହୋଇ ରହିବ ।

ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସ୍ୱପ୍ନ ସଫଳ କରିବାରେ ସେ ଜୀବନ ଉତ୍ସର୍ଗ କରିଥିଲେ । ଉତ୍କଳମଣିଙ୍କ ପ୍ରେରଣା ତାଙ୍କୁ ସାଧନା ପଥରେ ଆଗେଇ ନେଇ ଥିଲା ।

ଗୋପବନ୍ଧୁ ସ୍ୱାଧୀନତାର ସୂର୍ଯ୍ୟ-ଉଦୟ ଦେଖି ପାରିଲେ ନାହିଁ । ହେଲେ ଡକ୍ଟର ମହତାବ ସ୍ୱାଧୀନ ସୂର୍ଯ୍ୟର ଉଦୟନକୁ ସ୍ୱାଗତ କରିବାରେ ଭାଗ୍ୟବାନ ହୋଇପାରିଲେ ।

ସ୍ୱାଧୀନ ଦେଶର କର୍ଣ୍ଣଧାର ହୋଇ ଗତ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ଦେଶପ୍ରାଣ ଗୋପବନ୍ଧୁଙ୍କ ନିର୍ଦ୍ଦେଶିତ ଜନସେବା ବ୍ରତରେ ନିଜକୁ ନିୟୋଜିତ କରି ଆସିଛନ୍ତି ।

ଗୋପବନ୍ଧୁ ମୁକ୍ତି ସଗ୍ରାମର ପ୍ରଥମ ପର୍ବରୁ ବିଦାୟ ନେଲେ । ହେଲେ ହରେକୃଷ୍ଣ ସ୍ୱାଧୀନତା ସଂଗ୍ରାମ ରୂପୀ ମହାଭାରତ ଯୁଦ୍ଧରେ ମଧ୍ୟମ ପାଣ୍ଡବର

ବୀରତ୍ୱ, ଚକ୍ରୀ କୃଷ୍ଣଙ୍କର ଡିପ୍ଲୋମାସୀ ଓ ସହଦେବଙ୍କ ଦୂରଦୃଷ୍ଟିର ସମ୍ମୋହନରେ ସ୍ୱାଧୀନତା ପରେ ଏକ ଶାନ୍ତି ଓ ପ୍ରଗତି ପର୍ବର ସ୍ୱାଗତ ଗୀତିକା ଜାତୀୟ ଜୀବନରେ ଶୁଣାଇଲେ । ଜାତିକୁ ଅନୁପ୍ରାଣିତ କଲେ ।

ମହାଭାରତରେ ସହଦେବଙ୍କର ପୁରୋଦୃଷ୍ଟି ଓ ଦୂରଦୃଷ୍ଟି ଏବଂ ବିଚକ୍ଷଣ ଚତୁରତା ଡକ୍ଟର ମହତାବଙ୍କର ନଥିଲେ ଭାରତ ବହୁ ଖଣ୍ଡରେ ଭାଗ ଭାଗ ହୋଇ ଯାଇ ଥାଆନ୍ତା । ୭୦୦ ଗଡଜାତର ସାର୍ବଭୌମତ୍ୱ ସ୍ୱୀକାର କରଯାଇ ଥିଲେ ଆମ ଦେଶ ଅଶାନ୍ତିରେ ବୁଡି ଯାଇଥାନ୍ତା । ଏଇ ଭାରତଭୂମି ଯୁଦ୍ଧ ବିଗ୍ରହର ରଙ୍ଗଭୂମି ହୋଇ ପଡ଼ିଥାନ୍ତା ।

ସ୍ୱର୍ଗତଃ ପଟେଲଙ୍କୁ ନିଜ ମତ ଓ ଚକ୍ରୀ କୃଷ୍ଣଙ୍କର ଚତୁରତା ଇଂଗିତରେ ପ୍ରଭାବିତ କରି ଓଡ଼ିଶାରୁ ଗଡଜାତ ମିଶଣ ଆରମ୍ଭ କରିଦେଲେ । ତେଣୁ ବିଶାଳ ଉତ୍କଳ କେବଳ ନୁହେଁ ବିଶାଳ ଭାରତ ଗଠନ କରିବାରେ ଜାତୀୟ ସ୍ତରରେ ସେ ଅଗ୍ରଣୀ ଜନନେତା ।

ଭାରତର ସାର୍ବଭୌମ ଭୌଗୋଳିକ ପରିସୀମା ବ୍ୟାପ୍ତ କରିବାରେ ତାଙ୍କର ଅସୀମ ସାହସ, ବିଚକ୍ଷଣ ବୁଦ୍ଧି ଓ ସୁଦୂର ପ୍ରସାରୀ ବିଚକ୍ଷଣତା ପ୍ରତିପାଦିତ ହୁଏ ।

ଡକ୍ଟର ମହତାବ ବିଶାଳ ଉତ୍କଳ ଓ ଅଖଣ୍ଡ ସାର୍ବଭୌମ ଭାରତ ଗଠନ କରି, କରଇ ନିଜର କର୍ତ୍ତବ୍ୟ ଶେଷ କରି ନାହାନ୍ତି ।

ସ୍ୱାଧୀନ ପଥର ପଥିକ ଡ. ମହତାବ ତାଙ୍କର କ୍ରାନ୍ତି ଓ ଶାନ୍ତି ପର୍ବର ନାୟକ ହୋଇ ତୃତୀୟ ପର୍ବରେ ପଚାଶବର୍ଷ ଜନସେବା କରି ୮୨ ବର୍ଷରେ ପଦାର୍ପଣ କରିଛନ୍ତି ।

ଦୁନିଆରେ ବହୁ ଇଜ୍‌ମର ପ୍ରବର୍ତ୍ତନ ହେଇଥିବା ବେଳେ ତାଙ୍କ ଦର୍ଶନ ଏକାନ୍ତ ଭାବରେ ଭାରତୀୟ । ଗାନ୍ଧୀ ଦର୍ଶନ ଅନୁପ୍ରାଣିତ ଡକ୍ଟର ମହତାବଙ୍କ ଚେତା ଚୈତନ୍ୟ, ବୌଦ୍ଧିକତା, ଅଭିବ୍ୟକ୍ତି ଓ ପରିପ୍ରକାଶ ଏକାନ୍ତ ଭାବରେ ଗାନ୍ଧୀ ଧର୍ମୀ

ହେଲେ ମଧ୍ୟ କେବେ କେବେ ସିଦ୍ଧାନ୍ତବାଦୀ—ଆହୁରି ବିଚିତ୍ର ତାଙ୍କ ଚିନ୍ତା ଓ ଚିନ୍ତନରେ ମାର୍କସ୍‌ବାଦ ସମ୍ପୂର୍ଣ୍ଣ ମଉଳି ଯାଏ ନାହିଁ । ତେଣୁ ମୌଳିକ ଗାନ୍ଧୀ ଦର୍ଶନ ତାଙ୍କର ପଥି ଓ ପାଥେୟ ହୋଇଥିଲେ ହେଁ ପରିସ୍ଥିତିକୁ ଲକ୍ଷ୍ୟ କରି, ବାସ୍ତବତାକୁ ବିଶେଷ ଭାବରେ ଅନୁଶୀଳନ କରି, ତାତ୍‌କାଳୀୟ ନ୍ୟାୟରେ ଅନେକ ସମୟରେ ସିଦ୍ଧାନ୍ତ ନେଇ ଥାନ୍ତି । ତେଣୁ ମହତାବଙ୍କୁ ଅନେକ ସମୟରେ ଠିକ୍ ଠିକ୍ ଭାବରେ ବୁଝି ହୁଏ ନା । ତେଣୁ ତାଙ୍କ ଛନ୍ଦରେ ତାଙ୍କ ଭାଷାରେ ବେଳେ ବେଳେ ଏକ ନୂତନ ଧର୍ମୀ କାବ୍ୟ ରୂପେ ଆତ୍ମପ୍ରକାଶ କରି ଥାଆନ୍ତି । ଅନେକ ସମୟରେ ଏକ ଏକ ବିବଦମାନ ସମସ୍ୟା ସମାଧାନରେ ତାଙ୍କର ସ୍ୱତନ୍ତ୍ର ନୀତି ଓ ନିଷ୍ପତ୍ତି ଯୋଗୁ ଜନ-ସାଧାରଣରେ ତାଙ୍କର କୁତ୍ସାରଟନାକାରୀମାନେ ସୁଯୋଗ ପାଇଥାନ୍ତି ।

ତାଙ୍କୁ ଏକ ବିବାଦସ୍ପଦ ବ୍ୟକ୍ତି ବା ଅନୁଷ୍ଠାନ ବୋଲି ପ୍ରତିପାଦିତ କରିବା ପାଇଁ ଉଦ୍ୟମ କରିଥାନ୍ତି ।

ଧରଯାଉ, ଡକ୍ଟର ମହତାବଙ୍କ ନିନ୍ଦୁକମାନଙ୍କୁ ସହାନୁଭୂତି ଭାବରେ ସମ୍ମାନିତ କରଯାଉ । ସେମାନେ କୁହନ୍ତୁ, ବିଂଶ ଶତାବ୍ଦୀରେ ଆଉ କିଏ ଅଛି ! କେଉଁଠାରେ ଏପରି ଅନୁଷ୍ଠାନ ଅଛି, ଓଡିଶା ଓ ଓଡ଼ିଆ ଜୀବନର ଶିକ୍ଷା, ସଂସ୍କୃତି, ପରମ୍ପରା, ରାଜନୀତି, ସମାଜନୀତି ପାଇଁ କେଉଁ ଜୀବନ୍ତ ଅନୁଷ୍ଠାନ ଅଛି ?

ଏହା ହେଉଛି ଗୋଟିଏ, ଏକମାତ୍ର ଗୋଟିଏ ବତୀଖୁଣ୍ଟ ଆମକୁ ଗତ ପଚାଶ ବର୍ଷ ହେଲା ତାରି ଆଲୋକରେ ବାଟ ଦେଖାଇଛି । ଅନନ୍ତ କାଳକୁ ବାଟ ଦେଖାଇ ଦେବ ।

ହେଉ ସେ ପଛେ ବିବଦମାନ ଅନୁଷ୍ଠାନ । ତା କେବଳ ରାଜନୀତି କ୍ଷେତ୍ରରେ ନିନ୍ଦୁକ କ୍ଷମତାଲୋଭୀ ପଥଭ୍ରଷ୍ଟ ଦଳୀୟ ରାଜନୀତିଜ୍ଞମାନଙ୍କର ସ୍ଲୋଗାନ ହେଉ ।

ସମୟ ତାର ଉତ୍ତର ଦେବ ।

ଜାତିର ସେ ପରମ ବନ୍ଧୁ । ଜନମନର ଦାର୍ଶନିକ ।

ଶ୍ରମିକ, କୃଷକ, ରାଜନୀତିକ, ଶିକ୍ଷକ ଛାତ୍ର, କବି, ଲେଖକ, ନାଟ୍ୟକାର, ଶାନ୍ତିକ, ସାମ୍ବାଦିକ, ସର୍ବୋପରି ଜନତାର ସେ ପଥ ପ୍ରଦର୍ଶକ । କାରଣ ତାଙ୍କର କୃତି ସର୍ବବ୍ୟାପୀ । ଚିନ୍ତା ଓ ଚିନ୍ତନ ଅନନ୍ତ ।

ପୁଣି ତାଙ୍କ ସୃଷ୍ଟି ଅପୂର୍ବ !!

ପୁଣି କୁତ୍ସିତ !!

କାରଣ ଓଡ଼ିଶାର ରାଜନୀତି ତାଙ୍କରି ପାଇଁ ପଙ୍କିଳ । ତାଙ୍କରି ବାହୁ ଛାୟା ତଳେ ବହୁ ଅବାଞ୍ଛିତ ଚରିତ୍ର ଆଶ୍ରୟ ନେଇ ଆଶୀର୍ବାଦ ପାଇଛନ୍ତି । ଶାସନ ରଂଗମଞ୍ଚରେ ସେମାନଙ୍କୁ ପ୍ରତିଷ୍ଠିତ କରାଯାଇଛି ।

ପୁଣି ରାଜନୀତି ମାଟିରେ ବହୁ ବିଷ ମଞ୍ଜି ପୋତିଛନ୍ତି । ଖତସାର ଦେଇଛନ୍ତି । ଜଳସେଚନର ବିହିତ ବ୍ୟବସ୍ଥା କରିଛନ୍ତି । କିନ୍ତୁ ପ୍ରବଳ ହେଇ ବୃକ୍ଷ ଯେତେବେଳେ ଡାଳପତ୍ର ମେଲେଇ ବିଷଫଳରେ ଜନତାକୁ ଆକଣ୍ଠ ବିଷଜ୍ୱାଳାରେ ଜର୍ଜରିତ କରନ୍ତି, ସେତେବେଳେ ଡକ୍ଟର ମହତାବଙ୍କର ନିଦ୍ରାଭଙ୍ଗ ହୁଏ । ସମୂଳେ ବିଷବୃକ୍ଷ ଉତ୍ପାଟନ କରିବାରେ ବହୁ ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ ।

ଏହି ପରିପ୍ରେକ୍ଷୀରେ ପୁଣି ସେ ବିବାଦମାନ ବ୍ୟକ୍ତି ଅନୁଷ୍ଠାନ ।

ଓଡ଼ିଶାରେ ରାଜନୈତିକ ଅସ୍ଥିରତା ପାଇଁ ସେ ଦାୟୀ ବୋଲି ଲୋକେ କହନ୍ତି । ଏହା ସତ୍ୟ ହୋଇପାରେ । କାରଣ ଏ ରାଜ୍ୟରେ ପାଞ୍ଚବର୍ଷ କାଳ କେହି ଶାସନ ଗାଦିରେ ମୁଖ୍ୟମନ୍ତ୍ରୀ ହେଇ ରହିପାରି ନାହାନ୍ତି ।

ତେଣୁ ସମୂହ ସୃଷ୍ଟି ପାଇଁ ସ୍ରଷ୍ଟାଙ୍କୁ ଦୋଷ ନ ଦେଇ କାହାକୁ କହିବା !

ସେ ଜଣେ ବାସ୍ତବରେ ପରଶୁରାମ ଧର୍ମୀ ? ଭାଙ୍ଗିବା ଗଢିବାରେ ସେ ଆନନ୍ଦ ପାଆନ୍ତି । ସେ ହିଁ ଓଡ଼ିଶା ରାଜନୀତିର ବ୍ରହ୍ମା ସୃଷ୍ଟିକର୍ତ୍ତା ! ବିଷ୍ଣୁ ପାଳନ କର୍ତ୍ତା !! ମହେଶ୍ୱର ଧ୍ୱଂସ କର୍ତ୍ତା !!!

ଭାରତବର୍ଷ ଯେ ରାଜତନ୍ତ୍ର ଲୋପ କରିଛି, ଗଣତନ୍ତ୍ର ପ୍ରତିଷ୍ଠା କରିବାରେ ନିଜର ରକ୍ତ ଲୁହ ଦେଇଛି, ଯୌବନ ଅତିବାହିତ କରିଛି ଲୋକଙ୍କ କଲ୍ୟାଣରେ, ସେ ଅତ୍ୟାଚାର, ଅନାଚାର, ବଳାତ୍କାର ସହିବ କିପରି ?

ତେଣୁ ରାଜନୈତିକ ଅସ୍ଥିରତା ନିଶ୍ଚୟ ଘଟୁଛି ଓ ଘଟିବ ।

ଦୁନିଆରେ ବହୁ ରକମର ଏ ତରଙ୍ଗ ଅବାରିତ ଭାବରେ ସୃଷ୍ଟି ହୋଇଛି । ସେ ତରଙ୍ଗ ସହିତ ଡକ୍‌ଟର ମହତାବ ପରିଚିତ । ବେଶ ପରିଚିତ । କିନ୍ତୁ ଗାନ୍ଧି-ବାଦୀ । ଏକାନ୍ତ ଭାବରେ ଭାରତୀୟ । ତାଙ୍କ ଚିନ୍ତା ଓ ଚେତନା, ବୌଦ୍ଧିକ ଅଭିବ୍ୟକ୍ତି, ପରିପ୍ରକାଶ ଠିକ୍ ଗାନ୍ଧିବାଦର ପାଖାପାଖି । କିନ୍ତୁ ଦେଶ କାଳପାତ୍ରକୁ ଲକ୍ଷ୍ୟ ରଖି ବାସ୍ତବ ଦୃଷ୍ଟିକୋଣରୁ ଡକଟର ମହତାବ ସବୁକଥା ବିଚାର କରନ୍ତି । କେବେ ସେ ରୁକ୍ଷ ବାସ୍ତବତାକୁ ଏଡାଇ କେବଳ ନୀତି ନାମରେ କୌଣସି ନିଷ୍ପତ୍ତି ନିଅନ୍ତି ନାହିଁ । ଏଣୁ ଏହାକୁ ମହତାବବାଦ୍ କହିଲେ ଚଳିବ । କିନ୍ତୁ ରାଜନୈତିକ କ୍ଷେତ୍ରରେ ଯେପରି ତାଙ୍କୁ ତାଙ୍କର ନିନ୍ଦୁକମାନେ ସମାଲୋଚନା କରନ୍ତି, ଗାନ୍ଧିବାଦୀ ନୀତି ବୟାନପ୍ରୟାସୀ ବନ୍ଧୁମାନେ ଅନୁରୂପ ସମାଲୋଚନା କରିବାରେ ପଛାନ୍ତି ନାହିଁ । ତେଣୁ ବିଭିନ୍ନ ଶିବିରରେ ତାଙ୍କର ତାଙ୍କ ନିନ୍ଦୁକଙ୍କ ସଂଖ୍ୟା କମ୍ ନୁହନ୍ତି ।

ଏ ସବୁ ସତ୍ତ୍ୱେ ଏ ଯୁଗର ସେ ଓଡ଼ିଆ ଜାତିର ଏକ ପରମ ପୁରୁଷ । ଏକମାତ୍ର ସର୍ବୋଚ୍ଚ ବଡ଼ୀଘର । ଓଡ଼ିଆ ଜାତିକୁ ଆଲୋକର ସଙ୍କେତ ଦେଇ ବାଟ ବତାଇଛି । ବତାଇବ ଅନନ୍ତ କାଳକୁ । ଆଲୋକ ତରଙ୍ଗ ଛୁଟାଇ ଜାତିକୁ ଠିକ୍ ଚାଲିବାକୁ ପଥ ଦେଖାଉଥିବ ।

ଶତ୍ରୁ ମିତ୍ର ନିର୍ବିଶେଷରେ ସେ ସମସ୍ତଙ୍କର ପରମ ବନ୍ଧୁ । ଜନମତରେ ଦାର୍ଶନିକ । ପଥଶ୍ରାନ୍ତ ଶ୍ରମିକ, କୃଷକ, ପୁଞ୍ଜିପତି, ଖଟିଖିଆ ମଜୁରିଆ, କବି,

ଲେଖକ, ସଙ୍ଗୀତଜ୍ଞ, ନାଟ୍ୟକାର (କାହାର ସେ ନୁହନ୍ତି ?) ସମସ୍ତଙ୍କର ପରମ ହିତୈଷୀ ଓ ପଥ ପ୍ରଦର୍ଶକ ।

ସେ ଓଡ଼ିଶାର ଅର୍ଦ୍ଧଶତାବ୍ଦୀ ବ୍ୟାପୀ ସାଂସ୍କୃତିକ ବିପ୍ଳବର ସାରଥୀ । ଓଡ଼ିଆ ସାହିତ୍ୟ, କଳା ସଂସ୍କୃତିର ନବଜାଗରଣର ଅଗ୍ରଦୂତ ।

ଶରତଚନ୍ଦ୍ର, କାଳନ୍ଦି ଚରଣ, ହରିହର, ବୈକୁଣ୍ଠ ନାଥ ଓ ଅନ୍ନଦାଶଙ୍କରଙ୍କ ସବୁଜ ସାହିତ୍ୟ ଯୁଗକୁ ସେହି ସଂପ୍ରସାରିତ କରିଛନ୍ତି । କରାଇଛନ୍ତି ।

ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ହରିହର, କୃପାସିନ୍ଧୁଙ୍କ ଉଦ୍ୟମକୁ ସବୁଜସାହିତ୍ୟ ସଙ୍ଗେ ସାଲିସ୍ କରାଇ, ଓଡ଼ିଶାରେ ପ୍ରଶସ୍ତ ସାହିତ୍ୟ ମଣ୍ଡପ ତିଆରିବାରେ 'ପ୍ରଜାତନ୍ତ୍ର' ଓ 'ଝଙ୍କାର' ଲେଖକ କାରଖାନା (Workshop) ବସାଇ ବହୁ ତରୁଣ, ନବୀନ ଲେଖକଙ୍କୁ ସାହିତ୍ୟ ସେବା ପାଇଁ ଅନୁପ୍ରାଣିତ କରିଛନ୍ତି । ଶିଶୁଜଗତ, ନାରୀଜଗତ, ସେ ଏକ ଏକ ଲେଖକ, କଳାକାର ସୃଜିବାରେ ବିକଳ୍ପ ପନ୍ଥା ।

ତାଙ୍କର ସ୍ୱକୀୟ ସାଂସ୍କୃତିକ ବହୁମୁଖୀ ପ୍ରତିଭା ହୃଦୟଙ୍ଗମ କଲେ, ମନ ଓ ହୃଦୟ ଦ୍ରବିଭୂତ ହୋଇଯାଏ ।

ଏହି କ'ଣ ସେହି ଅମଳିନ ପ୍ରତିଭା, ଯେ କି ଓଡ଼ିଶାର ରାଜନୀତି ପରିବେଶକୁ ପଙ୍କିଳ କରିଛି !

ଏହି କଣ ସେହି ରାଜନୀତିଜ୍ଞ ଡକ୍ଟର ମହତାବ ?

ବାସ୍ତବରେ ତାଙ୍କର ବହୁମୁଖୀ କଳା—ସଂସ୍କୃତି ରସାଣିତ ଅମର ପ୍ରତିଭାର କଳନା କରି ହୁଏ ନାହିଁ । ସାହିତ୍ୟ, ସାମ୍ବାଦିକତା, ସଂସ୍କୃତି ଓ କଳାଧର୍ମୀ ମନିଷ—ପଣିଆର କଳନା କରି ହୁଏନା !

ରାଜନୀତି କ୍ଷେତ୍ରରେ ତାଙ୍କ ଶିଷ୍ୟ, ପ୍ରଶିଷ୍ୟଙ୍କ ସଂଖ୍ୟା ଯେପରି ଗଣନା କରି ହୁଏ ନା, କଳା, ସଂସ୍କୃତି, ସାହିତ୍ୟ କ୍ଷେତ୍ରରେ ତାଙ୍କ ଦାୟାଦମାନଙ୍କର ସଂଖ୍ୟା ନିର୍ଣ୍ଣୟ କରିବା ମଧ୍ୟ ଆହୁରି କଷ୍ଟକର । କାରଣ ଡକ୍ଟର ମହତାବଙ୍କର ସାହିତ୍ୟ ପ୍ରତିଭା, ପ୍ରଜାତଂତ୍ର ଓ ଝଙ୍କାରର ସୃଜନୀ ପ୍ରତିଭା ବହୁ ଭାବରେ ଏ ଯୁଗର କବି-କଳାକାରଙ୍କୁ ପ୍ରଭାବିତ କରିଛି । ନୂତନ ରୁଚିର, ନୂତନ ସ୍ୱାଦର ସଂସ୍କୃତି ଗଢ଼ି ଉଠିବାରେ ଏ ସବୁର ପରିପୂରକ ଅବଦାନର ମୌଳିକ ପ୍ରଭାବ ବେଶ୍ ଅଛି ।

'ବିଷୁବ ମିଳନ' କଳାକାର,ସାହିତ୍ୟିକ, ସଂସ୍କୃତି ବିଦ୍‌ଗ୍ଧ ଶ୍ରୋତା, ବକ୍ତା, ରସିକଙ୍କର ତ୍ରିବେଣୀ, ମିଳନ ସ୍ଥଳ ପ୍ରୟାଗ ।

ସାହିତ୍ୟିକ ଓ କଳାକାରମାନଙ୍କ ଭିତରେ ଭାବର ଆଦାନ ପ୍ରଦାନ, ବନ୍ଧୁତ୍ୱ ଭାତୃଭାବ ଉଜ୍ଜୀବିତ ହେବା ସଙ୍ଗେ ସଙ୍ଗେ ଏହି ମିଳନ ଉତ୍ସବ ସ୍ୱକୀୟ ରୀତିରେ ଅନନ୍ତ ସୃଷ୍ଟିର ବିହଙ୍ଗବାଲୋକନ କରିବା ପାଇଁ ସୁବିଧା ଦିଏ । ଭବିଷ୍ୟତ କର୍ମପନ୍ଥା ନିରୂପଣ କରିବାକୁ ଉତ୍ସାହ ଦିଏ । ଏହା ଡକ୍ଟର ମହତାବଙ୍କ ପରି ଉଚ୍ଚକୋଟିର ସାହିତ୍ୟିକ ଓ ସଂଗଠକଙ୍କ ପାଇଁ ସମ୍ଭବ ହୋଇଛି ।

ଆଉ 'ଗାଁ ମଜଲିସ' ।

ଆଜନ୍ମ ବିପ୍ଳବୀ ମନର ଶୋଷିତ ହେଉଥିବା ଜନସାଧାରଣଙ୍କ ପାଇଁ ଡକ୍ଟର ମହତାବଙ୍କ ସମବେଦନାର ଉଚ୍ଛ୍ୱାସ । ଏହା ଦୈନନ୍ଦିନ ଘଟି ଯାଉଥିବା ଅନ୍ୟାୟ, ଅତ୍ୟାଚାରର ଧାରାବାହିକ ବିବରଣୀ । ସମସ୍ୟା ସମାଧାନ କରି ସମାଜର ବିଭିନ୍ନ ବ୍ୟକ୍ତି ଓ ସଂପ୍ରଦାୟର ନାଗରିକଙ୍କ ମନରେ କର୍ତ୍ତବ୍ୟବୋଧ ଜାଗ୍ରତ କରିବା ଏହାର ଉଦ୍ଦେଶ୍ୟ ।

ଏହାର ଉଦ୍ଦେଶ୍ୟ ଶାସକ ଗୋଷ୍ଠୀ ଓ ରାଜନୈତିକ ଲୋକଙ୍କୁ ସେମାନଙ୍କର ବାଟ ବତାଇ ଦେଶ ଦଶର ମଙ୍ଗଳ କରିବା । ଜାତିର ଏହି ମହା ବିଶୃଙ୍ଖଳା ଭିତରେ ବିଦ୍‌ଗ୍ଧ ପାଠକ ମନରେ ନୂଆ ଆଶା ଯେମିତି ସଂଚାର ହୁଏ ।

ଅସୀମର ସୀମା ନିର୍ଣ୍ଣୟ ପାଇଁ ଆମ ହାତରେ ଯେଉଁ କମ୍ପାସ ଯନ୍ତ୍ରଟି ଅଛି, ତାର ପରିଧି ବହୁ ସୀମିତ । ତେଣୁ ଅସୀମତାର ସୀମା ନିର୍ଣ୍ଣୟ କରିବା ପାଇଁ ଯେଉଁ ଉଦ୍ୟମ ହେଉଛି । ହାସ୍ୟାସ୍ପଦ ।

ଡକ୍ଟର ମହତାବଙ୍କର ସାଂସ୍କୃତିକ ଜୟଯାତ୍ରାରେ ଆମର ବିଦଗ୍ଧ ଲେଖକ ଓ ପାଠକ ପ୍ରତ୍ୟକ୍ଷ ହେଉ ବା ପରୋକ୍ଷ ଭାବରେ ପରିଚିତ । ଓଡ଼ିଶାର ସ୍ୱନାମଧନ୍ୟ ଲେଖକମାନେ ଡକ୍ଟର ମହତାବଙ୍କ ପରିକ୍ରମା ପାଇଁ ମୂଲ୍ୟବାନ ଲେଖା ଦେଇଥିବାରୁ ସେମାନେ ବନ୍ଦନୀୟ । ଏହି ଐତିହାସିକ ସଙ୍କଳନ ସେମାନଙ୍କ ସହଯୋଗିତା ବିନା ସମ୍ଭବପର ହୋଇ ନ ଥାନ୍ତା ।

ଓଡ଼ିଶାର ଗଜପତିଙ୍କ ଲୋପ ପାଇବାପରେ ଓଡ଼ିଶା ରଙ୍ଗମଞ୍ଚରୁ ମଞ୍ଚପ୍ରଦୀପ ଲିଭି ଯାଇଛି ।

ଏକାମ୍ର ଥିଏଟର୍ସର ଉଦ୍ୟୋକ୍ତାମାନେ ଏକଲବ୍ୟର ନିଷ୍ଠା ନେଇ ଡକ୍ଟର ମହତାବଙ୍କୁ ଏକାମ୍ର ନିବାସର ପରିପୂରକ ଅନୁଷ୍ଠାନ ରୂପେ ଏକାମ୍ର ଥିଏଟର୍ସକୁ ପନ୍ଦରବର୍ଷ ତଳେ ପ୍ରତିଷ୍ଠା କରିଥିଲେ ।

ହାୟ, ଏକଲବ୍ୟର ଦଶା କଣ ଏକାମ୍ର ଥିଏଟର୍ସ ଭୋଗ କରୁଛି !!

ସେ ସ୍ରଷ୍ଟା । ତାଙ୍କରି ସୃଷ୍ଟି ଏହି ଏକାମ୍ର ଥିଏଟର୍ସ ତାଙ୍କର ଜନ୍ମନକ୍ଷତ୍ରରେ ତାଙ୍କର ଅସୀମତାର ପରିକ୍ରମା କରିବା ପାଇଁ ଓଡ଼ିଶାର ସ୍ୱନାମଧନ୍ୟ ଲେଖକଙ୍କୁ ନେଇ ପ୍ରୟାସ କରିଛି ।

ସ୍ରଷ୍ଟାର ସୃଷ୍ଟି ମଙ୍ଗଳ ହେଉ । !!



# ମହତାବ ପରିକ୍ରମା

ଗୋପୀନାଥ ମହାନ୍ତି

ମହତାବ ଦୀର୍ଘଜୀବୀ ହୁଅନ୍ତୁ । ସୁସ୍ଥ ସବଳ ହୋଇ ଆନନ୍ଦ ମନରେ ଆହୁରି ଶହେ ବର୍ଷ ବଞ୍ଚନ୍ତୁ ।

ତାଙ୍କର ଜୀବଦ୍ଦଶାରେ କେତେକ ବନ୍ଧୁ ମିଶି ଗୋଟିଏ 'ମହତାବ ପରିକ୍ରମା' ବାହାର କରୁଛନ୍ତି । ନାଁଟି ଦେଖି ମୋତେ ଚହଁକିନା ଲାଗିଲା । ପରିକ୍ରମା କ'ଣ ? ମନେ ପଡ଼ିଲା, ହଁ, ଶବ୍ଦମାନ ଅର୍ଥ ବଦଳାନ୍ତି । ଲୋକେ ଚାହିଁଲେ ପୁରୁଣା ଶବ୍ଦକୁ ନୂଆ ଅର୍ଥରେ ବ୍ୟବହାର କରି ନୂଆ ପରମ୍ପରା ଗଢନ୍ତି । ସଂସ୍କୃତ "ପରିକ୍ରମା" ଓଡ଼ିଆରେ ଗୋଟିଏ ରୂଢ଼ୀରୂପ ଧରିଥିଲା । ତାହା ଆମର ସାମାଜିକ ପ୍ରଥାସମ୍ମତ ସଂଶ୍ଳିଷ୍ଟ । 'ପରିକ୍ରମା' ମାନେ ଘୂରିକରି ବୁଲିବା । ଆମେ ଦିଅଁ ପରିକ୍ରମା କରୁ, ମନ୍ଦିର ପରିକ୍ରମା କରୁଁ । କିନ୍ତୁ ମଣିଷକୁ ପରିକ୍ରମା କରିବାର ବିଧି ଅଲଗା । ତାହା ତାହାର ଜୀବଦ୍ଦଶାରେ ହୁଏ ନାହିଁ । ମଶାଣିରେ ହୁଏ । କୌଣସି ଜୀଅନ୍ତା ମଣିଷ ଦେବତା ନୁହେଁ । ମଲାପରେ ତାର ଆତ୍ମାକୁ ଦେବତା ଭାବନ୍ତି । କିନ୍ତୁ, ଚାଲୁ ଏ ନୂଆ ପରମ୍ପରା । ସମାଜ ବଦଳୁଛି—ପ୍ରଥା ବି ବଦଳିବ । ଶବ୍ଦମାନଙ୍କୁ କେବଳ ସଂସ୍କୃତ ଧାତୁ ପ୍ରତ୍ୟୟଗତ ଅର୍ଥରେ ବ୍ୟବହାର କରାଯାଉ, ମୋର ଆପତ୍ତି ନାହିଁ ।

ମୁଁ କୋରାପୁଟ, ଫୁଲବାଣୀ, ଗଞ୍ଜାମ ମାଳର ପର୍ବତ ଦେଖିଛି । ମହତାବଙ୍କୁ ଦେଖିଛି । ଏଠି ଦେଖେଁ ଜଣେ ମଣିଷ ପର୍ବତ । ସେ ଭଲ କି ମନ୍ଦ, ସେ କଥା ଭାବେ ନାହିଁ ।

ପର୍ବତ ପର୍ବତହିଁ । ସେଠି ପଦେ ପଦେ ଚଢ଼ ବନ୍ଧୁରତା । କେଉଁଠି ଅନ୍ଧାରି ଖୋଲ । ଖାମଙ୍କ ଲଙ୍ଗଳା ଶିଅର । ପାତାଳୀ କୁଅ । ପୁଣି ଆକାଶକୁ

ମୁଣ୍ଡଟେକିଛି ଉଚ୍ଚ ଶିଖ । ଯେଉଁଠି ହଳଦୀ ବସନ୍ତ, ଶାଗୁ, ମୟୂର । ପୁଣି ସେଠି ବାଘ ଭାଲୁ ବିଲୁଆ । ସେଠି ଲକ୍ଷ ଶାଳଗଛ ଯେ ନଇଁ ନାହିଁ, ପୁଣି ସେଠି ଶିଆଳି ଯେ ପଥରରେ ଚଢ଼ିଲେ ବି ଲଟେଇ ଲଟେଇ ନିଜବାଟ ନିଜେ କରି ଶହେ ଗଛରେ ଭରିଦେଇ ବନ୍ଧେଇ ହୋଇ ଯାଏ, ମୋର କି ଶକ୍ତି ଅଛି ମୁଁ ପର୍ବତକୁ ବର୍ଣ୍ଣନା କରିବି ।

ମୁଁ ଜାଣେ ତାଙ୍କ ବିଷୟରେ କୌଣସି ଗୋଟିଏ ଉକ୍ତି ସବୁ କଥାକୁ ଖାପିଲା ଭଳି ହେବ ନାହିଁ । ସେ ଉକ୍ତିକୁ କାଟିଲା ଭଳି ନାନା ବିରୋଧୀ ଉକ୍ତି ଲାଗି ଉପାଦାନ ମିଳିବ । ସେ ଜଣେ ଅପୂର୍ବ ମଣିଷ । ବିଚିତ୍ର ମଣିଷ । ଅଫୁରନ୍ତ ଅନୁସନ୍ଧାନ ଓ ଗବେଷଣାର ବସ୍ତୁ ।

ବିଭିନ୍ନ ସମୟରେ ମହତାବଙ୍କ ଉକ୍ତି ସଂଗ୍ରହ କରି ରଖିଲା ଭଳି ଗୋଟିଏ ମୁଁ ମନେରଖିଛି । ଥରେ ଠାଏ ଚୌକି ନଥିଲା । ମୁଁ ଠିଆ ହୋଇ ଥିଲି । ମହତାବ କହିଲେ, "ଏ ସଂସାରରେ ଆସନ କେହି କାହାକୁ ଦିଏ ନାହିଁ, ନିଜ ପାଇଁ ଆସନ ନିଜେ ଛଡ଼ାଇ ଆଣିବାକୁ ପଡ଼େ" । ଜୀବନରେ କେତେ ଥର ଯେ ସେ କଥା ଭାବିଛି କଳନା ନାହିଁ । ଅବଶ୍ୟ ଛଡ଼ାଛଡ଼ି କାର-ବାରରେ ମୁଁ ଟିକେ ପଛୁଆ । ଆଉଥରେ କେତେକ କାରଣରୁ ମନରେ ଭାରି ଦୁଃଖ ଥାଏ । ବାରିପଦା ସର୍କିଟ୍ ହାଉସରେ ଦୈବୀ ଯୋଗକୁ ଦୁହେଁ ଏକାଠି ହେଲୁ । ମୁଁ ଦୁଃଖିତ ଶୁଣି ସେ କହିଲେ, "ସାହିତ୍ୟ ଯାହାର ଧର୍ମ ସେ ପୁଣି କେବେ ଦୁଃଖିତ ହୋଇପାରେ ?" ବାରମ୍ବାର ସେଇ-କଥା ମୋର ମନେ ପଡ଼ୁଛି । ଅତି ଦୁଃଖରେ ନିଜକୁ ପଚାରୁଛି-ପ୍ରକୃତରେ କ'ଣ ମୁଁ ଦୁଃଖିତ ?

ଜୀବନର ଘୂର୍ଣ୍ଣିବାତ୍ୟା ସେ ବହୁତ ଦେଖିଛନ୍ତି । ଦେଖି ଦେଖି ପାକଳ ହୋଇଛନ୍ତି । ତଥାପି ତାଙ୍କର ଶିଖିବା ପ୍ରବୃତ୍ତି ସରିନାହିଁ । ନୂଆ କଥାଟି ଶୁଣିଲେ କାନ ଡେରନ୍ତି । ଯେଉଁଠି ଥାଆନ୍ତୁ, ଯେତେ ବେଳ ହୋଇ ଥାଉ, ବକ୍ତୃତା ଦେବାକୁ ପାଟି ଖୋଲିଲେ ସାଧାରଣ କଥାଟିକୁ ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଭାବେ ବୁଝାଇ ନୂଆ ଅର୍ଥ କରନ୍ତି । ତାଙ୍କର ହସ,

ତାଙ୍କର ଶ୍ଳେଷ ଅଳ୍ପ କଥାରେ ସାରଗର୍ଭକ କଥା ଓ ବିଚକ୍ଷଣ ସମୀକ୍ଷା ଏ ପର୍ଯ୍ୟନ୍ତ ଅବ୍ୟାହତ । ମହତାବ କହିଲେ ମନେ ପଡ଼େ ବହ୍ବଗଦା ଭିତରେ ଆଲୁଅ ଜାଳି ଲେଖିଯାଉଥିବା ଜଣେ ଲେଖକ । ଦିନଯାକ ନାନା ଧନ୍ଦାରେ ଲିପ୍ତରହି ନାନା ଅଶୁଭଶକ୍ତିର ପରାକ୍ରମ ଖଟାଇ ତଥାପି ସେ ବେଳ କରନ୍ତି ନିତ ଲେଖିବାକୁ । ଆଖିରେ କାଟାରାକ୍ଟ ହେଲା, ତଥାପି ଲେଖିଲେ । ଘମାଘୋଟ ଅନ୍ଧାର ଆସିଲା, ପରିସ୍ଥିତି ରୁଦ୍ଧ ହୋଇ ଆସିଲା, ତଥାପି ଲେଖିଲେ । ମଣିଷ ଦେବତା ନୁହେଁ, ତାର ପ୍ରତିପଦ ବେଦ ନୁହେଁ, ନ ହେଉ । ସେ ଲେଖୁଥିଲେ ଲେଖୁଛନ୍ତି । ଓଡ଼ିଶାରେ ଅଳ୍ପ ଲୋକ ଅଛନ୍ତି ଯାହାଙ୍କ ବିଷୟରେ ଏ ଉକ୍ତି ଦିଆ ଯାଇପାରେ ।

ତାଙ୍କୁ ନମସ୍କାର ଜଣାଉଛି ।



# ଶୁଭ ସ୍ୱପ୍ନକ୍ଷତ୍ର

## କାଳନ୍ଦୀ ଚରଣ ପାଣିଗ୍ରାହୀ

କଥା ଅଛି—ଦୂର ପର୍ବତ ସୁନ୍ଦର, ଦୂର ବନ୍ଧୁ ସୁନ୍ଦର। ପର୍ବତ ପାଖକୁ ଯାଇ ତା' ଉପରେ ଚଢ଼ିଲେ କି ବୁଲିଲେ ସେ ସୌନ୍ଦର୍ଯ୍ୟ ଉପଭୋଗ କରି ହୁଏ ନାହିଁ କିମ୍ବା ବନ୍ଧୁ ଘରକୁ ଯାଇ ଅଯାଚିତ ଭାବରେ ତାଙ୍କ ଅନ୍ନଧ୍ୱଂସ କଲେ ? ସେ ସୌନ୍ଦର୍ଯ୍ୟ ଉପଭୋଗ କରିହୁଏ ଯେତେ ବେଶୀ ଦୂରଛଡ଼ା ରହିପାରିଲେ ବନ୍ଧୁଙ୍କଠାରୁ କିମ୍ବା ପର୍ବତ ଠାରୁ।

ପରାଧୀନ ଯୁଗରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଜଣେ ସ୍ୱାଧୀନତା ସଂଗ୍ରାମୀ ରୂପେ ପରିଚିତ ହୁଅନ୍ତି। ସେତେବେଳେ ଦୂରରୁ ଯୁବକ ଯୋଦ୍ଧା ମହତାବଙ୍କୁ ଦେଖିଲା ଭଳି ମନେପଡ଼େ ମୋର ମୟୂରଭଞ୍ଜ ରାଜ୍ୟର ରାଜଧାନୀ ବାରିପଦାଠାରେ। ଐତିହାସିକ, ସାମ୍ବାଦିକ ଓ ସାହିତ୍ୟିକ ଭାବରେ ମଧ୍ୟ ସେ ଜଣାଶୁଣା ହୁଅନ୍ତି ତାହା ପରେ।

ଯୌବନସୁଲଭ ନିରଳସ କର୍ମତତ୍ପରତା ଆଜି ସୁଦ୍ଧା ଯେପରି ତାଙ୍କ-ଠାରେ ଲକ୍ଷିତ ହୁଏ, ତହିଁରୁ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ 'ଭାଗବତ'ର ସେଇ ସୁପରିଚିତ ପଦାଟିର ଉକ୍ତିଟି ଗ୍ରୁଏ ମନେପଡ଼ି ଯାଏ—

"କର୍ମମୋହର ନିଜଗୁରୁ
ଉଦ୍ଧବ ତୁ କେତେ ପରୁରୁ !"

"ମହାଭାରତ"ର ଧର୍ମକ୍ଷେତ୍ରରେ ସ୍ୱୟଂ ବିଶ୍ୱସ୍ରଷ୍ଟା କହନ୍ତି ପରା—ମୁଁ ଯଦି ଏକ ମୁହୂର୍ତ୍ତ ସୁଦ୍ଧା କର୍ମ ନ କରେ, ତା' ହେଲେ ମୋର ସମଗ୍ର ସୃଷ୍ଟି ହିଁ ଧ୍ୱଂସ ପାଇ ଯିବ ଯେ।

ମହତାବ ବାବୁଙ୍କ ଚିର ନିରଳସ କର୍ମମୁଖର ଜୀବନ "ଅଷ୍ଟୋତ୍ତର ଶତ ସମ୍ବତ୍ସର" ହୋଇ ଜାତିସ୍ମର ଜୀବନ-ସଂଗ୍ରାମକୁ ଉତ୍ତରୋତ୍ତର ଅଗ୍ରଗାମୀ କରୁ—ଏହା ହିଁ ତାଙ୍କ ଶୁଭ ସ୍ୱପ୍ନକ୍ଷତ୍ରରେ କାମନା।

●

# କର୍ମଯୋଗୀ ମହତାବ

ହରିହର ପଟେଲ

ଜୀବନ କାଳ ମଧ୍ୟରେ ଉଚ୍ଚ ପ୍ରଶଂସା, ଅଭିନନ୍ଦନ, ଶ୍ରଦ୍ଧାଞ୍ଜଳୀ ଆଦି ପାଉଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବ ଅନ୍ୟତମ । ଓଡ଼ିଶାର ଅତୀତ ବର୍ଷଗୁଡ଼ିକର ଅନୁଧ୍ୟାନ କଲେ ଯେ କେହି ମଧ୍ୟ ମହତାବଙ୍କର ଅବଦାନ ନିରୀକ୍ଷଣ କରି ଅଭିଭୂତ ହୋଇଉଠିବ । ସ୍ୱାଧୀନତା ସଂଗ୍ରାମ କାଳରେ ତାଙ୍କର ସାଧନା ହୁଏତ ପୂରାପୂରି ଇତିହାସର ବିଷୟ ହୋଇ ଗଲାଣି, କାରଣ ସେ ସମୟର ତାଙ୍କର ସହକର୍ମୀ ଏବଂ ସମସାମୟିକ ବ୍ୟକ୍ତିଙ୍କର ସଂଖ୍ୟା ଏବେ ଅତି ବେଶୀ ନୁହେଁ । ତାଙ୍କର ତତ୍କାଳୀନ ସାଧନାର ପରିଚୟ ପାଇଁ ଲିପିବଦ୍ଧ ଇତିହାସର ଅନୁଧ୍ୟାନ ଲୋଡ଼ା । କିନ୍ତୁ ସ୍ୱାଧୀନତା ପରେ ଅବା ସେହି ପାଖାପାଖି ସମୟରୁ ଏ ପର୍ଯ୍ୟନ୍ତ ସେ ଯାହାସବୁ କରି ଯାଇଛନ୍ତି ଏବଂ କରି ଯାଉଛନ୍ତି ଓଡ଼ିଶାବାସୀ ଉଣା ଅଧିକେ ସେ ସବୁର ପ୍ରତ୍ୟକ୍ଷଦର୍ଶୀ । ବିରାଟ କର୍ମମୟ ଜୀବନ । ସବୁକ୍ଷେତ୍ରରେ ତାଙ୍କର ଅବଦାନ । ରାଜନୀତି, ସାହିତ୍ୟ, ଇତିହାସ, ଶିକ୍ଷା, ସଂସ୍କୃତି, ରାଜ୍ୟର ଅର୍ଥନୈତିକ ବିକାଶମୂଳକ ଯୋଜନା କାର୍ଯ୍ୟକ୍ରମ, ସାମ୍ବାଦିକତା, ଶାସନ ସର୍ବତ୍ର ସେ ପରିଲକ୍ଷିତ, ତାଙ୍କର କର୍ମପ୍ରବାହ ଏ ପର୍ଯ୍ୟନ୍ତ ଅବାରିତ ଭାବେ ଚାଲିଛି । ରାଜ୍ୟବାସୀ ଏବେ ସୁଦ୍ଧା ତାଙ୍କ କର୍ମପ୍ରବାହ ସିକ୍ତ । ହୀରାକୁଦ ବନ୍ଧ ଯୋଜନା, ରାଉରକେଲା ଇସ୍ପାତ ନଗରୀ, ରାଜଧାନୀ ନିର୍ମାଣ, ବନ୍ଦର, ରାସ୍ତାଘାଟର ବିକାଶ, ସବୁଥିରେ ସେ ଉଜ୍ଜ୍ୱଳ ସ୍ୱରୂପ ବିରାଜମାନ । କିନ୍ତୁ ଏ ସବୁଠାରୁ ବଳି ସେ ଚିରସ୍ମରଣୀୟ ରହିବେ ନୂତନ ଓଡ଼ିଶାର ନିର୍ମାତା ରୂପେ । ୧୯୩୬ ଅପ୍ରେଲରେ ଯେଉଁ ଓଡ଼ିଶା ରାଜ୍ୟ ଗଠିତ ହେଲା, ତାହା ପଙ୍ଗୁ ଓ ଚତୁର୍ଗୁଣ ରହିଯାଇଥିଲା । ୧୯୪୮ ଜାନୁଆରୀ ୧ ତାରିଖରେ ଯଦି ଗଡ଼ଜାତ ଗୁଡ଼ିକର ମିଶ୍ରଣରେ ନୂତନ ଓଡ଼ିଶା

ଗଠିତ ହୋଇ ନଥାନ୍ତା । ଗଡ଼ଜାତ ମିଶ୍ରଣରେ ତାଙ୍କର ଉଦ୍ୟମ, ସାଧନା ଏବଂ କାର୍ଯ୍ୟକୁଶଳତା ତାଙ୍କ ଜୀବନୀରେ ବିଶିଷ୍ଟ ସ୍ଥାନ ଅଧିକାର କରିବ । ଆଉ କିଛି ନ ହେଲେ ମଧ୍ୟ କେବଳ ଏତିକ ପାଇଁ ସେ ଓଡ଼ିଶାରେ ଚିର-ସ୍ମରଣୀୟ ରହିବେ । କିନ୍ତୁ ତାଙ୍କର ପ୍ରଖର କର୍ମମୟ ଜୀବନରେ ବିଶ୍ରାନ୍ତର କୌଣସି ସ୍ଥାନ ନାହିଁ । ତାଙ୍କର ପ୍ରତିଭା ବହୁମୁଖୀ ଏବଂ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେ ଯେ କର୍ମରତ ରହିବେ ଏହା ଦିବା ଲୋକ ପରି ସୁସ୍ପଷ୍ଟ । ସେ ଜଣେ ଲୋକ, ହୁଏତ ଶହେ ଜଣଙ୍କର କାମ କରୁଛନ୍ତି । ଏପରି କର୍ମପ୍ରବଣ ଜୀବନର ଆମେ ଯଦି ଉଚ୍ଛ୍ୱସିତ ପ୍ରଶଂସା କରି ନ ଜାଣୁ, ଏପରି ପ୍ରଖର କର୍ମଯୋଗୀଙ୍କୁ ଶ୍ରଦ୍ଧା, ଭକ୍ତି, ସମ୍ବର୍ଦ୍ଧନା ଜ୍ଞାପନ ନକରୁ, ତେବେ ରାଜ୍ୟବାସୀଙ୍କର କର୍ତ୍ତବ୍ୟରେ ତ୍ରୁଟି ବୋଲି ଜାଣିବାକୁ ହେବ । ଜୀବନର ଆଉ ଏକ ଜନ୍ମ ଦିବସରେ ଅନ୍ତରର ସୁମନାସ କାମନା କରିବାର ଅବକାଶ ପାଇଥିବାରୁ ମୋର ଏକ ସୌଭାଗ୍ୟ । ଏହିପରି ଆଉ ବହୁ ଜନ୍ମ ଦିବସ ଡକ୍ଟର ମହତାବଙ୍କର ଜୀବନରେ ବିତିଯାଉ, ଏହାହିଁ ଆନ୍ତରିକ ପ୍ରାର୍ଥନା ।



# ଜାତୀୟ ଜୀବନକୁ ମହତାବଙ୍କ ଅବଦାନ

ସାତକଡ଼ି ହୋତା

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପୁନରୁତ୍ଥାନ ନିମିତ୍ତ ଯେଉଁମାନେ ସ୍ମରଣୀୟ ହୋଇ ରହିବେ, ସେମାନଙ୍କ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବ ଅଗ୍ରଗଣ୍ୟ । ଭାରତର ଜାତୀୟ ସଂହତି ଓ ସ୍ୱାଧୀନତା ନିମିତ୍ତ ସେ ଯେପରି ବିଦେଶୀ ଶାସକ ବିରୁଦ୍ଧରେ ସଂଗ୍ରାମ କରିଥିଲେ, ସେହିପରି ଉତ୍ସାହ, ନିଷ୍ଠା ଏବଂ ପ୍ରବଣତାର ସହିତ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ପୁନରୁଜ୍ଜୀବିତ କରି ଆଧୁନିକ ଜୀବନ ଓ ସମାଜକୁ ସମୃଦ୍ଧ କରିବା ପାଇଁ ପ୍ରବଳ ଉଦ୍ୟମ କରିଛନ୍ତି । ଏହି ଉଦ୍ୟମର ସଫଳତା ଆଜି ଆମ୍ଭମାନଙ୍କ ଆଗରେ ବିଦ୍ୟମାନ ।

ମହତାବ ବାବୁ ରାଜନୀତିରେ ପ୍ରବୀଣ ଏବଂ କୌଶଳୀ ସଂଗଠକ ଭାବରେ ନିଜକୁ କେବଳ ଓଡ଼ିଶାରେ ନୁହେଁ, ଭାରତବର୍ଷରେ ପ୍ରତିଷ୍ଠିତ କରି ପାରିଥିଲେ । କେବଳ ଏତିକି କରି ସେ ନୀରବ ଦ୍ରଷ୍ଟା ହୋଇ ଜାତୀୟ ଜୀବନକୁ ଲକ୍ଷ୍ୟ ନକରି ଏହାର ପ୍ରଧାନ ସ୍ରୋତ ସହିତ ବରାବର ସଂଯୋଗ ରକ୍ଷା କରି ଆସିଛନ୍ତି ଏବଂ ଏପରିକି ଜାତୀୟ ପ୍ରବାହକୁ ବହୁ ଭାବରେ ପ୍ରଭାବିତ ଓ ନିୟନ୍ତ୍ରିତ କରିଛନ୍ତି । ଦେଶୀୟ ରାଜ୍ୟଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣରେ ସେ ଯେଉଁ ଭୂମିକା ଗ୍ରହଣ କରିଥିଲେ ତାହା ଅବିସ୍ମରଣୀୟ । ତାଙ୍କର ନେତୃତ୍ୱରେ ଗଡ଼ଜାତମାନଙ୍କରେ ପ୍ରଜା ଆନ୍ଦୋଳନମାନ ପ୍ରସାରିତ ଓ ପ୍ରତିଷ୍ଠା ଲାଭ କରି ପାରିଥିଲା । ମୟୂରଭଞ୍ଜ ବ୍ୟତୀତ ଆଉ ସବୁ ଗଡ଼ଜାତ ଓଡ଼ିଶା ସହିତ ମିଶି ଯିବାପରେ ଯେପରି କୌଶଳ, ଧୈର୍ଯ୍ୟ ଏବଂ ବିଚକ୍ଷଣତାର ସହିତ ସେ ମୟୂରଭଞ୍ଜକୁ ଓଡ଼ିଶା ସହିତ ମିଶାଇ ପାରିଲେ ତାହା ଅନ୍ୟ ଏକ ଇତିହାସ ।

ଏସବୁ ଘଟଣାବଳୀ ତାଙ୍କର ସାଂଗଠନିକ ଶକ୍ତି, ଦୃଢ଼ତା ଏବଂ ନିଷ୍ଠାର ପରିଚୟ ଦିଏ । କେବଳ ଦେଶକୁ ସ୍ୱାଧୀନ କରି ସେମାନଙ୍କ ହାତରେ ନୂଆ ଶାସନର ଦାୟିତ୍ୱ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଜାତୀୟ ଜୀବନକୁ ଉନ୍ନତ ଏବଂ ସଂଜୀବିତ କରିବା ପାଇଁ ପ୍ରବଳ ଉଦ୍ୟମ ଆରମ୍ଭ କଲେ । ତାଙ୍କର ହୃଦବୋଧ ହୋଇଥିଲା ଯେ ଭାଷା, ସାହିତ୍ୟ ଓ ସଂସ୍କୃତିର ପୁନରୁତ୍ଥାନ ନହେଲେ ଜାତୀୟ ଜୀବନରେ ସଂହତି, ସମନ୍ୱୟ ଏବଂ ଐକ୍ୟ ଦୃଢ଼ ହେବ ନାହିଁ । ସାହିତ୍ୟ ଓ ସଂସ୍କୃତି ମଣିଷକୁ କ୍ରମାଗତ ଉତ୍କର୍ଷତା ଆଡ଼କୁ ନବାରେ ସବଦା ସହାୟକ ହୁଅନ୍ତି । ଭାଷା ଓ ସଂସ୍କୃତି ସାମାଜିକ ଜୀବନକୁ ଚିରକାଳ ଐକ୍ୟବଦ୍ଧ କରିବାରେ ସହାୟକ ହୋଇ ଆସିଛି । କିନ୍ତୁ ଯେତେବେଳେ ଉତ୍କଳର ମହତାବ ଲକ୍ଷ୍ୟ କଲେ ଯେ ସାହିତ୍ୟ, ଭାଷା ଓ ସଂସ୍କୃତିର ନିରନ୍ତର ଅଭିବୃଦ୍ଧି ପାଇଁ ବହୁକାଳ କୌଣସି ସାଂଗଠନିକ ପ୍ରୟାସ ହୋଇ ନାହିଁ, ଯାହା ଫଳରେ କି ଜାତୀୟ ଜୀବନ ଉଦ୍‌ବୁଦ୍ଧ ହୋଇ ପାରୁ ନାହିଁ, ସେତେବେଳେ ସେ ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ କରି ଏହାକୁ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶରେ ଅସ୍ତ୍ରଭାବରେ ବ୍ୟବହାର କଲେ । ଫଳରେ 'ପ୍ରଜାତନ୍ତ୍ର' କେବଳ ସମ୍ବାଦ ପରିବେଷଣ ନକରି ଲୋକମାନଙ୍କ ମଧ୍ୟରେ ସାହିତ୍ୟ ଓ ସଂସ୍କୃତିର ପ୍ରସାର ଘଟାଇଲା । ରବିବାର ସଂସ୍କରଣରେ ଏଥିପାଇଁ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ କରିବା ବ୍ୟତୀତ; ଲୋକମାନଙ୍କର ସାମାଜିକ ଚେତନାକୁ କ୍ଷିପ୍ର ଏବଂ ପ୍ରସାରିତ କରିବା ପାଇଁ ଗାଁ ମଜଲିସ ଲେଖା ସେ ଆରମ୍ଭ କଲେ । ବାଳକ-ବାଳିକାମାନଙ୍କ ପାଇଁ ଶିଶୁ-ସାହିତ୍ୟର ପ୍ରସାର ମଧ୍ୟ ହେଲା ଏବଂ ସର୍ବୋପରି ଓଡ଼ିଆ ସାହିତ୍ୟର ମୁଖପତ୍ର ଭାବରେ 'ଝଙ୍କାର' ପ୍ରକାଶିତ ହେଲା । ପ୍ରଜାତନ୍ତ୍ର ଓ 'ଝଙ୍କାର'ର ପୃଷ୍ଠାରେ ନବୀନ ଓ ପ୍ରବୀଣ ଲେଖକମାନଙ୍କର କୃତି ଯେ କେବଳ ପ୍ରକଟିତ ହେଲା ତାହା ନୁହେଁ, ସେମାନଙ୍କର ଅବଦାନକୁ ସ୍ୱୀକୃତି ପ୍ରଦାନ କରି ବାର୍ଷିକ ସାହିତ୍ୟ ସମ୍ମିଳନୀ ମଧ୍ୟ ଅନୁଷ୍ଠିତ ହେଲା । ଏଥିରେ ମହତାବ ବାବୁଙ୍କର ବିଚକ୍ଷଣ ସାଂଗଠନିକ ଶକ୍ତିର ଭୂୟସୀ ପରିଚୟ ମିଳେ ।

ତାଙ୍କ ପୂର୍ବରୁ ବିଂଶ ଶତାବ୍ଦୀର ପ୍ରଥମଭାଗରେ ଓଡ଼ିଆ ଭାଷାକୁ ରକ୍ଷା କରିବା ପାଇଁ ଉଦ୍ୟମ ଅବଶ୍ୟ ହୋଇଥିଲା, ଓଡ଼ିଆର ଜାତୀୟତା ସହିତ ଓଡ଼ିଆ ଭାଷାକୁ ରକ୍ଷା କରିବା ପାଇଁ ଫକୀରମୋହନ, ମଧୁସୂଦନ, ଗୋପବନ୍ଧୁ ପ୍ରଭୃତି କୃତି ସନ୍ତାନମାନେ ଯେଉଁ ଅବଦାନ ଦେଇଯାଇଛନ୍ତି ତାହା ଚିରସ୍ମରଣୀୟ ହୋଇ ରହିବ; କିନ୍ତୁ ସ୍ୱାଧୀନତା ପରେ ଭାଷା ଏବଂ ସାହିତ୍ୟ ସଂସ୍କୃତି ଓ ସାମାଜିକ ଚେତନାକୁ ସମୃଦ୍ଧ କରିବା ନିମିତ୍ତ ଯେଉଁ ସାଂଗଠନିକ ପ୍ରଚେଷ୍ଟା କରା ହୋଇଛି ତହିଁର ପ୍ରଧାନ ପୁରୋଧା ଡକ୍ଟର ମହତାବ । ତେଣୁ ସେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଏକ ଜୀବନ୍ତ ଏବଂ ଚଳମାନ ପ୍ରବକ୍ତା । ସେ ଯଦି ଅନ୍ୟାନ୍ୟ ରାଜନୈତିକ ବ୍ୟକ୍ତିମାନଙ୍କ ପରି ନିଜକୁ କେବଳ ରାଜନୀତିରେ ବ୍ୟାପୃତ ରଖିଥାଆନ୍ତେ, ତା'ହେଲେ ଆଜି ଓଡ଼ିଆ ସାହିତ୍ୟ ଜଗତରେ ଏତେ ରୂପ ସମ୍ଭାର ଏବଂ ଚମତ୍କାରିତା ହୁଏତ ସମ୍ଭବ ହୋଇ ନଥାନ୍ତା ।

ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସଂଗଠନର ଅଭାବଯୋଗୁଁ ଆଜି ଏବଂ ଅତୀତରେ ଓଡ଼ିଆ ଭାଷା ଏବଂ ଜାତୀୟ ଜୀବନ କ୍ଷତିଗ୍ରସ୍ତ ହୋଇ ଥିଲା । ଦେଶର ବିଭିନ୍ନ ପ୍ରାନ୍ତର ଘଟଣାବଳୀରୁ ଏହା ପ୍ରମାଣିତ ହୁଏ ଯେ, ଭାଷା ଜନସାଧାରଣଙ୍କ ମଧ୍ୟରେ ଏକତା ଏବଂ ସଂହତିର ମାଧ୍ୟମ ରୂପେ କାର୍ଯ୍ୟ କରେ । ଭାଷାକୁ ଆଶ୍ରୟ କରି ବିଭିନ୍ନ ଧର୍ମ ଓ ମତବାଦର ଲୋକେ ଏକଜ ହବା ବିରଳ ନୁହେଁ । ବଙ୍ଗଳା ଦେଶ ସୃଷ୍ଟିର ମୂଳମନ୍ତ୍ର ହେଲା ଭାଷା । ଭାଷା ସୂତ୍ରରେ ପ୍ରଦେଶ ଗଠନ ହବା ପରେ ମଧ୍ୟ ପ୍ରତ୍ୟେକ ରାଜ୍ୟରେ ଅନ୍ୟାନ୍ୟ ଭାଷାଭାଷୀ ରହିବା ସ୍ୱାଭାବିକ । କିନ୍ତୁ ସେମାନଙ୍କୁ ଜାତୀୟ ଜୀବନର ପ୍ରଧାନ ସ୍ରୋତରେ ସାମିଲ କରିବାକୁ ହେଲେ ଭାଷାର ସୁରକ୍ଷା ଏବଂ ବିକାଶ ଆବଶ୍ୟକ । କବି ଗଙ୍ଗାଧର ଯଥାର୍ଥରେ କହିଥିଲେ, "ଉଚ୍ଚ ହବା ପାଇଁ ଅଛି ଯଦି ଆଶା, ଉଚ୍ଚ କର ତେବେ ନିଜ ମାତୃଭାଷା" । ମାତୃଭାଷାର ମହାନତା ସବୁ କାଳରେ ସ୍ୱୀକୃତ ହୋଇଛି ।

କିନ୍ତୁ ଭାଷାକୁ ଆଶ୍ରୟ କରି ଯେଉଁ ସାହିତ୍ୟ ଗଢିଉଠେ ଏବଂ ଜୀବନକୁ ସମୃଦ୍ଧ କରି ଯେଉଁ ସଂସ୍କୃତିର ସୃଷ୍ଟି ହୁଏ, ତାହାର ସୁରକ୍ଷା

ସଙ୍ଗଠନ ଦ୍ୱାରହିଁ ସମ୍ଭବ । ବ୍ୟକ୍ତିଗତ ପ୍ରଚେଷ୍ଟା ଦ୍ୱାରା ହୁଏତ କିଛି ସଫଳତା ଆସିପାରେ, କିନ୍ତୁ ଏହା ସର୍ବକାଳ ସ୍ଥାୟୀ ହୁଏ ନାହିଁ । ଉତ୍କଳର ମହତାବ ବ୍ୟକ୍ତିଗତ ପ୍ରଚେଷ୍ଟା କରି ନୀରବ ନ ହୋଇ ତାଙ୍କର ଉଦ୍ୟମକୁ ସାଂଗଠନିକ ରୂପ ଦେଲେ । ଫଳରେ ପ୍ରଜାତନ୍ତ୍ର ପ୍ରଚାର ସମିତିର ପୋଷକତା ପାଇ ସାହିତ୍ୟ ଯେ ପ୍ରସାର ଲାଭକଲା ତାହା ନୁହେଁ, ଦେଶର ବିଭିନ୍ନ ସ୍ଥାନରେ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ନୂତନ ଅଭ୍ୟୁଦୟ ଓ ଜାଗରଣ ଦେଖାଗଲା । ଏହା ଫଳରେ ବିଭିନ୍ନ ସାହିତ୍ୟାନୁଷ୍ଠାନ ସୃଷ୍ଟି ହେଲେ, ଜୀବନରେ ସଂସ୍କୃତିକୁ ସଂଚରିତ କରିବା ପାଇଁ ସାଂଗଠନିକ ଉଦ୍ୟମ ହେଲା ।

ଏଯାବତ ଓଡ଼ିଶାରେ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଯେଉଁ ସାଂଗଠନିକ ଉଦ୍ୟମ ହୋଇ ଆସିଛି ତାହା ମହତାବ ବାବୁଙ୍କ ଦ୍ୱାରା ଉଦ୍‌ବୁଦ୍ଧ ଏବଂ ସେ ଏହାର ପୃଷ୍ଠପୋଷକ । ରାଜନୈତିକ ମହତାବଙ୍କର ସ୍ଥାନ ଇତିହାସ ନିର୍ଣ୍ଣୟ କରିବ, କିନ୍ତୁ ସାହିତ୍ୟିକ ମହତାବଙ୍କ ସ୍ଥାନ ନିର୍ଣ୍ଣିତ ହୋଇ ସାରିଛି ।

ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶା ଏବଂ ଓଡ଼ିଶା ବାହାରେ ଓଡ଼ିଆ ଭାଷା କହୁଥିବା ଏବଂ ଓଡ଼ିଆ ସଂସ୍କୃତିକୁ ଜୀବନର ମୂଳାଧାର ରୂପେ ଗ୍ରହଣ କରିଥିବା ଅସଂଖ୍ୟ ଜନତା ଯଦି ସଂଗଠନ ମାଧ୍ୟମରେ ସମବେତ ପ୍ରୟାସ ଓ ପ୍ରଚେଷ୍ଟା, ସମ୍ବଳ ଓ ତ୍ୟାଗ ଏ ଦିଗରେ ବିନିଯୋଗ କରନ୍ତି, ତାହା ହେଲେ ମହତାବ ବାବୁଙ୍କ ଉଜ୍ଜ୍ୱଳ ସଫଳତାର ଅଧିକାରୀ ହୋଇ ପାରିବ । ତେଣୁ ସେ ଏକ ବ୍ୟକ୍ତି ନୁହଁନ୍ତି, ଏକ ଅନୁଷ୍ଠାନରେ ପରିଣତ ହୋଇଛନ୍ତି ।

* ଆର୍-୭, ଫରେଷ୍ଟ ପାର୍କ
ଭୁବନେଶ୍ୱର



# ମହତାବ ଅଛନ୍ତି ।
# ମହତାବ ଅଛନ୍ତି ॥

**ମହାପାତ୍ର ନୀଳମଣି ସାହୁ**

ଜଣେ ବାଲ୍ମୀକି ଜଣେ ରାମଚନ୍ଦ୍ରଙ୍କୁ ଖୋଜିଲା ପରି, ଜଣେ ବ୍ୟାସ ଜଣେ ଯୁଧିଷ୍ଠିରଙ୍କୁ ଖୋଜିଲା ପରି, ଜଣେ ଗର୍କୀ ଜଣେ ଲେନିନଙ୍କୁ ଖୋଜିଲା ପରି ଏବଂ ଜଣେ ରବୀନ୍ଦ୍ରନାଥ ଜଣେ ଗାନ୍ଧୀ ବା ଜଣେ ଜବାହାର-ଲାଲଙ୍କୁ ଖୋଜିଲା ପରି, ମୋ ଭଳି ସାନ କବିଟିଏ ମଧ୍ୟ ଖୋଜି ବୁଲୁଥିଲା ଏମିତି ମଣିଷଟିଏ, ସେମିତି ରାଜାଟିଏ, ବା ମନ୍ତ୍ରୀଟିଏ ବା ନେତାଟିଏ, ଯେ କି ସବୁଦିଗରୁ ପଛରେ ପଡ଼ିଥିବା ଏଇ ମୋର ପ୍ରିୟ ଜନ୍ମଭୂମି ଓଡ଼ିଶାର ଦାୟିତ୍ୱ ନେଇ, ଏହାର ସର୍ବାଙ୍ଗୀନ ଉନ୍ନତି ବିଧାନରେ ଆନ୍ତରିକ ଭାବେ ଉଦ୍ୟମଶୀଳ ହେବ ଏବଂ ବହୁ ଅଂଶରେ ମଧ୍ୟ ସମର୍ଥ ହେବ । ଓଡ଼ିଆ ଜାତିର ଉପସ୍ଥିତ ଶୋଚନୀୟ ଦାରିଦ୍ର୍ୟ ଓ ଅଜ୍ଞାନ ମୋର ଅନ୍ତରକୁ ହାଇ ସ୍କୁଲରେ ପଢ଼ିଲା ଦିନୁ ଆଲୋଡ଼ିତ କରି ଆସିଛି ଏବଂ ସେହି ବୟସରୁ ମୁଁ ବରାବର ଚିନ୍ତାକରୁଥିଲି, ମଧୁସୂଦନ ଗୋପବନ୍ଧୁଙ୍କ ପରେ ଏ ରାଜ୍ୟରେ ଏତେବଡ଼ ଶକ୍ତିଶାଳୀ ଆଉ ପ୍ରଭାବଶାଳୀ ନେତା ଆଉ ଏମିତି କିଏ ଅଛନ୍ତି, ଯେ କି ଏ ରାଜ୍ୟର ଶତାବ୍ଦୀ ଶତାବ୍ଦୀ ଧରି ପୁଞ୍ଜିଭୂତ ଅଜ୍ଞାନ ଓ ଦାରିଦ୍ର୍ୟ ସଙ୍ଗେ ଅବିରତ ସଂଗ୍ରାମ କରି ଜାତିର ନିର୍ଜୀବ ନିସ୍ତେଜ ଧମନୀରେ ନବୀନ ପ୍ରାଣ ଓ ଉତ୍ସାହ ସୃଷ୍ଟି କରି ପାରିବ ? ଜାତିକୁ ସବୁ-ଦିଗରେ ଉପଯୁକ୍ତ ନିର୍ଦ୍ଦେଶ ଦେଇପାରିବ ? ସେତେବେଳ ପର୍ଯ୍ୟନ୍ତ ଓଡ଼ିଶାର ସର୍ବମାନ୍ୟ ନେତା ରୂପେ ୰ ଗୋଦାବରୀଶ ମିଶ୍ର, ୰ ଆଚାର୍ଯ୍ୟ ହରିହର ଏବଂ ସ୍ୱର୍ଗତଃ ଗୋପବନ୍ଧୁ ଚୌଧୁରୀଙ୍କ ପ୍ରତିଷ୍ଠା ଥିଲା । ମାତ୍ର ୧୯୪୬ ମସିହା ବେଳକୁ ସେମାନଙ୍କର ମହିମା ସୂର୍ଯ୍ୟ ଅସ୍ତାଚଳଚୂଡ଼ାବଲମ୍ବନ କରି

ଆସୁଥିଲ । ତା’ ଛଡ଼ା, ଭାରତର ସ୍ୱାଧୀନତା ପ୍ରାପ୍ତିର ପୂର୍ବଯୁଗର ନେତା ଥିଲେ ସେମାନେ ।

୧୯୪୭-୪୮ ବେଳକୁ ଉତ୍କଳର ସେହି ବରପୁତ୍ରମାନଙ୍କର କାର୍ଯ୍ୟ ଶେଷ ହୋଇ ଆସିଥିଲା । ସ୍ୱାଧୀନ ଭାରତ ଏବଂ ସ୍ୱାଧୀନ ଉତ୍କଳର ସମସ୍ୟା ଥିଲା ସଂପୂର୍ଣ୍ଣ ଅଲଗା । ଭାରତର ସ୍ୱାଧୀନତା ସଂଗ୍ରାମ ଏବଂ ସ୍ୱତନ୍ତ୍ର ଓଡ଼ିଶା ଗଠନ ଲାଗି ସଂଗ୍ରାମ କରି ବିଜୟ ଲାଭ କରିଥିବା ରଥୀ ମହାରଥୀମାନଙ୍କର ଆଉ କିଛି କର୍ତ୍ତବ୍ୟ ନଥିଲା—ନଥିଲା ମଧ୍ୟ ଆଉ କିଛି ଅଭିପ୍ସା ବା ଉଦ୍ୟମ ଲାଗି ସ୍ୱପ୍ନ । ସ୍ୱାଧୀନ ଭାରତ ଓ ସ୍ୱତନ୍ତ୍ର ଉତ୍କଳର ସାମୂହିକ ବିକାଶ ଲାଗି, ଅର୍ଥାତ୍ ରାଜ୍ୟର ଅର୍ଥନୀତି, ରାଜନୀତି, ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ, ସାହିତ୍ୟ, ସଂସ୍କୃତିର ନୂତନ ଅଭ୍ୟୁଦୟ ଓ ପ୍ରତିଷ୍ଠା ଲାଗି, ଯେଉଁ ନିର୍ମାଣ ଯୁଗର, ଯୋଜନା ଯୁଗର ଆହ୍ୱାନ ଆସିଲା, ସେଥିରେ ସର୍ବୋତ୍ତମ ନେତୃତ୍ୱ ନେବା ଲାଗି ମହତାବଙ୍କଠାରୁ ଆଉ କେହି ଅଧିକ ପ୍ରତିଭାବାନ ନେତା ସେତେବେଳେ ନଥିଲେ । କଥିତ ଅଛି ଯେ ଉତ୍କଳମଣି ଗୋପବନ୍ଧୁ କୁଆଡେ ଯୁବଗୋଷ୍ଠୀର ନେତା ହରେକୃଷ୍ଣ ମହତାବଙ୍କ ପ୍ରତିଭାର ପରିଚୟ ପାଇ କହିଥିଲେ ‘ଏ ଗୋଟାଏ ଘୋଡ଼ା । ଏ ଘୋଡ଼ା ସମସ୍ତଙ୍କୁ ଟପିଯିବ ।’ ସତକୁ ସତ ମହତାବ ତାଙ୍କ ବୟସର ଓ ସମୟର ସମସ୍ତ ନେତାଙ୍କୁ ଟପିଗଲେ ଅଳ୍ପ କେତୋଟି ବର୍ଷ ଭିତରେ । ଆମେ କଲେଜରେ ପଢିଲା ବେଳକୁ ଆମ ଆଗରେ ତାଙ୍କର ମୂର୍ତ୍ତି ଓ ଭାବମୂର୍ତ୍ତି ଉଜ୍ଜ୍ୱଳତମ ବିଭାରେ ପ୍ରତିଭାତ ହୋଇଥିଲା । ଅନ୍ୟମାନେ ତାଙ୍କ ପାଖରେ ଆମ ଆଖିକୁ ଖୁବ୍ ନିଷ୍ପ୍ରଭ ଦେଖା ଯାଉଥିଲେ ।

୧୯୪୮ କି ୪୯ ମସିହାରେ ଆମ ଗାଁର ନବପ୍ରସ୍ତାବିତ ହାଇ ସ୍କୁଲର ଭିତ୍ତିପ୍ରସ୍ତର ସ୍ଥାପନ ପାଇଁ ସେ ଯାଇଥିଲେ । ଖୁବ୍ ଗୋଟାଏ ବଡ଼ ସଭାର ଆୟୋଜନ ଆମେ କରିଥାଉଁ । ହାଇସ୍କୁଲର ଉଦ୍ୟୋକ୍ତାମାନଙ୍କ ଭିତରେ ମୁଁ ଥିଲି ଆମ ଗାଁର ଜଣେ ବିଶିଷ୍ଟ ଉଚ୍ଚଶିକ୍ଷିତ ଉତ୍ସାହୀ ଯୁବକ । ମହତାବ ବାବୁଙ୍କ ସଙ୍ଗେ ପ୍ରତ୍ୟକ୍ଷ ପରିଚୟ ସେଇଠି ହେଲା । ମାତ୍ର ତା’ ପୂର୍ବରୁ ମୁଁ ତାଙ୍କ ଗୁଣର ପୂଜାରୀ ହୋଇ ସାରିଥିଲି । ଯୁବକ ଓ ଛାତ୍ର ମହଲରେ ସେ

ତାଙ୍କ ନେତୃତ୍ୱର ପ୍ରଭାବ ପକାଇ ପାରଥିଲେ ଓ ନୂତନ ଆଶା ଏବଂ ଉଦ୍ଦୀପନା ସଞ୍ଚାର କରି ପାରଥିଲେ । ତେଣୁ ସେଦିନ ଆମ ଗାଁର ସେହି ବରିଷ୍ଠ ସଭାରେ ତାଙ୍କୁ ସ୍ୱାଗତ ଜଣାଇବା ଲାଗି ଦେଶରେ ଶିକ୍ଷା ପ୍ରସାର ଦିଗରେ ମହତାବଙ୍କଙ୍କ ଭୂମିକାକୁ ନେଇ ଗୋଟିଏ ସଙ୍ଗୀତ ପ୍ରାଚୀନ ଚଉପଦୀ ଶୈଳୀରେ ଲେଖି ଆମ ଗ୍ରାମର ଜଣେ ସୁକଣ୍ଠ ଗାୟକଙ୍କ ଦ୍ୱାରା ବୋଲାଇ ଥିଲି । ତାର ପ୍ରଥମ ଧାଡ଼ିଟି ମୋର ମନେ ଅଛି—

"ଅଜ୍ଞାନ ଅନ୍ଧକାର ଛୁଟିଲାରେ
ଜ୍ଞାନ କମଳ ଦେଖ ଫୁଟିଲାରେ" (ଘୋଷା)

ଏହାର ପରେ ପଦଗୁଡ଼ିକର ମର୍ମ ହେଉଛି—ମହତାବ ରୂପକ ନବୀନ ସୂର୍ଯ୍ୟ ଓଡ଼ିଶା ଆକାଶରେ ଉଦିତ ହେଲେଣି । ତାଙ୍କର ଦୀପ୍ତ କିରଣ ଦ୍ୱାରା ଓଡ଼ିଶାର ଅଜ୍ଞାନ ଓ ଦାରିଦ୍ର୍ୟ ପ୍ରଭୃତି ଦୁର୍ଭାଗ୍ୟର ଅନ୍ଧକାର ଅବସାନ ହେଲାଣି । ଏଣିକି ଗ୍ରାମେ ଗ୍ରାମେ ଶିକ୍ଷା, ଶିଳ୍ପ, ସ୍ୱାସ୍ଥ୍ୟ ଓ ସଂସ୍କୃତିର ବିକାଶ ଅବଶ୍ୟମ୍ଭାବୀ । ଏହି ଗୀତଟି ଗାନ ହେବା-ପରେ ମୁଁ ତାଙ୍କୁ ସ୍ୱାଗତ ଜଣାଇ ଗ୍ରାମବାସୀଙ୍କ ତରଫରୁ ଚମତ୍କାର ଅଭି-ନନ୍ଦନ ପତ୍ରଟିଏ ଲେଖି ପଢ଼ିଥିଲି । ସଭା ଶେଷରେ ସେ ମୋତେ ଡାକି ମୋ ସଙ୍ଗେ ପରିଚିତ ହେଲେ ଏବଂ ମୋ ଭିତରର ପ୍ରତିଭା ଓ ସମ୍ଭାବନାକୁ ସମର୍ଥନ ଜଣାଇ କହିଲେ, ତୁମେ ଏଣିକି ପ୍ରଜାତନ୍ତ୍ର ଆଡ଼େ ଆସିବ ଓ ସେ କାଗଜରେ ନିୟମିତ ଲେଖିବ, ସେ ଅନୁଷ୍ଠାନ ସଙ୍ଗେ ମଧ୍ୟ ସମ୍ପୃକ୍ତ ହେବ । ମୁଁ ଖୁବ୍ ଉତ୍ସାହରେ ସମ୍ମତି ଜଣାଇଥିଲି । ସେତିକି ବେଳେ ମୁଁ ତାଙ୍କୁ ଦେଖି ଭାରି ଚମତ୍କୃତ ହୋଇଥିଲି । ତାଙ୍କର ନରପତିସୁଲଭ ଚେହେରା, ସମ୍ରାଟୋପମ ଗମ୍ଭୀର ଓ ଐଶ୍ୱର୍ଯ୍ୟବନ୍ତ ବ୍ୟକ୍ତିତ୍ୱ, ତାଙ୍କର ବୁଦ୍ଧିଦୀପ୍ତ ଦୃଷ୍ଟି, ତାଙ୍କର ଯୁକ୍ତିଯୁକ୍ତ ବିଚାର, ତାଙ୍କର ଯୋଦ୍ଧୃସୁଲଭ ସାହସ, ଧୈର୍ଯ୍ୟ ଏବଂ ଅଭିଜାତ ଔଦାର୍ଯ୍ୟ ସାଙ୍ଗକୁ ଋଷିତ୍ୱ ଓ ବଶୀତ୍ୱ— ମତେ ତାଙ୍କ ଆଡ଼କୁ ଖୁବ୍ ଆକୃଷ୍ଟ କରିଥିଲା । ମୋର ତାଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ଅତୁଟ ହୋଇଯାଇଥିଲା ଯେ ଏହି ବ୍ୟକ୍ତିହିଁ ମଧୁସୂଦନ ଓ ଗୋପବନ୍ଧୁଙ୍କ ଓଡ଼ିଶାକୁ ରକ୍ଷା କରିବେ ଏବଂ ଯାଙ୍କର ହାତରେ ଓଡ଼ିଶାର ଭବିଷ୍ୟତ ନିର୍ମାଣ ହୋଇ ସମୁଜ୍ଜ୍ୱଳ ପଥରେ ଆଗେଇ ଚାଲିବ । କ୍ରମଶଃ ମୁଁ

ତାଙ୍କ ସମ୍ପର୍ଶରେ ଅଧିକ ଆସିଲି ଓ ତାଙ୍କ ପ୍ରକାଣ୍ଡ ବ୍ୟକ୍ତିତ୍ୱର ବହୁଧା ଓ ବିଶେଷ ସ୍ଫୁରଣମାନ ଦେଖି ମୁଁ ତାଙ୍କର ଜଣେ ଅନୁଗତ ଭକ୍ତ ପାଲଟିଗଲି । ତାଙ୍କୁ ଦେଖିଲାମାତ୍ରେ ମନ ଉତ୍ସାହିତ ଅନୁଭବ କରୁଥିଲି । ତାଙ୍କ ସାଙ୍ଗେ କଥାବାର୍ତ୍ତା ହେବା ମାତ୍ରେ ଅନ୍ତର ଭିତରେ ନାନାଦି ଆଶା ଓ ଉଦ୍ଦୀପନା ସୃଷ୍ଟି ହେଉଥିଲି । କେବଳ ରାଜନୀତି ନୁହେଁ—ସାହିତ୍ୟ, ସଙ୍ଗୀତ, ଦର୍ଶନ, ଇତିହାସ, ବିଜ୍ଞାନ, ଅଭିନୟ କ୍ରୀଡ଼ା, ଧର୍ମ ବା ଆଧ୍ୟାତ୍ମିକତା ଠାରୁ ଆରମ୍ଭ କରି କୃଷି ଓ ଏହିପରି ବହୁବହୁ ବିଷୟ ପ୍ରତି ତାଙ୍କର ଥିଲା ପ୍ରଗାଢ଼ ଆଗ୍ରହ ଏବଂ ସେ ସବୁଥିରେ ବ୍ୟାପକ ଅନୁପ୍ରବେଶ । ସେ ନିଜେ ଯେପରି ସର୍ବଗୁଣରେ ପରିପୂର୍ଣ୍ଣ—ସେହିପରି ମଧ୍ୟ ବ୍ୟାପକ ଭାବରେ ସର୍ବଗୁଣ-ଗ୍ରାହୀ । ତାଙ୍କ ଭଳି ସୁରୁଚିବନ୍ତ ଓ ସଂସ୍କୃତି ସଚେତନ ବିଦଗ୍ଧ ଅଥଚ ରାଜନୀତିକ ବ୍ୟକ୍ତିତ୍ୱ ଓଡ଼ିଶାରେ କାହିଁକି ଭାରତବର୍ଷରେ ମଧ୍ୟ ଖୁବ୍ ମୁଷ୍ଟିମେୟ । ତା' ଛଡ଼ା, ଜଣେ କବି ଓ କଳାକାରକୁ ସହଜରେ ଆକର୍ଷିତ ଓ ବଶୀଭୂତ କରିବାରେ ସେ ଥିଲେ ଜଣେ ଅଦ୍ଭୁତ ଐନ୍ଦ୍ର-ଜାଲିକ ।

ମହତାବଜୀ ମୋର ସେହି ଛାତ୍ରଜୀବନର କବିହୃଦୟରେ ସବୁଠାରୁ ଉଜ୍ଜ୍ୱଳତମ ନେତା ରୂପେ ପ୍ରତିଷ୍ଠିତ ହୋଇଗଲେ । ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ଆମବେଳର ଛାତ୍ର ନେତା-ମାନଙ୍କ ମଧ୍ୟରେ ଅନ୍ୟତମ । ସେ ଥିଲେ ନୈଷ୍ଠିକ ଗାନ୍ଧିବାଦୀ ଏବଂ ବହୁ ଭାବେ ଜଣେ ମେଧାବୀ, ନୀତିବାନ୍ ଆଦର୍ଶ ଛାତ୍ର । ପ୍ରଥମକରି ସେ ମହତାବଜୀଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କ ସହ ସମ୍ପର୍କିତ ହେଲେ ଏବଂ ମହତାବଜୀ ମଧ୍ୟ ତାଙ୍କର ପ୍ରତିଭା ଦେଖି ତାଙ୍କୁ ତାଙ୍କର ପ୍ରଧାନ ଅନୁରକ୍ତ ଭାବେ ଗ୍ରହଣ କରିନେଲେ । ମୁଁ ସେତେବେଳେ ପ୍ରଜାତନ୍ତ୍ର ସାହିତ୍ୟ ପୃଷ୍ଠାରେ ଲେଖୁଥାଏ ଏବଂ ମୋର କିଛି ସୁନାମ ମଧ୍ୟ ହେଉଥାଏ । ପଶ୍ଚିମ ଛାତ୍ରାବାସରେ ଜାନକୀ ବାବୁଙ୍କ ନେତୃତ୍ୱରେ ପ୍ରତି ଶନିବାର ରାତିରେ ଗୋଟିଏ ପାଠଚକ୍ର ହେଉଥିଲା । ସେଥିରେ ସାହିତ୍ୟ, ସଂସ୍କୃତି, ରାଜନୀତି ସବୁକିଛି ବିଷୟର ସହିତ ଆଲୋଚନା ହେଉଥିଲା ଏବଂ ଆମେ ବିଶେଷଭାବେ

ଗାନ୍ଧିବାଦୀ ବିଚାରଧାରା ଓ ମାର୍କସବାଦୀ ବିଚାରଧାରାର ତୁଳନାତ୍ମକ ଆଲୋଚନା କରୁଥିଲୁ ଏବଂ ସେଥିପାଇଁ ଆମକୁ ବହୁବିଧ ପୁସ୍ତକ ଓ ପତ୍ର-ପତ୍ରିକା ପଢ଼ିବାକୁ ହେଉଥିଲା ।

ପରବର୍ତ୍ତୀ କାଳରେ ଯେତେବେଳେ ଜାନକୀ ବାବୁ ପ୍ରଜାତନ୍ତ୍ରର ସମ୍ପାଦକ ହେଲେ, ସେତେବେଳେ ପ୍ରଜାତନ୍ତ୍ର ପରିସର ଭିତରେ ଝଙ୍କାର ଓ ପ୍ରଜା-ତନ୍ତ୍ରର ପ୍ରତିଷ୍ଠାତା ମହତାବଜୀ ମଧ୍ୟ ଗୋଟିଏ ସାପ୍ତାହିକ ପାଠଚକ୍ର କରୁ-ଥିଲେ । ସେତେବେଳେ ଜାନକୀ ବାବୁ ଏହାର ସଂଯୋଜକ ଥିଲେ । ସେହି ପାଠଚକ୍ରରେ ମହତାବଜୀ ଆମ୍ଭମାନଙ୍କ ସଙ୍ଗେ ସାହିତ୍ୟ, ସଂସ୍କୃତି, ରାଜ-ନୈତିକ ମତାଦର୍ଶ ଓ ବିଭିନ୍ନ ସାମାଜିକ ସମସ୍ୟାଗୁଡ଼ିକୁ ନେଇ ଯୁକ୍ତିତର୍କ ଓ ଆଲୋଚନା କରୁଥିଲେ । ମହତାବଜୀ ନିଜେ ବହୁ ବିଷୟରେ ଜ୍ଞାନବନ୍ତ । ତେଣୁ ତାଙ୍କ ପ୍ରଶ୍ନର ସମୁଚିତ ଉତ୍ତର ଦେଇ ନ ପାରିଲେ, ବା ଆମକୁ କୌଣସି ଗୋଟିଏ ବିଶେଷ ତତ୍ତ୍ୱ ବା ତଥ୍ୟ ସମ୍ବନ୍ଧେ ଅଜ୍ଞାନ ବା ଅଳ୍ପଜ୍ଞାନୀ ବା ପକ୍ଷପାତୀ ଥିବାର ଦେଖିଲେ ସେ ଖୁବ୍ ରାଗି ଯାଉଥିଲେ ଓ ବିରକ୍ତ ହୋଇ ଉଠୁଥିଲେ । ତାଙ୍କର ଆମଭଳି ନବୀନ ଲେଖକମାନଙ୍କ ପ୍ରତି ସର୍ବଦା ଉପଦେଶ ଥିଲା ଜୀବନ ଓ ସମାଜ ସମ୍ପର୍କୀୟ ବିଭିନ୍ନ ବହି ପଢ଼ । ତତ୍ତ୍ୱ ବୁଝ, ତଥ୍ୟ ଜାଣ । ଏବଂ ତା ସଙ୍ଗେ ସଙ୍ଗେ ସମାଜ ସଙ୍ଗେ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ସମାଜର ସମସ୍ୟା ଗୁଡ଼ିକୁ ବୁଝ । ତା' ହେଲେ ଯାଇଁ ତୁମେମାନେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରି ପାରିବ । କହିବାରେ ଦ୍ୱିଧା ନାହିଁ ଯେ, ସେତେବେଳେ ମହତାବଜୀଙ୍କ ଉପଦେଶରେ ମୁଁ ଇତିହାସ, ଦର୍ଶନ, ମନସ୍ତତ୍ତ୍ୱ ଓ ରାଜନୀତି ସମ୍ପର୍କରେ ବିଭିନ୍ନ ବହି ପଢ଼ିବାକୁ ବାଧ୍ୟ ହେଉଥିଲି । ମୁଁ ଅକପଟ ଚିତ୍ତରେ ଘୋଷଣା କରୁଛି ଯେ, ମୋର ସାହିତ୍ୟିକ ଜୀବନ ଓ ସାଧନା ପଥରେ ମହତାବଜୀଙ୍କର ପ୍ରେରଣା, ନିର୍ଦ୍ଦେଶ ଓ ପୃଷ୍ଠପୋଷକତା ପ୍ରଥମ ଓ ପ୍ରଧାନ ଅବଲମ୍ବନ ହୋଇ ରହି ଆସିଛି । ମୁଁ ସେ ଲାଗି ତାଙ୍କ ପାଖରେ ଚିରକୃତଜ୍ଞତା ପାଶରେ ଆବଦ୍ଧ । ଆମେ ପ୍ରଜାତନ୍ତ୍ର ଓ ଝଙ୍କାରକୁ ଗଢ଼ିଥିଲୁ ଏବଂ ପ୍ରଜାତନ୍ତ୍ର ଓ ଝଙ୍କାର ମଧ୍ୟ ଆମକୁ ସାହିତ୍ୟିକ କରି ଗଢ଼ିଥିଲା । କିନ୍ତୁ କେବଳ ସାହିତ୍ୟ ସମ୍ପର୍କୀୟ ନୁହେଁ-ସମାଜ ଓ ଜୀବନ ସମ୍ପର୍କୀୟ ମୋର ବିଚାର ଓ ବୁଝାମଣା ପାଇଁ ମୋର

ଯୁବକ ଜୀବନରେ ମୁଁ ମହତାବଜୀଙ୍କ ପାଖରେ ଋଣୀ । ଏକ ସମୟରେ ମୁଁ ତାଙ୍କୁ "ଗୁରୁଦେବ" ବୋଲି ଚିଠିପତ୍ରରେ ସମ୍ବୋଧନ କରୁଥିଲି । ସେ ବମ୍ବେରେ ରାଜ୍ୟପାଳ ଥିଲାବେଳେ ମୁଁ ବହୁ ବିଷୟରେ ତାଙ୍କ ପାଖକୁ ଲମ୍ବାଲମ୍ବା ଚିଠି ଲେଖୁଥିଲି ଏବଂ ସେ ମଧ୍ୟ ମୋର ସବୁ ଚିଠିର, ସବୁ ଜିଜ୍ଞାସାର ସମୁଚିତ ଉତ୍ତର ନିୟମିତ ଦେଉଥିଲେ । ମୁଁ ସେତେବେଳେ ଭଦ୍ରକ କଲେଜର ଅଧ୍ୟାପକ ଥାଏ । ଥରେ "ଝଙ୍କାର"ରେ ପ୍ରକାଶିତ "ବର୍ଣ୍ଣାଶ୍ରମ" ଶୀର୍ଷକ ତାଙ୍କର ଗୋଟିଏ ପ୍ରସିଦ୍ଧ ଚିନ୍ତାମୂଳକ ଲେଖାର ବିଷୟ ବସ୍ତୁ ଓ ତାର ସମାଧାନକୁ ନେଇ ତାଙ୍କ ମୋ ଭିତରେ ଚିଠିପତ୍ର ମାଧ୍ୟମରେ ବହୁଦିନ ଧରି ବାଦାନୁବାଦ ଚାଲିଥିଲା । ସେହି ବିଷୟଟି ଉପରେ ଆମେ କେହି କାହାକୁ ସଠିକ ଭାବେ ବୁଝାଇ ପାରିନଥିଲୁ । ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ଭାରି ଭଲଲାଗେ । ସେ ମନପ୍ରାଣ ଦେଇ କଥାବାର୍ତ୍ତା କରନ୍ତି । ସ୍ପଷ୍ଟ ଓ ଯୁକ୍ତିଯୁକ୍ତ ଭାବେ ବିଚାର ବିମର୍ଶ କରନ୍ତି ଏବଂ ତାଙ୍କର ନିଜ ମତକୁ ପ୍ରତିଷ୍ଠା ଦେବାଲାଗି ଖୁବ୍ ଶକ୍ତି ବ୍ୟୟ କରନ୍ତି । ସେ ନିଜେବି ଖୁବ୍ ଅଧ୍ୟୟନ କରନ୍ତି । ତା'ଛଡ଼ା, ପଣ୍ଡିତ ଓ ବିଜ୍ଞ ବ୍ୟକ୍ତିମାନଙ୍କ ସଙ୍ଗେ, ଏପରିକି ମାଛଧରା କେଉଟ ସଙ୍ଗେ ଅଥବା କ୍ଷୌରକାର୍ଯ୍ୟ କରୁଥିବା ବାରିକଟି ସଙ୍ଗେ ଏବଂ ନାନାବିଷୟରେ ନାନା ଲୋକଙ୍କ ସଙ୍ଗେ ଖୋଲ୍-ଖୋଲି ଆଗ୍ରହ ସହକାରେ କଥାବାର୍ତ୍ତା କରି ସେ ବହୁ ତଥ୍ୟ ସଂଗ୍ରହ କରିଥାନ୍ତି । ମୋ ଜାଣିବାରେ, ତାଙ୍କୁ ଯେତେକଥା ଜଣା, ଓଡ଼ିଶାର କୌଣସି ରାଜନୀତିକ ନେତା ସେ ଦୃଷ୍ଟିରୁ ତାଙ୍କ ପାଖରେ ପଡ଼ିବେ ନାହିଁ । ଏବଂ ସବୁଠାରୁ ବଡ଼କଥା ହେଲା ଜ୍ଞାନ ସହିତ ତାଙ୍କର କାଣ୍ଡଜ୍ଞାନ ମଧ୍ୟ ଖୁବ୍ ବେଶୀ । ଏବଂ ଆମ ସମାଜର ବହୁ ବିଶିଷ୍ଟ ଗୁଣୀବ୍ୟକ୍ତିଙ୍କର ସବୁଠାରୁ ଅଭାବ ବିଷୟଟି ହେଲା ଏହି କାଣ୍ଡଜ୍ଞାନ । ଔଚିତ୍ୟବୋଧ, ମାତ୍ରାଜ୍ଞାନ, ସଙ୍ଗତିବୋଧ ଓ ଆଶୁମୀମାଂସାରେ ଉପନୀତ ହେବାରେ ମହତାବଜୀ ଅତୁଳନୀୟ । ଆଉ ଗୋଟିଏ କଥା ହେଲା-ତାଙ୍କର ମାର୍ଜିତ ଓ ଶାଳୀନ ରୁଚି-ବିଦଗ୍ଧ ବାକ୍‌ଭଙ୍ଗୀ—ସେନ୍‌ସ ଅଫ୍ ହ୍ୟୁମର ବା ପ୍ରାଣବନ୍ତ ରସବୋଧ । ତାଙ୍କ ସଙ୍ଗେ ଦୁଇପଦ କଥା କହି ଫେରିଲାବେଳେ ମନ ପୂରିଯାଏ—କୃତାର୍ଥ ଲାଗେ—ଚିତ୍ତ ସଂଶୟମୁକ୍ତ ହେଲାଭଳି ବୋଧହୁଏ ଏବଂ ବହୁ ବିଷୟରେ

ନୂତନ ଆଲୋକ ପାଇଲା ଭଳି ମନେହୁଏ ଏବଂ ଜୀବନ ପ୍ରତି ଆଶା, ବିଶ୍ୱାସ ଓ ଉତ୍ସାହ ବଢ଼ିଯାଏ । କିନ୍ତୁ ଏହା ମଧ୍ୟ ବହୁବେଳେ ଦେଖା ଯାଇଛି ଯେ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟକୁ ସେ ଏତେ ସହଜ ଏବଂ ସାଧାରଣ କରି (Over Simplification) ପ୍ରକାଶ କରି ବସନ୍ତି ଯେ ତାଙ୍କ ବୋଧଶକ୍ତିର ଗଭୀରତା ଉପରେ ସନ୍ଦେହ ହୁଏ । ସଭା ସମିତିରେ ଅନେକ ବେଳେ ଦେଖାଯାଏ-ସେ ଶ୍ରୀ ଅରବିନ୍ଦଙ୍କ ଅତିମାନସ ତତ୍ତ୍ୱ ଉପରେ ଯେଉଁ ଟୋନ୍ (tone), ଭଙ୍ଗୀ ଓ ମାନସିକତା ଦେଇ ଭାଷଣ ଦେଉଛନ୍ତି—ଠିକ୍ ସେହି ଟୋନ୍, ଭଙ୍ଗୀ ଓ ମାନସିକତାରେ ସେ ଅମୁକ ଦିନ ଧୀବର ମହାସଂଘର ଏକ ବିଶେଷ ଅଧିବେଶନରେ ଓଡ଼ିଶାର ମତ୍ସ୍ୟଧରା ସମସ୍ୟା ଉପରେ ଭାଷଣ ଦେଇଥିଲେ । ଏସବୁକଥାରୁ ବହୁ ବିଜ୍ଞଲୋକ ସନ୍ଦେହ କରନ୍ତି ଯେ ମହତାବଙ୍କ ଖୁବ୍ ବୁଦ୍ଧିମାନ । କିନ୍ତୁ ଜ୍ଞାତବ୍ୟ ବିଷୟଗୁଡ଼ିକୁ ସେ କେବଳ ନିଜର ବୁଦ୍ଧିଜାଲରେ ଧରିପକାନ୍ତି । କିମ୍ବା ସେ ସବୁ ଧରଣର ଗୁରୁଲଘୁ ବିଷୟକୁ ଆପଣାର ବୁଦ୍ଧିର ଆଧାର ମାପରେ ପ୍ରସ୍ତୁତ କରି ନିଜେ ବୁଝି ଯାନ୍ତି ଓ ଅନ୍ୟକୁ ବୁଝାଇ ବସନ୍ତି । କିମ୍ବା ଅତିମାନସ ତତ୍ତ୍ୱ, ସତ୍ୟାଗ୍ରହତତ୍ତ୍ୱ ବା ଅହିଂସା କି ଉପନିଷଦୀୟ ତତ୍ତ୍ୱଗୁଡ଼ିକୁ ସେ ମତ୍ସ୍ୟଧରାତତ୍ତ୍ୱ ସଙ୍ଗେ ସମାନ ସହଜ ମନେ କରନ୍ତି । ଅଥବା, ଏହା ମଧ୍ୟ ହୋଇ ପାରେ ଯେ, ସେ ଏ ପୃଥିବୀ ଓ ତା' ଊର୍ଦ୍ଧ୍ୱର ସବୁ ତତ୍ତ୍ୱ ବା ତଥ୍ୟକୁ ତାର ଅନନ୍ତ ରହସ୍ୟମୟ ଆଧାରଟି ଭିତରୁ ନିଜର ବୁଦ୍ଧି ଜୋରରେ ଝିଙ୍କି ଓଟାରି ଆଣି—କେବଳ ତାର ଦୃଶ୍ୟମାନ ଓ ସୁବୋଧ ବାସ୍ତବ ଅଂଶଟିକୁ ନିଜେ ନିର୍ବିଘ୍ନରେ ଗ୍ରହଣ କରନ୍ତି ଓ ଅନ୍ୟଆଗରେ ମଧ୍ୟ ତଦ୍ରୂପ ପରିବେଷଣ କରି ଏତେବଡ଼ ଗୁରୁତ୍ୱପୂର୍ଣ୍ଣ ରହସ୍ୟମୟ ଦୁର୍ବୋଧ ବିଷୟଟି ଏତେ ସହଜ ଓ ପ୍ରତ୍ୟକ୍ଷ କରିଦେଲି ବୋଲି ଖୁବ୍ ଆତ୍ମପ୍ରସାଦ ଅନୁଭବ କରନ୍ତି । ଏବଂ ଏହା ତାଙ୍କର ଅଭ୍ୟାସ ହୋଇଗଲାଣି । ଏବଂ ଏହାଦ୍ୱାରା ସେ ତାତ୍ତ୍ୱିକ ଜଞ୍ଜାଳଗୁଡ଼ିକ ଭିତରୁ ଖୁବ୍ ସହଜରେ ମୁକ୍ତ ହୋଇଗଲେ ବୋଲି ଶାନ୍ତିରେ ନିଃଶ୍ୱାସ ମାରନ୍ତି । ଉଦାହରଣ ସ୍ୱରୂପ, ଜଗନ୍ନାଥଙ୍କ ତ୍ରିମୂର୍ତ୍ତିକୁ ବୌଦ୍ଧକଳ୍ପନାର ବୁଦ୍ଧ, ସଂଘ ଓ ଧର୍ମର ପ୍ରତୀକ ବୋଲି ବୁଝି ଓ ବୁଝାଇ ଦେଇ ସେ ନିଶ୍ଚିନ୍ତ । କିନ୍ତୁ ବୌଦ୍ଧଚିହ୍ନଟିର ନାମ ସୁଦର୍ଶନ କାହିଁକି ହେଲା,

ବା ବଳଭଦ୍ର ଓ ସୁଭଦ୍ରାଙ୍କ ନାମ ସହିତ ବୌଦ୍ଧ ଦର୍ଶନର କି ସମ୍ପର୍କ ରହିଛି—ତାକୁ ସେ ଏଡ଼ାଇଁ ଯାନ୍ତି । ଜଗନ୍ନାଥଙ୍କ ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତିର ମୂଳରେ ଶବରମାନଙ୍କ ଦାରୁ ବା ବୃକ୍ଷପୂଜାର ରେଖାଚିତ୍ର ଅଙ୍କିଦେଇ ସେ ନିଶ୍ଚିନ୍ତ—ମାତ୍ର ଜଗନ୍ନାଥ ଶ୍ରୀ ଚୈତନ୍ୟଙ୍କ ଆଖିରୁ" କଦାଚିତ୍ କାଳିନ୍ଦୀ ତଟ ବିପିନ ସଙ୍ଗୀତ କରବୋ–ମୁଦାଭୀରୀ ନାରୀ ବଦନ କମଳାସ୍ୱାଦ ମଧୁପ" ରୂପେ କାହିଁକି ଓ କପରି ଦିଶିଲେ, ସେ ସମ୍ବନ୍ଧେ ସେ ଅଧିକ ଗଭୀରକୁ ଅଗ୍ରସର ହେବାକୁ ନାରାଜ । ସେ ଶ୍ରୀକୃଷ୍ଣ ଓ ଶ୍ରୀରାମଚନ୍ଦ୍ରଙ୍କୁ ଐତିହାସିକ ବ୍ୟକ୍ତି ବୋଲି ଭାବନ୍ତି । ଏବଂ ତାଙ୍କ ସମ୍ବନ୍ଧେ ଯେତେ ଯାହା ସବୁ ଲେଖା ଯାଇଛି ସେ ସବୁ ସେମାନଙ୍କର ସାଇକୋଫାଣ୍ଟମାନଙ୍କ ଦ୍ୱାରା ଅଦ୍ଭୁତ ଆବେଗ ଉଦ୍‌ଗୀରଣଜନିତ ବାକ୍‌ବିଳାସ ବୋଲି ମନେକରନ୍ତି । ମହତାବଙ୍କ ରହସ୍ୟବାଦର ସୀମା ମାଡ଼ି ପାରନ୍ତି ନାହିଁ । ତାଙ୍କର ବୋଧେ ଧାରଣା ଯେ ରାମ ଓ କୃଷ୍ଣ ପ୍ରଭୃତି ଅସାଧାରଣ ବ୍ୟକ୍ତିମାନେ ସେ ଓ ତାଙ୍କର ସାଙ୍ଗୋପାଙ୍ଗ ସର୍ଦ୍ଦାର ପଟେଲ, ରାଜେନ୍ଦ୍ରପ୍ରସାଦ, ଜବାହାର ଲାଲ ଏବଂ ବିଧାନ ରାୟ ଇତ୍ୟାଦିଙ୍କଠାରୁ କେବଳ ପରିମାଣରେ କିଛି କିଛି ଅଧିକ । ପ୍ରକୃତିତଃ ସମାନ । ଏହିପରି କେବଳ ଭାବିଥିବାରୁ ତାଙ୍କର ରାମାୟଣ, ମହାଭାରତ ଓ ଭାଗବତ ପ୍ରଭୃତି ଗ୍ରନ୍ଥମାନଙ୍କରୁ କେତେକ ବିଷୟ ଉପରେ ମତାମତ ପଢ଼ିଲି ବେଳେ ମୋତେ ଭାରି ବିରକ୍ତି ଲାଗେ । ସେ ରାମଚନ୍ଦ୍ରଙ୍କର ଶମ୍ବୁକ ବଧ ପ୍ରସଙ୍ଗ ଓ ଏକଲବ୍ୟଙ୍କର ଗୁରୁ ଦକ୍ଷିଣା ବିଷୟଟିକୁ ଯେପରି ଅର୍ଥ କରନ୍ତି—ତଦ୍ୱାରା ତାଙ୍କର ବିଚକ୍ଷଣ ଭେଦାତ୍ମକ ରାଜନୈତିକ ବୁଦ୍ଧିମତାର ପରିଚୟ ଦିଏ । ତାଙ୍କର ଆଧ୍ୟାତ୍ମବୁଦ୍ଧି ବା ବୋଧିର ସାମାନ୍ୟତମ ସୂଚନା ବି ଦିଏ ନାହିଁ । ଏ କାରଣରୁ, ଏ ସବୁ ବିଷୟରେ ମହତାବଙ୍କର କୌଣସି ଭାଷଣ ବା ଲେଖା ଉପରେ ମୁଁ ଗୁରୁତ୍ୱ ଦିଏ ନାହିଁ । କିନ୍ତୁ ମୋର ଏ ମନ୍ତବ୍ୟରୁ କେହି ଯେପରି ନବୁଝନ୍ତି ଯେ ମହତାବଙ୍କର ପାରମାର୍ଥିକ ବା ଆଧ୍ୟାତ୍ମିକ ଚେତନା ସମୃଦ୍ଧ ନୁହେଁ । ବରଂ ତାଙ୍କର ସାମାଜିକ ଓ ରାଜନୈତିକ ବୁଦ୍ଧିର ଅନ୍ତରାଳରେ ରହିଛି ଗଭୀର ଅଧ୍ୟାତ୍ମ ଜିଜ୍ଞାସା ଓ ଅନୁଭୂତିମାନ । କେତେକ ଦୃଷ୍ଟିରୁ ତାଙ୍କର ମଧ୍ୟ ଦାର୍ଶନିକତା ଅପ୍ରତୁଳ ନୁହେଁ । କିନ୍ତୁ ଅସଲ କଥା ହେଲା—ଈଶ୍ୱର,

ଦେବଦେବୀ, ପରଲୋକ, ଆତ୍ମା, ପରମାତ୍ମାଦି ବ୍ୟାପାରରେ ତାଙ୍କର ମନଟିର ସ୍ୱଭାବ ହେଲା ବୈଦିକଗାର୍ହସ୍ଥ୍ୟ ବା ବୈଷ୍ଣବ ନୁହେଁ । ସେ ଯଜ୍ଞବାଦୀ । ଆହ୍ୱାନବାଦୀ । ଆବଶ୍ୟକ ହେଲେ ସେ ଯଜ୍ଞରେ ଆହୁତି ଦେଇ ଈପ୍ସିତ ଦେବଦେବୀଙ୍କୁ ଅଧାଗଚ୍ଛ, ଅଧତିଷ୍ଠ ବୋଲି ଆହ୍ୱାନ କରିବେ ଏବଂ ଅଭୀଷ୍ଟ ବର ଦାବୀ କରିବେ । କିନ୍ତୁ "ହା'ରାମ" ବା "ହା'କୃଷ୍ଣ" କୀର୍ତ୍ତନ କରି କାନ୍ଦି କାନ୍ଦି ତଳେ ଗଡ଼ିବେ ନାହିଁ ।

ମହତାବଙ୍କ ଘଟଣାବହୁଳ ଜୀବନରେ ବହୁ ଉତ୍ଥାପତନ ଘଟିଛି । ବ୍ୟର୍ଥତାବୋଧ ବା ନୈରାଶ୍ୟବାଦ ତାଙ୍କ ଜାତକରେ ନାହିଁ । ବ୍ୟର୍ଥତା ବା ନୈରାଶ୍ୟବାଦକୁ ସେ ଘୃଣା କରନ୍ତି । ସେ ଚିର-ସଂଗ୍ରାମୀ ଓ କର୍ମଯୋଗୀ । ସମସ୍ୟା ଓ ସଙ୍କଟ ଭିତରେ ରହିବାକୁ ସେ ଭଲ ପାନ୍ତି । ତାହା ନିଜର ହେଉ ବା ଦେଶର ହେଉ । ତାଙ୍କ ଆଗରେ ଯେ କୌଣସି ସମସ୍ୟା ଗୋଟାଏ ଚ୍ୟାଲେଂଜ ବା ଆହ୍ୱାନ । ଅନ୍ୟର ସମସ୍ୟାକୁ ସେ ମନ ଦେଇ ଶୁଣନ୍ତି, ବୁଝନ୍ତି ଓ ସମସ୍ୟାଟିର ସମାଧାନ ଲାଗି ବାଟ ବତାଇ ଦିଅନ୍ତି—କେତେବେଳେ ନିଜେ ସମସ୍ୟାଟିର ଦାୟିତ୍ୱ ନେଇଯାନ୍ତି । ସେଥିଲାଗି ସେ ବହୁକାଳରୁ କ୍ଷମତା-ରାଜନୀତିରୁ ଅଲଗା ଥିଲେ ହେଁ, ବହୁ-ଲୋକ ତାଙ୍କ ପାଖେ ସକାଳୁ ସଂଜଯାଏ ପ୍ରାର୍ଥୀ ହୋଇ ଘେରିଥାନ୍ତି । ତାଙ୍କୁ ମଧ୍ୟ ଏ ଲୋକ ସମାଗମ ଭଲ ଲାଗେ । ତାଙ୍କ ବିରାଟ ବ୍ୟକ୍ତିତ୍ୱଟିର ଅନ୍ଦର ମହଲକୁ ବହୁ ପ୍ରବେଶ ଦ୍ୱାର ରହିଛି । ଏବଂ ସେହି ସବୁ ଦ୍ୱାର ଦେଇ ବହୁ ପ୍ରକାରର, ଏପରିକି ବିପରୀତଧର୍ମୀ ବ୍ୟକ୍ତିମାନଙ୍କର ମଧ୍ୟ ଯିବା ଆସିବା ଚାଲିଥାଏ । ମେ ସ୍ୱୟଂ ଗୋଟିଏ ଦ୍ୱାରରେ ଠିଆ ହୋଇ ଜଣେ ମହାନ୍ ସାଧୁ ବା ସନ୍ଥଙ୍କୁ ମହାସମ୍ମାନ ଓ ଆଦର ଦେଇ ଅଭ୍ୟର୍ଥନା କରି ନେଉଥିବେ ତ, ଠିକ୍ ସେତିକି ବେଳେ ଆଉ ଗୋଟିଏ ଦ୍ୱାର ପଥରେ ସେହିଭଳି ନିଜେ ଦଣ୍ଡାୟମାନ ରହି, ଆଉ ଜଣେ ନିଚମନା ଟାଉଟରକୁ ମଧ୍ୟ ହାତଧରି ହସିହସି ପାଖ୍ରେଟି ନେଉଥିବେ । ଆମ୍ଭେମାନେ ଏ ସବୁ ଦେଖି କ୍ଷୁବ୍ଧ ହେଉ ଏବଂ ଆମ ଭିତରେ ଆମେ ମହତାବଙ୍କର ଯୋଉ ଭାବମୂର୍ତ୍ତି ନିଜେ ଗଢ଼ି ପୂଜା କରୁଥାଉ, ସେଥିରେ ଆଘାତ ଲାଗେ । କିନ୍ତୁ କିଏ କଣ କରିପାରିବ ? ସେ କଣ ଆଉ କିଏ ହୋଇଛନ୍ତି ? ସେ ସବୁ ମହତାବ ।

ମହତାବଙ୍କ ଖୁବ୍ ଦେଶପ୍ରାଣ, ଖୁବ୍ ଜ୍ଞାନୀ ଏବଂ ଜଣେ ଚିନ୍ତାଶୀଳ ସାହିତ୍ୟିକ ଓ ଜଣେ ବିଦଗ୍ଧ ବିଶିଷ୍ଟ ପ୍ରତିଭାଶାଳୀ ବ୍ୟକ୍ତି—ଏକଥା ହୁଏତ ଓଡ଼ିଶାର ଅଳ୍ପ ଲୋକ ଜାଣନ୍ତି । ମାତ୍ର ସେ ଯେ ଜଣେ ଖୁବ୍ ଧୂର୍ତ୍ତ, ଚତୁର, କୂଟନୀତିପରାୟଣ ହଠଚମଟକାରୀ ରାଜନୀତିଜ୍ଞ ଏକଥା ଓଡ଼ିଶାର ଆବାଳ-ବୃଦ୍ଧବନିତା କିଏ ବା ନଜାଣେ ? ବହୁ ବିଜ୍ଞ ଲୋକ ମନ୍ତବ୍ୟ କରିବାର ମୁଁ ଶୁଣିଛି ଯେ, ମହତାବ ବାବୁଙ୍କ ଭଳି ଶକ୍ତିଶାଳୀ ପ୍ରତିଭାବାନ ନେତା ଓଡ଼ିଶାରେ ପୂର୍ବରୁ ଜନ୍ମ ହୋଇ ନାହାନ୍ତି କି ନିକଟ ଭବିଷ୍ୟତରେ ହେବାର ବିଶେଷ ଆଶା ନାହିଁ । ଏବଂ ଏକଥା ବି ଧ୍ରୁବ ସତ୍ୟ ଯେ ମହତାବ ହିଁ ଆଧୁନିକ ସମୃଦ୍ଧ ଓଡ଼ିଶାର ସୁଦୃଢ଼ ଭିତ୍ତିପତନ କରି ଯାଇଛନ୍ତି । ଓଡ଼ିଶାର ସବୁଦିଗରୁ ଉନ୍ନତିର ପଥ ସେହିଁ ପ୍ରଥମ କରି ଖୋଲି ଦେଇଛନ୍ତି । ମାତ୍ର ସେତିକି । ସେ ଇଚ୍ଛା କରିଥିଲେ ବା ତାଙ୍କର ସୁବୁଦ୍ଧି ଉଦୟ ହୋଇଥିଲେ, ସେ ସେହି ସୁଦୃଢ଼ ଭିତ୍ତି ଉପରେ ନିଖୁଣ୍ଟ ସ୍ଥାୟୀ ପ୍ରାସାଦମାନ ନିର୍ମାଣ କରି ପାରିଥାନ୍ତେ । କିନ୍ତୁ ସେ ତାହା କରି ପାରିଲେ ନାହିଁ ।

ଏହାର କାରଣ ସ୍ୱରୂପ, ମହତାବଙ୍କଙ୍କର ବହୁ ବିଜ୍ଞ ଅନୁରକ୍ତ ବ୍ୟକ୍ତି-ମାନେ କହନ୍ତି ଯେ ମହତାବଙ୍କର ପ୍ରକାଣ୍ଡ ବ୍ୟକ୍ତିତ୍ୱର ଗୋଟିଏ ବିଶେଷ ଦୁର୍ବଳତା ରହିଛି । ତା' ହେଲା—ସେ ଯାହା ଜାଣି ପାରନ୍ତି, ତାକୁ କାର୍ଯ୍ୟରେ ପରିଣତ କରି ପାରନ୍ତେ—ମାତ୍ର କରନ୍ତି ନାହିଁ । ସେ ଠିକଣା ଲୋକଟିକୁ ଚିହ୍ନି ପାରନ୍ତି—ମାତ୍ର ଅଠିକଣା ଲୋକଟିକୁ ନେଇ କାମରେ ଲଗାନ୍ତି । ତାଙ୍କର ଯଥାର୍ଥ ଅନୁରକ୍ତ ବ୍ୟକ୍ତି ତାଙ୍କ ପାଖ ପଶିପାରେ ନାହିଁ । କାରଣ ଅଧିକାଂଶ ସମୟରେ ତାଙ୍କ ଚାରିପଟେ ତାଙ୍କ ପ୍ରତି ବିରକ୍ତ ଲୋକମାନେ ହିଁ ଘେରି ରହିଥାନ୍ତି । ଯେ କୌଣସି ପ୍ରଗତିଶୀଳ ନୂତନ ଚିନ୍ତାଧାରା ବା ଭାବଧାରା ବା ଭାବାଦର୍ଶକୁ ଓଡ଼ିଶାରେ କେହି ବୁଝିବା ଆଗରୁ ମହତାବଙ୍କହିଁ ପ୍ରଥମକରି ଖୁବ୍ ଚଟାପଟ ବୁଝି ନିଅନ୍ତି । ମାତ୍ର ତାଙ୍କର ନିଜର କାର୍ଯ୍ୟକଳାପରେ ସେହି ଚିନ୍ତାଧାରା ବା ଭାବାଦର୍ଶର ସାମାନ୍ୟ ପ୍ରତିଫଳନ ଦେଖିବାକୁ ବଡ଼ କଷ୍ଟ କରିବାକୁ ପଡ଼େ । କିନ୍ତୁ ଏଥିରୁ କେହି ଯେପରି ନବୁଝନ୍ତି ଯେ ମହତାବବାବୁ ତାଙ୍କର ବ୍ୟକ୍ତିଗତ ଜୀବନ-

ଯାପନ ପ୍ରଣାଳୀରେ ଅଶୁଦ୍ଧ ବା ଅସାତିପରାମୃଣ । ତାଙ୍କ ବ୍ୟକ୍ତିଗତ ଜୀବନରେ ଶୁଦ୍ଧତା, ସଂଯମ ଓ ନୀତିପ୍ରୀତ ଦେଖିଲେ ସ୍ୱତଃ ସମ୍ଭ୍ରମ ଜାତ ହୁଏ ।

ଆଉ କେତେକ ସୂକ୍ଷ୍ମ ବ୍ୟକ୍ତିଙ୍କ ମତ ହେଲା— ମହତାବଙ୍କଙ୍କ ଜୀବନ ସାରା ଓଡ଼ିଶାରେ କେବଳ ବାଳୁଙ୍ଗା ବୁଣିବାରେ ଓ ବାଳୁଙ୍ଗା କାଟିବାରେ ବିତିଗଲା । ଯଦିଓ ଉତ୍କୃଷ୍ଟ ଧାନ ବପନ ତାଙ୍କ ଅମାରରେ କମ୍ ନଥିଲା । ଏବଂ ସଘନ କୃଷିକର୍ମର ଯୋଜନା ଓ ପାଗଯୋଗ ତାଙ୍କୁ ଯେତିକି ଜଣାଥିଲା—ସେ ଦିଗରେ ଆଉ କିଏ ତାଙ୍କ ଜାଣି ଆଙ୍ଗୁଠିକ ସରି ବା ସମାନ ହେବ ? କିନ୍ତୁ ଦୁର୍ଭାଗ୍ୟ—ଯେ ମହତାବଙ୍କ ବାଳୁଙ୍ଗା ଉପାଡ଼ୁ ଉପାଡ଼ୁ କିଆରୀ ଭିତରୁ ତା' ସାଙ୍ଗରେ ଦୈବାତ୍ ଉଠିଥିବା କେଇଟା ଧାନଗଛ ବି ଉପାଡ଼ ହୋଇ ଗଲା ।

ମହତାବଙ୍କଙ୍କ ଅନୁରକ୍ତ ଗୁଣଗ୍ରାହୀମାନେ ଆଶାକରି ବସିଥିଲେ ଯେ ସେ ଦିନେ ଭାରତବର୍ଷର ପ୍ରଧାନମନ୍ତ୍ରୀ ଅଥବା ରାଷ୍ଟ୍ରପତି ହେବେ । କିନ୍ତୁ ହାୟରେ ପୋଡ଼ାକପାଳ ! ଲଗାଏତ ପାଞ୍ଚଟି ବର୍ଷ ମଧ୍ୟ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ କେବେ ରହିପାରିଲେ ନାହିଁ । ନିୟତିର ବିଚିତ୍ର ବିଧାନରେ ଅତି ଅଯୋଗ୍ୟ ଲୋକେ ଓ ତାଙ୍କ ଠାରୁ ତେର ତେର ନିମ୍ନ ଶ୍ରେଣୀର ଲୋକେ ବାରଂବାର ରାଜ ସିଂହାସନକୁ କଳେ ବଳେ କୌଶଳେ କିଛି କିଛି ଦିନ ମାଡ଼ି ବସନ୍ତି ଓ ଆପେ ଆପେ ଛଡ଼ାଖାଇ ନଦୀ ବାଲିରେ ମିଶିଯାନ୍ତି । ଅଥଚ ରାଜନୀତି ବା କୂଟନୀତି ବା କଳବଳ କୌଶଳରେ ମହତାବଙ୍କଙ୍କ ଠାରୁ ଅଧିକ ପ୍ରତିଭାଶାଳୀ ରାଜପୁରୁଷ ବା ଏ ପର୍ଯ୍ୟନ୍ତ ଓଡ଼ିଶାରେ କିଏ ଦୃଶ୍ୟମାନ ହୋଇଛନ୍ତି ? ଏହା ମହତାବଙ୍କଙ୍କ ବ୍ୟକ୍ତିଗତ ଦୁର୍ଭାଗ୍ୟ କି ଦୁଷ୍କୃତିର ଫଳ ? ନା, ଓଡ଼ିଶାର ଦୁର୍ଭାଗ୍ୟ ଅଥବା ଓଡ଼ିଆଙ୍କର ଦୁଷ୍କୃତିର ଫଳ ? କିଏ କହିବ ? ଏଠି ତ ଉତ୍କଳ ଭଗୀରଥ ମୁକୁନ୍ଦ ଦେବଙ୍କ ସିଂହାସନରେ କେବେ କେବେ ମାଧାଳିଆ ମୁକୁନ୍ଦ ଦେବ ବସିଯାନ୍ତି— ଆଉ ଉତ୍କଳ ବିକ୍ରମାଦିତ୍ୟ ପ୍ରତାପ ରୁଦ୍ରଙ୍କ ସିଂହାସନରେ ବେଳେବେଳେ କଖାରୁଆ ପ୍ରତାପଟାଏ ବସିଯାଏ ।

କିନ୍ତୁ ବିଜ୍ଞଜନେ କହନ୍ତି ଯେ ମହତାବଙ୍କ ନିଜେ ସିଂହାସନରେ ନବସି ମଧ୍ୟ, ତାଙ୍କର ଜଣେ ପ୍ରକୃତ ଅନୁରକ୍ତ ଅଥବା ଜଣେ ସୁଯୋଗ୍ୟ ବ୍ୟକ୍ତିଙ୍କୁ ଓଡ଼ିଶାର ନେତୃତ୍ୱ ଦେଇ ନିଜେ ତାଙ୍କ ପଛରେ ଦୃଢ଼ଭାବରେ ଅରୁଣସ୍ତମ୍ଭ ହୋଇ ଠିଆ ହୋଇ ରହି ପାରିଥାନ୍ତେ । ଏବଂ ତଦ୍ଦ୍ୱାରା ତାଙ୍କ ଟେକ ରହି ଥାନ୍ତା ଓ ଓଡ଼ିଶାର ମଙ୍ଗଳ ମଧ୍ୟ ହୋଇଥାନ୍ତା । ସେପରି ଲୋକ ବି ଯଦି ତାଙ୍କୁ ମିଳି ନଥିଲେ ବା ଓଡ଼ିଶାକୁ ମିଳି ନଥିଲେ, ତା' ନୁହେଁ । ମାତ୍ର ମହତାବ ବାବୁ ଠିକଣାବେଳେ ଠିକ୍ କାମ ପାଇଁ ଠିକଣା ଲୋକଟିକୁ ପାଇ ମଧ୍ୟ ହରାଇ ବସନ୍ତି । କିମ୍ବା ଯେତେବେଳେ ଟେକିଧରିବା କଥା, ସେତେବେଳେ ସେ ତାର ମୁହଁ ଚାହାନ୍ତି ନାହିଁ । ଅବଶ୍ୟ ପରେ ଚାହନ୍ତି । କିନ୍ତୁ ସେତେବେଳକୁ କେବଳ ମନ୍ଦିରଟି ହଜି ଯାଇ ନଥାଏ—ମୂର୍ତ୍ତିଟି ମଧ୍ୟ ଅପହୃତ ହୋଇ ଯାଇଥାଏ—କିମ୍ବା ବିକଳାଙ୍ଗ ହୋଇ ଭୂଇଁରେ ଲୋଟୁଥାଏ ।

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଗୋପୀନାଥ ମହାନ୍ତିଙ୍କ ମତରେ ମହତାବ ହେଲେ ଏକ ବିରାଟ ଓ ସମୁଚ୍ଚ ଅରଣ୍ୟ ଦେହୀ ପର୍ବତ, ତା' ଉପରେ ଗଗନସ୍ପର୍ଶୀ ଅତ୍ୟୁଚ୍ଚ ଶୃଙ୍ଗମାନ ଯେମିତି ରହିଛି ସେମିତି ମଧ୍ୟ ରହିଛି ପାତାଳସ୍ପର୍ଶୀ ଗଭୀର ଗହ୍ୱରମାନ । ଗୋପୀବାବୁଙ୍କ କଥା ଠିକ୍ । ଯେ ସବୁ ଶୃଙ୍ଗକୁ ଉଠିବା ଯେମିତି ଦୁଷ୍କର—ସେ ସବୁ ଗହ୍ୱର ଭିତରକୁ ପଶିବା ବି ସେମିତି ଦୁଃସାଧ୍ୟ । ତେଣୁ ମହତାବଙ୍କ ବ୍ୟକ୍ତିତ୍ୱକୁ କଳନା କରି ତାଙ୍କର ଗୁଣାଗୁଣ ବର୍ଣ୍ଣିବା ମତ୍‌ସଦୃଶ କ୍ଷୀଣବୁଦ୍ଧି କବିଟି ପକ୍ଷରେ ସହଜ ନୁହେଁ । କିନ୍ତୁ ପରିହାସର ବିଷୟ ହେଲା—ମଣିଷଟିଏ ଯେତେ ବିରାଟ ଯେତେ ମହାନ୍ ହେଲେ ବି ମୋର ଭଳି ସ୍ୱଳ୍ପବୁଦ୍ଧି ସାଧାରଣ ଲୋକଙ୍କ ହାତରେ ତାଙ୍କର ବିଚାର ବା କଳନା ହୋଇଥାଏ । କିଏ ଆଉ କଣ କରିପାରିବ ?

ମହତାବଙ୍କ ସମ୍ବନ୍ଧେ ମୋର ମତ ହେଲା—ମହାନ୍ ବ୍ୟକ୍ତି ହବାର ସମସ୍ତ ପ୍ରତିଶ୍ରୁତି ଓ ସମ୍ଭାବନା ସତ୍ତ୍ୱେ, ସେ କେବଳ ଜଣେ ବିରାଟବ୍ୟକ୍ତି ପର୍ଯ୍ୟାୟରେ ରହିଲେ । କେଉଁ ଅଧିକ ଗୁଣଟି ରହିଥିଲେ "ବିରାଟ" "ମହାନ୍"ର ପର୍ଯ୍ୟାୟକୁ ଉନ୍ନୀତ ହୋଇଯାଏ, ତାହା ସୁଧୀଜନେ ବିଚାର

କରନ୍ତୁ । ଚିଲିକା ଆଜି ସମୁଦ୍ର ମଝିରେ ଗୋଟିଏ ବାଲିବନ୍ଧଟିଏ ମାତ୍ର ଚିହ୍ନିତ । ତା' ନହେଲେ ଚିଲିକା ବି ତ ସମୁଦ୍ର ହୋଇ ଯାଇଥାନ୍ତା । ସେ ବିଷୟର ବର୍ତ୍ତମାନ ପାଇଁ ଛାଡ଼ନ୍ତୁ, ଅସଲ କଥା ହେଲା—ଆମେ ମହତାବଙ୍କୁ ଛାଡ଼ି ପାରିବୁ ନାହିଁ । ଭୁଲି ପାରିବୁ ନାହିଁ । ସମୁଦ୍ର ବାଗରେ ସମୁଦ୍ର ଥାଉ । ମାତ୍ର ଚିଲିକାହିଁ ଆମ ପକ୍ଷରେ ପ୍ରଶସ୍ତ । ତା' ଭିତରେ ଦିନରେ ମାଛମରା ହେବ, ଜହ୍ନ ରାତିରେ ଡଙ୍ଗାରେ ବସି ଜଳକେଳି ହେବ । ଆଉ ବେଳେବେଳେ କାଳୀଜାଇ ଗଣ୍ଡରେ ଚିଲିକାର ଝଡ଼ତୋଫାନରେ ଡଙ୍ଗାସୁଦ୍ଧା ଅତଳଜଳରେ ଡୁବି ନିଶ୍ଚିହ୍ନ ବି ହୋଇ ଯାଇପାରେ । ହଉ—ପରୁଆ ନାହିଁ । ମହତାବ ଆମରି ଭଲ । ଯାହା ହେଲା—ଯେତିକି ହେଲା !! ଆଉ କିଏ ଅଛି କି ? ଆମକୁ ଯେତିକି ମିଳିଲା ! ଆମେ ସାରା ଓଡ଼ିଶାବାସୀ ତାଙ୍କୁ ଯଥାସମ୍ମାନ ଦେଇ ଓ ପରମକୃତଜ୍ଞତାର ସହିତ ଚିର କାଳକୁ ମନେରଖିବୁ । ମୋର ତ ଯଥାର୍ଥ ଅନୁଭବ ହେଲା—ସେ ଏମିତି ବିଚିତ୍ର ମଣିଷଟିଏ ଯେ, ତାଙ୍କ ପ୍ରତି ଚରମ ବିରକ୍ତିଭାବ ମଧ୍ୟ ଆମ ଅଜାଣତରେ କେତେବେଳେ ତାଙ୍କ ପ୍ରତି ଆଦର ତେଜରେ ନୂତନ ଅନୁରକ୍ତିର ରୂପାନ୍ତରିତ ହୋଇ ଆମ ହୃଦୟକୁ ଫେରି ଆସେ ଆଉ ଆମକୁ ଅପ୍ରସ୍ତୁତ କରିଦିଏ । ବିଚିତ୍ର ! ବିଚିତ୍ର ! ହେ ବିଚିତ୍ରତା ! ତୁମରି ନାମ ହିଁ ମହତାବ ।

ଅଥଚ ମହତାବଙ୍କ ନିଜେ କାହାକୁ ବ୍ୟକ୍ତିଗତ ଭାବରେ ନିବିଡ଼ ଭାବରେ ପ୍ରଗାଢ଼ ଭାବାବେଗ ସହିତ (Passionately) ଭଲପାନ୍ତି—ସେଥିରେ ମୋର ଘୋର ସନ୍ଦେହ ଥାଏ । ମୋର ଧାରଣା, ଏଇ ବିରାଟ ବିଚିତ୍ର ବ୍ୟକ୍ତିଟି ନିଜେ ଅନ୍ୟମାନଙ୍କ ଠାରୁ ଭଲ ପାଇବା ଲୁଟିନେଇ ଏତେ ବିପୁଳ ହୋଇଛନ୍ତି ! ଅଥଚ ନିଜେ ଅନ୍ୟ କାହାକୁ କଡାଟା କରି ଭଲ ପାଇବା ସେ ଫେରାଇ ଦେଇ ନାହାନ୍ତି ! ବରଂ ମହତାବଙ୍କୁ ଭଲ ପାଇଥିବା ଲୋକଟି ଶେଷକୁ ଶୋଷି ପଡ଼ିଯାଏ—ଚୋପା ହୋଇ ପବନରେ ଧୂଷ ଭଳି ଉଡ଼ି ଥାଏ । କବି କହି ନାହାନ୍ତି କି—"ଜାଣୁ କିନା ପୂତନା ଦାସୀ—କ୍ଷୀରପାନେ ପ୍ରାଣ ଦେଲା ତା' ଶୋଷି । ପିଲାଟି ଦିନରୁ ସେ ବଡ଼ ସାହସୀ ଅତି ଦୁରୁଦଣ୍ଡ—ଗୋବର୍ଦ୍ଧନିଆ ।

କୁଶୁନିଆଁ ଗିଳନ୍ତୁ ନିଆଁ , ପୋଡ଼ି ଦେବନ୍ତି ତୋ ପ୍ରୀତି ସୁନିଆଁ !
ହେ ଦରଦୀ ଦାଣୀ ତୋ ନଜର ଫେରାଇ କଦର କର ତା’ ଠାରୁ ଷେନିଆଁ ।”

ସତକଥା ! ମୋ ସାଙ୍ଗର ବହୁ ଗୁଣୀଲୋକ ତାଙ୍କ ପାଖ ମାଡ଼ିବାକୁ ଭୟ କରନ୍ତି । ଘୃଣା ବି କରନ୍ତି । ଈଶ୍ୱରେ ବୁଦ୍ଧିଆ ! ଇଲୋ ମାଆ ! ମହଭାବ ପାଖକୁ ? ପୁଣି ପ୍ରୀତି ପଣରେ ଧରି ? କାହିଁ—ପ୍ରୀତି କରିବାକୁ ଆଉ ଲୋକ ନାହାନ୍ତି କି ? ସୁଅଗ ଦେଖେଇ କାନ୍ଧରେ ବସାଇ କୁଆଡେ ନାହିଁ କୁଆଡେ ନେଇଯିବ । ଅଧାବାଟରେ ଘୋର ନିକାଂଚନ ଅପନ୍ତର ବାଲିକୁଦରେ କାନ୍ଧରୁ ଖସାଇ ତଳେ କଚାଡ଼ି ଦେଇ-କୁଆଡେ ନା କୁଆଡେ ଅନ୍ତର୍ଦ୍ଧାନ ହୋଇଯିବ ! ମହଭାବ ସଙ୍ଗେ ପ୍ରୀତି ! ରକ୍ଷାକର ! ମହଭାବକୁ ଜୁହାର ! ତା’ର ପ୍ରୀତିକୁ ଜୁହାର ମା’ ! ତା’ ସାଙ୍ଗେ ‘ଯେ ପ୍ରୀତି କରିବ-ତା” ଗୁଡ଼ି ଲୁହାର ମା !

ସତକଥା ! ମୋର ବିଶ୍ୱାସ ଯେ ମହଭାବ କେବଳ ଭକ୍ତିଭଜନ । ପ୍ରୀତିଭଜନ ନୁହନ୍ତି । କିନ୍ତୁ ଏମିତି ମଧ୍ୟ ଶେଷ କଥା ହାତକାନି ଲେଖି ହେବ ନାହିଁ । କାରଣ, ବହୁବାର ସେ ମୋ ଆଗରେ ଗୋଟିଏ ବଙ୍ଗଳା ଭଜନର ପ୍ରଥମ ଧାଡ଼ୀଟି ‘କଂଠରେ ବିଷଣ୍ଣ ସ୍ମିତ ହସର ସ୍ୱରରେ ଗାଇ କହନ୍ତି— “ମାଲମଣି ! ଏଭଳି ଗଭୀର ପଦ ଆମ ଓଡ଼ିଆ ଭଜନ ସାହିତ୍ୟରେ ରହିଛି ? ସେଇ ପଦଟି ହେଲା—

ପିରିଥିବାରେ କେଉ ଭାଲ ଯେ ବାସେନା
ଏ ପିରିଥିବା ଭାଲ ବାସିତେ ଜାନେନା !

ମହଭାବଙ୍କ ମୁହଁରେ ମୁଁ ଏ ପଦଟି ମାତ୍ର ଆଠଥର ଶୁଣିଥିବି । ଏତେଥର ଶୁଣି ମୋର ମନରେ ଭୟ ହୋଇଛି । ମହଭାବଙ୍କ କଣ ଜୀବନରେ କାହାର ପ୍ରଗାଢ଼ ପ୍ରେମରେ ପଡ଼ି ପ୍ରଚଣ୍ଡ ପ୍ରଗାଢ଼ ଧୋକ୍କା ଖାଇଛନ୍ତି କି ? ତାଙ୍କ ହୃଦୟର ଗିରିକନ୍ଦରରେ ପ୍ରୀତିଧୋକ୍କାଖିଆ ପ୍ରୀତିବୈରାଗୀ ପ୍ରେମିକ ମହଭାବଟିଏ କୋଉଠି ଲୁଚିବସି ଅନୁଦିନେ କାହା ଲାଗି ଲୁହ ଢାଳୁଛି କି ? ଏବେ ବି ମୁଁ ଅପେକ୍ଷା କରି ବସିଛି—କୋଉଦିନ କିଏ ନବୀନ କି ମନ୍ମଥ, ବାଳକୃଷ୍ଣ କି ଶ୍ରୀହର୍ଷ, ଚନ୍ଦ୍ର କି ନଗେନ୍,

କୁଞ୍ଜବିହାରୀ କି ନଟବର ମହାପାତ୍ରଙ୍କ ବିପୁଳ ଜୀବନର ଅଠର ଖଣ୍ଡ ମହା-କାବ୍ୟ ଭିତରୁ ଦରାଣ୍ଡି ଦରାଣ୍ଡି ସତକୁ ସତ, ଗୋଟିଏ ଦୁଇଟି ନାରୀସମ୍ପର୍କୀୟ ଭଲ ପାଇବାର ଓ ଧୋକ୍କା ଖାଇବାର ରୋମାଞ୍ଚକର ଛାତିଫଟା ଅଶ୍ରୁଳ କାହାଣୀ ଆବିଷ୍କାର କରି ସର୍ବ ସମକ୍ଷରେ ଟିକ୍କା ଟିପ୍ପଣୀ ସହ ପ୍ରକାଶ କରି ଦେବେ । ସେଇଦିନ ମୁଁ ଖୁବ୍ ଖୁସୀ ହୋଇଯିବି । ଏବଂ ଏହି ବିରଳ ବ୍ୟକ୍ତିଙ୍କୁ ମହାନ୍ ବ୍ୟକ୍ତି ବୋଲି ସର୍ବସମକ୍ଷରେ ଘୋଷଣା କରି ପ୍ରମାଣ କରିବି ।

କିନ୍ତୁ ଏହା କଣ କେବେ ଘଟିବ ? ଏମିତି ପୁଣି ସତକୁ ସତ ଘଟିଥିଲେ ତ ! ମୁଁ ପୁଣି ମନେମନେ ତର୍କଣା କରେ—ଆଶା ବାନ୍ଧେ- ଏତେ ବଡବଡ଼ ଲୋକଙ୍କ ନାମରେ ନାରୀସମ୍ପର୍କ ନେଇ ଏତେ ସବୁ ମିଛସତ ପ୍ରଣୟ କାହାଣୀ ପ୍ରକାଶ ପାଉଛି—ମହାପାତ୍ରଙ୍କ ନାମରେ କୁତ୍ସାମୂଳକ ବହୁ ରାଜନୀତିକ ମିଥ୍ୟା କାହାଣୀ ସୃଷ୍ଟି ହୋଇ ଶ୍ରେଷ୍ଠ ଲୋକମାନଙ୍କ ଦ୍ୱାରା ବହୁଳ ପ୍ରଚାରିତ ହୋଇଛି—କେହି କାହିଁକି ତାଙ୍କ ନାମରେ ନାରୀ ସମ୍ପର୍କ ଜଡିତ ଅନ୍ୟୁନ ଦୁଇଟି ମିଥ୍ୟା ପ୍ରଣୟ କାହାଣୀ ମନରୁ ଗଢି ପ୍ରଚାର କରି ଦେଉନାହିଁ ?

ମୁଁ ମହାପାତ୍ରଙ୍କୁ ବହୁ ଦୃଶ୍ୟରେ ବହୁ ଭୂମିକାରେ ଦେଖିଛି । ତାଙ୍କୁ ସବୁ ନାଟର ଗୋବର୍ଦ୍ଧନ ବୋଲି ଜାଣିଛି । କିନ୍ତୁ ତଥାପି, ମୁଁ ତାଙ୍କୁ ଆଉ ଦୁଇ ତିନୋଟି ମାତ୍ର ଦୃଶ୍ୟରେ ଦେଖିବାକୁ ଚାହେଁ । ତା' ହେଲା—ସେ ଏକୁଟିଆଟି ହୋଇ ନୀରବରେ ଗୋଟିଏ ନିର୍ଜନ ନଦୀକୂଳରେ ବସି ଅଦୂର ପାହାଡ଼ଟିର ପଛପଟେ ଅସ୍ତଗାମୀ ସୂର୍ଯ୍ୟ ଆଡ଼କୁ ଚାହିଁ ବଂଶୀଟିଏ ବଜାଉଥିବେ ବିଳାପବିଧୁର ଶୋକବରାଡ଼ୀ ରାଗ ବା ରାଗିଣୀରେ । ଏବଂ ତାଙ୍କ ଆଖିରୁ ଧାରଧାର ହୋଇ ଲୁହ ବହି ଯାଉଥିବ । ଏବଂ ତାଙ୍କ ପାଖରେ ମୋଟା ସୋଟା ହୋଇ ବସ୍ତା ଲୁମାଳିଆ ଧଳା ପୁଷିଟିଏ ଜାକିଜୁକି ହୋଇ ବସି ଆଖିବୁଜି ଧ୍ୟାନ କରୁଥିବ ।

ଆଜି ଗୋଟିଏ ଦୃଶ୍ୟ ହେଲା, ରାଜଧାନୀର ଗୋଟିଏ ଜନଗହଳି ପାର୍କ ଭିତରେ ଅଥବା ପ୍ରଜାତନ୍ତ୍ର ହତା ଭିତରେ ହଠାତ୍ ବହୁ ଲୋକଙ୍କ ଆଖିରେ ପଡ଼ିଯିବ ଯେ ମହତାବଜୀ ମୁହଁରେ ଗୋଟିଏ ହାତୀ ମୁଖା ଲଗାଇ, ଧଳା ଚଦରଟିଏ ଘୋଡ଼ି ହୋଇ ଭୂଇଁ ଉପରେ ଦୁଇ ଗୋଡ଼ ଓ ଦୁଇହାତ ଲଗାଇ ଝୁଲି ଝୁଲି ହାମୁଡ଼େଇ ଚାଲିଛନ୍ତି- ଏବଂ ତାଙ୍କ ପିଠି ଉପରେ ଅନ୍ୟୂନ ଏକ ଡଜନ ଶହେଟି ମାତ୍ର ଆଠ ବର୍ଷର ପୁଅ ଝିଅ ମହାନନ୍ଦରେ ବସି ଡ୍ରମ୍ ଓ ବଗୁଲ ପ୍ରଭୃତି ବଜାଇ ଉଚ୍ଚକଣ୍ଠ କୋଳାହଳରେ ସର୍କସ ଖେଳରେ ମାତିଛନ୍ତି ।

ମହତାବଜୀ ଘଣ୍ଟା ଘଣ୍ଟା ଧରି, ରାତି ଅନିଦ୍ରା ହୋଇ ଆତ୍ମିକ ଆଗ୍ରହ ଓ ମନଯୋଗ ସହକାରେ କବାଲି ଶୁଣିବାର ଦେଖିଛୁ, ଯାତ୍ରା ଓ ପାଲା ଦେଖିବାର ଦେଖିଛୁ । ପ୍ରଥମ ବର୍ଷୁତ ମିଳନ ଉତ୍ସବରେ ମହତାବଜୀଙ୍କ ସଙ୍ଗରେ ଏକାସ ମୁହଁରେ ପାଉଡର ବୋଳି, ଡ୍ରେସିଙ୍ଗ ହୋଇ ରଙ୍ଗମଞ୍ଚରେ ଓହ୍ଲାଇ ତାଙ୍କ ଲିଖିତ ନାଟକ ଅଭିନୟ କରିଛୁ । କିନ୍ତୁ ତଥାପି ମୁଁ ବାରମ୍ବାର ଆଶା କରିଛି ଦେଖିବାକୁ ଯେ କୌଣସି ଏକ ସ୍ଥାନରେ ମହାଭାରତ ନାଟକ ଅଭିନୟ ହେଉଥାନ୍ତା । ମହତାବଜୀ ନିଜେ ସେ ନାଟକଟି ଲେଖିଥାନ୍ତେ ଓ ନିର୍ଦ୍ଦେଶ ଦେଇଥାନ୍ତେ । ଏବଂ ସେ ନିଜେ ଆଖିରେ ଅନ୍ଧପୁଟୁଳି ବାନ୍ଧି, ଲମ୍ବାକେଶୀ ପରଚୁଲା ଲଗାଇ, ଧଳା ଶାଢ଼ୀ ପିନ୍ଧି ଗାନ୍ଧାରୀ ଭୂମିକାରେ ଓହ୍ଲାନ୍ତେ ଓ ଦୁର୍ଯୋଧନାଦି ପୁତ୍ରମାନଙ୍କ ଉଦ୍ଦେଶ୍ୟରେ ଖୁବ୍ ଚିଲେଇ କରି ଭର୍ତ୍ସନାମୂଳକ ବଚନିକାମାନ ଝାଡୁଥାନ୍ତେ ଓ ତାଙ୍କ ଅନ୍ଧପୁଟୁଳିବନ୍ଧା ଆଖିରୁ ନିଆଁ ଝୁଲପରି ଲୁହବିନ୍ଦୁମାନ ଥପ୍‌ଥପ୍ ହୋଇ ଗଡ଼ି ଭୂଇଁ ଉପରେ ପଡୁଥାନ୍ତା !

କିନ୍ତୁ ନାଃ ! ଏସବୁ ଦୃଶ୍ୟ ଦେଖିବାର ସୌଭାଗ୍ୟ ମୋର ନାହିଁ କି ମହତାବଜୀଙ୍କର କୌଣସି ଅନୁରକ୍ତ ବ୍ୟକ୍ତିର ମଧ୍ୟ ନାହିଁ । ଠିକ୍ ଅଛି । ସୌଭାଗ୍ୟ ଉପରେ ବା କାହାର ହାତ ଅଛି ?

କିନ୍ତୁ ଏଇ କେଉଁଠା ଦୃଶ୍ୟରେ ତାଙ୍କୁ ଦେଖିବାର ସୌଭାଗ୍ୟ ନ ମିଳିଲେ ବି ମହାତାବଙ୍କାଙ୍କ ଭଳି ତାଙ୍କ ସମସ୍ତର ଜୋଡ଼ ନେତା ତାଙ୍କ ସଦୃଶ ଏତେ ଅସଂଖ୍ୟ ଦୃଶ୍ୟ ସୃଷ୍ଟିକାରୀ ? (Scene maker) ମହାତାବଙ୍କ ମହା ଧୂର୍ତ୍ତ, ମହାଚତୁର, କୂଟ ରାଜନୀତିଜ୍ଞ—ଯିଏ ଯେତେ ଯାହା କୁହନ୍ତୁ ପଛକେ, ତାଙ୍କ ସମସ୍ତର କୋଉ ନେତା ତାଙ୍କ ଭଳି ଏତେ ଉଦାର, ଏତେ ଦୁଃସାହସୀ, ଏତେ ଖୋଲ୍‌ମେଲ୍ (Exposed) ଏତେ ପ୍ରମାଦଶୀଳ ପୁଣି ଏତେ ସର୍ଜନଶୀଳ ? ତାଙ୍କ ଭଳି ଏତେ ଫୁଲମାଳ କିଏ ପିନ୍ଧିଛନ୍ତି ? ପୁଣି ଏତେ ଟେକା ମାଡ଼ କିଏ ଖାଇଛନ୍ତି ? ଉତ୍କଳ କେଶରୀ ପଦଠାରୁ ବୁଢ଼ା ଗେଧ ପଦ ପର୍ଯ୍ୟନ୍ତ ଏତେ ପ୍ରଶଂସା ଆଉ ଏତେ ନିନ୍ଦା ତାଙ୍କ ଭଳି ତାଙ୍କ ସମସ୍ତର କୋଉ ନେତା ଖାଇ ହଜମ କରି ପାରିବ, ଆସୁ ଦେଖି ସେ ଆମ ଆଗକୁ ! ତାଙ୍କ ଭଳି କିଏ କହିପାରିବ ଏତେ ଠାଣି ପଣରେ— "ଆଜ ମୁଁ ରଖିବି ଗୋକୁଳ—କିସ କରିବ ଇନ୍ଦ୍ରଶ୍ୱର ।" ଏମିତି ସାହସ ଆଉ ଭରସା କିଏ ଦେଇ ପାରିବ ଦେଖି ଆସୁତ ସେ ଆମ ଆଗକୁ । ତାଙ୍କ ଭଳି କିଏ ନିଆଁ ଗିଳି ପାରିବ ? କିଏ ତାଙ୍କ ଭଳି କାଳୀୟ ଠାରୁ ବିଷକାମୁଡ଼ା ଖାଇ ପୁଣି ତା' ଫଣା ଉପରେ ଠିଆ ହୋଇ ତାର ଦର୍ପ ଦଳି ପାରିବ, ଆସୁ ତ ଦେଖି ସେ ଆମ ଆଗକୁ । ପୁଣି, କିଏ ବା ତାଙ୍କ ଭଳି ଆପଣାର ଦୁଷ୍ଟବଂଶକୁ ନିଜ ହାତରେ ନିପାତ କରି ଚୁପ୍‌ଚାପ୍ ଏକୁଟିଆଟି ହୋଇ ନିର୍ଜନ ଅରଣ୍ୟ ଭିତରକୁ ଚାଲିଯାଇ ଶିଆଳୀଲଟାତଳେ ନିଃସଙ୍ଗ ସ୍ଥିତ-ବାସର ବୀରେଶ୍ୱର ପରମଶାନ୍ତ ସହିଷ୍ଣୁତା ଓ ତତ୍ପରତାରେ ଆପଣାର ସୃଷ୍ଟିଜାଳ ହାତରୁ ସବୁ ଆୟୁଧଗୁଡ଼ିକ ଓହ୍ଲାଇ ଦେଇ ପରମ ଗୌରବ ଓ ନିସ୍ତବ୍ଧତାରେ ଶବାସନ କରି ପାରିବ; ଦେଖି, ଆସୁତ ସେ କିଏ ଏମିତି ପୁଅ ଅଛି ଏ ଓଡ଼ିଶାରେ, ଆମ ଆଗକୁ । ଲକ୍ଷେ ପଦ୍ମ ଉପରେ ବସିଛନ୍ତି ସେ—ପୁଣି ଲକ୍ଷେ ତୀକ୍ଷ୍ଣ ଶର ଉପରେ ଶୋଇଛନ୍ତି ସେ ନିଶ୍ଚଳ ନିଷ୍କମ୍ପ । କିଏ ଏପରି ସାଧିଛନ୍ତି କହନ୍ତୁ ଦେଖି ଆପଣ ପାଟିରେ !

କେହି ନାହିଁ । ତାଙ୍କ ଛଡ଼ା, ତାଙ୍କ ସମସ୍ତର ତାଙ୍କ ସମାସ୍କନ୍ଧ ଆଉ କେହି ନାହିଁ । ଅର୍ଦ୍ଧଶତାବ୍ଦୀ ଧରି ସେଇ ଗୋଟିଏ ନାମ ସାରା ଓଡ଼ିଶାରେ ସବୁରି ତୁଣ୍ଡରେ ଅହରହ ଭଲରେ ମନ୍ଦରେ ଉଚ୍ଚାରିତ ହୋଇ ଆସୁଛି ।

ମହତାବ— ମହତାବ୍— ମହତାବ୍—

ସେ ନାମର ଗୋଟାଏ ଶକ୍ତି ଅଛି । ମହିମା ଅଛି । ସେ ନାମଟିର ସ୍ପନ୍ଦନ ଆଶା ଓ ଭରସା ଦିଏ । ନିର୍ଭୟ କରେ—ଉତ୍ସାହ ଦିଏ । ସେ ନାମ ନିଜ ପାଟିରେ ଧରିଲେ ବା ଆଉ କାହା ତୁଣ୍ଡରୁ ଶୁଣିଲେ—ସେ ବିପୁଳ ବପୁ—ସେ ପ୍ରଲମ୍ବ ହାତ—ସେ ପାହାଡ଼ ବକ୍ଷ—ସେ ସମ୍ମୋହକ ବୃହାଣୀ ସେ ଉଦାର ହସ—ଆଉ ସେ ଉଦାତ୍ତ କଣ୍ଠସ୍ୱର ସବୁ ଏକାଠି ଆଖି ଆଗକୁ ଆସିଯାଏ । ମନରେ ପ୍ରତ୍ୟୟ ଆସେ—ମହତାବ ଅଛନ୍ତି ହେ— ମହତାବ ଅଛନ୍ତି– ପ୍ରଜାତନ୍ତ୍ରରେ ଥିବେ, କି ଏକାମ୍ର ନିବାସରେ ଥିବେ ।··· ମୁଁ ବୁଲିଲି ମହତାବଙ୍କ ପାଖକୁ···ମୁଁ ମହତାବଙ୍କୁ କହିବି···ମହତାବ ଶୁଣିଲେଣି କି ?··· ମହତାବ କଣ କହୁଛନ୍ତି ?··· ମହତାବ ନିଶ୍ଚୟ ଆସିବେ··· ମହତାବ କେବେ ଛାଡ଼ିବେ ନାହିଁ··· ମହତାବ କଣ କହୁଛନ୍ତି ଦେଖ··· ମହତାବଙ୍କ କଥା ଶୁଣିବନି ସେ ଯିବ କୁଆଡେ ? ସେ ମହତାବଙ୍କ ସଙ୍ଗେ ଖେଳୁଛି ?··· ବାଃ ଗୁଡ଼, ଆମେ ମହତାବଙ୍କୁ ଦେଖା କରିବାକୁ ଆସିଛୁ··· ମହତାବ ନାହାନ୍ତି କି ?··· ମହତାବ ରବିବାର ଦିନ ଦିଲ୍ଲୀରୁ ଫେରିବେ··· ମହତାବ ଗଲେଣି ଆହାନ··· ମହତାବ ସେ ସମ୍ବନ୍ଧେ କଣ ଲେଖିଛନ୍ତି ପଢ଼ିଛ ?··· ମହତାବଙ୍କୁ କହିଲେ ଲାଭ ନାହିଁ··· ମହତାବଙ୍କୁ ଦେଖା କରହେ··· ମହତାବ ନିଶ୍ଚେ ବୁଝିବେ ମହତାବଙ୍କୁ କହିଛ ତ ?··· ବାସ୍, ନିଶ୍ଚିନ୍ତ ଥାଅ··· ମହତାବଙ୍କ ଆଖିରେ ପରଳ ପଡ଼ିଥିଲା ନା ?··· ମହତାବଙ୍କ ଆଖିରୁ ପରଳ କଟି ଗଲାଣି··· ସେ ଏବେ ସବୁକଥା ସ୍ପଷ୍ଟ ଦେଖି ପାରିଲେଣି.... ଆମେ ଆସିଛୁ ମହତାବଙ୍କୁ ନେବାପାଇଁ.... ଆମେ ମହତାବଙ୍କ ଛଡ଼ା କାହାକୁ ନବୁନାହିଁ.... ଆମେ ମହତାବଙ୍କ ଛଡ଼ା ଓଡ଼ିଶାରେ ଆଉ କାହାକୁ ଗଣନା କରୁନାହିଁ.... ଆରେ ହ ! ମହତାବ ସାମନ୍ତବାଦୀ ! ଭାରତବର୍ଷର ସବଦିଗ ସାମନ୍ତବାଦୀଙ୍କୁ ତୁମ କାର୍ଲମାର୍କସ ଦେଖି ନାହାନ୍ତି । ମଧ୍ୟଯୁଗୀୟ ଇଉରୋପର ଆରିଷ୍ଟୋକ୍ରେଟ ବା ବୁର୍ଜୋଆ ମନୋଭାବ ସଙ୍ଗେ ଭାରତବର୍ଷର ମହୋଦାର କ୍ଷତ୍ରୀୟ ଅଭିଜାତ ମନୋଭାବକୁ ତୁଳନା କରିବା ବାତୁଳତା । ତୁମ କାର୍ଲମାର୍କସ ବା ଲେନିନ ଆମ ରାଜା ଦଶରଥ, ରାଜା ମାନଧାତା, ରାଜା ଦିଲ୍ଲୀପ, ରାଜା

ହରିଶ୍ଚନ୍ଦ୍ର, ରାଜା ନଳ, ରାଜା ଯୁଧିଷ୍ଠିର, ରାଜା ଶିବି, ରାଜା ପୃଥୁ ଓ ରାଜା ରାମଚନ୍ଦ୍ରଙ୍କୁ ଦେଖି ନାହାନ୍ତି···ରାଷ୍ଟ୍ର ପୁଙ୍ଗବ ମହତାବ ଉକ୍ତଙ୍କ ଅବତାର, ଅନ୍ତତଃ ପକ୍ଷେ ଏ ଯୁଗରେ···

ମହତାବଙ୍କଙ୍କର ୮୩ ତମ ଶୁଭ ଜନ୍ମତିଥି କେଉଁଦିନ କି ? ନଭେମ୍ବର ଚବିଶି ? ଠିକ୍ ଅଛି ; ଆମେ ସେଦିନ ସାଙ୍ଗ ସାଥୀମେଳରେ ଏକାମ୍ର ନିବାସକୁ ଯିବୁ । ତାଙ୍କ ଉପରେ ପୁଷ୍ପବୃଷ୍ଟି କରି ଆସିବୁ ।

ମହତାବ ଅଛନ୍ତି । ମହତାବ ଅଛନ୍ତି । ଜୟ ଜୟ ମହତାବ ! ଚିରଂଜୀବ ମହତାବ ! ମହତାବ ଅଛନ୍ତି । ଏବଂ ଆମେ ବି ତାଙ୍କର ଅନୁରକ୍ତ ଓ ଅନୁଗତ ହୋଇ ସେମିତି ଗୁମ୍‌ଗୁଗିରି କରୁଛୁ । ମହତାବଙ୍କର ଜୟହେଉ । ତାଙ୍କର ଗୁମ୍‌ଗୁମାନଙ୍କର ବି ଜୟହେଉ ।



# ମୁଁ ଓ ଡକ୍ଟର ମହତାବ

## ଡଃ. ନଟବର ସାମନ୍ତରାୟ

ସକାଳ ଛଅଟା—ମହତାବଙ୍କ ନିତ୍ୟକର୍ମ ଲେଖିବାର ସମୟ । ସାକ୍ଷାତ୍‌ରେ ନମସ୍କାର କଲି । ସେ କାଗଜ ଉପରୁ ହାତ ଛାଡ଼ି ମୋ ଆଡ଼କୁ ଚାହିଁ ବସିବାକୁ ନିର୍ଦ୍ଦେଶ ଦେଲେ । କ'ଣ ଭାବି କହିବାକୁ ଆରମ୍ଭ କଲେ, 'ହଁ, ଏଥର ବିଷୁବ ମିଳନରେତ ଆପଣଙ୍କୁ ଦେଖିଥିଲି ।'

'ଯାଇଥିଲି । ନ ଯାଇ ରକ୍ଷା ଅଛି ;' ଅତି ବିନୟରେ ଏତିକି କହି ଆସନ ଗ୍ରହଣ କଲି ।

'ଏ ମାସ ଝଙ୍କାର ନିଶ୍ଚୟ ଦେଖିଥିବେ'—କଥାଟିକୁ ଏମିତି ସେ ଆରମ୍ଭ କଲେ ।

'ଦେଖିଛି ।'

'ମୋ ପ୍ରବନ୍ଧ ଉପରେ ବୋଧହୁଏ ଆଖି ପକାଇଥିବେ ।

'କେବଳ ଝଙ୍କାର ନୁହେଁ, ଓଡ଼ିଶାର ପ୍ରାୟ ସମସ୍ତ ମାସିକ ପତ୍ରିକାରେ ପ୍ରକାଶ ପାଉଥିବା ପ୍ରବନ୍ଧ ବିଭାଗ ଉପରେ ଖାଲି ଆଖି ପକାଏ ନାହିଁ, ଖୁବ୍ ମନଦେଇ ସେଗୁଡ଼ିକର ଚିନ୍ତା ଓ ବିଷୟର ମଧ୍ୟ କରିଥାଏ—।" ମୋର ଏପରି ଉତ୍ତରରେ ଦୃଢ଼ତା ସହ ଆତ୍ମ-ବିଶ୍ୱାସ ଯେପରି ଫୁଟି ଉଠୁଥିଲା ।

'ପ୍ରବନ୍ଧଟି ଆପଣଙ୍କୁ କେମିତି ଲାଗିଲା —'

'ଖୁବ୍ ଭଲ ହୋଇଛି । ଆପଣଙ୍କଠୁଁ ଆମେ ଏମିତି ଉଚ୍ଚଦରର

ଲେଖୀ ସବୁବେଳେ ଆଶା କରିଥାଉଁ ।'—ପ୍ରବନ୍ଧ ଉପରେ ମୋର ଏଇ ସାମାନ୍ୟ ଅନୁଭୂତି କହିଦେଇ ମୁଁ ଯେମିତି ଗୋଟାଏ ନିଶ୍ୱାସ ମାରିଲି ।

ସେ କିନ୍ତୁ ଛାଡ଼ିବାର ଲୋକ ନୁହନ୍ତି । ଆଉ ଅଧିକ କିଛି ଶୁଣିବାପାଇଁ ସେ କହିଲେ, 'ନା, ଏଇଟା ବୋଧହୁଏ ଆପଣଙ୍କର ପୂରା ମତ ନୁହେଁ । ମୋ ଲେଖାରେ କ'ଣ କିଛି ଅଭାବ ଦୁର୍ବଳତା ନାହିଁ ?'

ବେଶ ଅଡୁଆରେ ପଡ଼ିଲି । ଡକ୍ଟର ମହତାବଙ୍କ ପରି ବ୍ୟକ୍ତି—ତାଙ୍କର ଲେଖାକୁ ତାଙ୍କର ସାମନାରେ ସମାଲୋଚନା କରିବ, ମନ କାହିଁକି ଟେକିଲା ନାହିଁ । ଯାହାହେଉ ମନରେ ସାହସ ବାନ୍ଧି କହିବାକୁ ଆରମ୍ଭ କଲି—

'ପ୍ରବନ୍ଧ ପଢ଼ିବାର ଢଙ୍ଗ ମୋର ନିଆରା । ସେଇ ମାନଦଣ୍ଡରେ ମୁଁ ଗୋଟିଏ ପ୍ରବନ୍ଧର ସାରସାର ବିଚାର କରିଥାଏ । ଆପଣ ବହୁ ବର୍ଷର ଜଣେ ପୋଖତ ରାଜନୀତିଜ୍ଞ । ଜୀବନର ବହୁ ଉତ୍‌ଥାପନ-ପତନ ଭିତରେ ଯେତେ ବିଭିନ୍ନ ଲୋକଙ୍କ ସଂସ୍ପର୍ଶରେ ଆସି ଆପଣ ବିବିଧ ଜ୍ଞାନ ଆହରଣ କରି ନିଜର ଦୃଷ୍ଟିକୋଣକୁ ଯେପରି ସଂପ୍ରସାରିତ କରି ପାରିଛନ୍ତି ସେପରି ସୌଭାଗ୍ୟ ଜଣେ ସାଧାରଣ ସାହିତ୍ୟ—ସମାଲୋଚକର ଜୀବନରେ ଘଟିବା ସବୁସମୟରେ ସମ୍ଭବ ନୁହେଁ । ଏଇ ଅଭିଜ୍ଞତା, ଏଇ ସଂପ୍ରସାରିତ ଦୃଷ୍ଟି-କୋଣଟି ଆପଣଙ୍କ ଲେଖାରେ ସ୍ୱତଃ ଆଖିରେ ଧରାପଡ଼େ । ସେଥିପାଇଁ ଲେଖାଟି ଭଲ ହୋଇଛି ବୋଲି ପ୍ରଥମୁଁ କହି ପକାଇଥିଲି, କିନ୍ତୁ—'

କିନ୍ତୁ, କହୁଁ କହୁଁ ମୋର କହିବାର ସ୍ରୋତଟି ଯେମିତି ହଠାତ୍ ବନ୍ଦ ହୋଇଗଲା । ଯାହା କହିବ ବୋଲି ତୁଣ୍ଡରୁ ବାହାରି ପଡ଼ୁଥିଲା ତା' ଉପରେ ସଚେତନ ହୋଇ ପଡ଼ିଲି ।

'ତା ପରେ ? ଅଟକି ଗଲେ ଯେ !' —ମହତାବଜୀ ବିସ୍ମିତ ହୋଇ ମୋ ଆଡ଼େ ଚାହିଁ ଏତକ କହିଲେ ।

ମନର ଭାବକୁ ଦବେଇ ପୁଣି କହିବାକୁ ଆରମ୍ଭ କଲି—,

'ନାହିଁ ଯେ, ପ୍ରବନ୍ଧଟି ଆମୂଳଚୂଳ ନୂତନ ଆଭିମୁଖ୍ୟ ନେଇ ଲେଖା-ଯାଇଛି । ବିଶ୍ୱଭାରତୀ ପରି ଏକ ଜ୍ଞାନପୀଠରେ ବହୁ ପଣ୍ଡିତଙ୍କ ଦ୍ୱାରା

ପ୍ରଶଂସିତ ହେବା ଯଥାର୍ଥ । ସିଦ୍ଧ–ସାହିତ୍ୟ ଠାରୁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ବିକାଶଧାରା ଆପଣଙ୍କ ଲେଖା ପୂର୍ବରୁ କେହି କେହି ସାହିତ୍ୟର ଇତିହାସ ପୁସ୍ତକରେ, ଅନ୍ୟ କେହି କେହି କେତେକ ପ୍ରବନ୍ଧରେ ଦେଖାଇବାକୁ ଚେଷ୍ଟା ନ କରିଛନ୍ତି ନୁହେଁ । ଆପଣଙ୍କ ବିଶ୍ଳେଷଣ ଧାରା କିନ୍ତୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର; ଏଥିରେ ଆପଣଙ୍କ ସ୍ୱାଧୀନ ବିଶ୍ଳେଷଣକୁ ଫୁଟାଇ ଉଠାଇବାକୁ ଆପଣ ଚେଷ୍ଟା କରି ଅଛନ୍ତି । ଲେଖାଟିରେ ଏପରି ମୌଳିକ ଚିନ୍ତନର ଆଭାସ ନଥିଲେ ମୁଁ ତାହା ପ୍ରତି କେବେ ଆକୃଷ୍ଟ ହୋଇ ନଥାନ୍ତି । ତଥାପି—'

'ତଥାପି ଉଚ୍ଚାରଣ ପରେ ମୋ ସ୍ୱରଟି ସ୍ୱତଃ ଧିମେଇ ଗଲା, ମୋର ମନେ ହେଲା କିଏ ଯେମିତି ମୋ ତଣ୍ଟି ଚିପି ଧରିଛି । ଯାହା କହିବାକୁ ଯାଉଛି ତା' କହି ପାରୁନି, ଏ କଥା ମହତାବଙ୍କୁ ବୁଝିବାକୁ ବେଶୀ ସମୟ ଲାଗି ନଥିଲା । ମୋତେ ଆଶ୍ୱାସନା ଦେଇ ସେ କହିଲେ, 'କ'ଣ ଭାବୁଛନ୍ତି, ଦୋ ଦୋ ପାଞ୍ଚ ହେଉଛନ୍ତି କାହିଁକି ? ଯାହା ଭାବୁଛନ୍ତି ନିର୍ଭୟରେ କହନ୍ତୁ ନା...'

କଥାର ମୋଡ଼ ବୁଲାଇ ଅନ୍ୟ କଥାକୁ ମୁଁ ଚାଲିଗଲି । ମୋ ଆସିବାର ଉଦ୍ଦେଶ୍ୟ, ତାଙ୍କଠାରେ ମୋର ଗୋଟିଏ ଅନୁରୋଧ, ଏମିତି ଅନ୍ୟ କିଛି ଛୋଟିଆ ମୋଟିଆ କଥା କହିବା ଭିତରେ ମୋ ମନର ଦ୍ୱନ୍ଦ୍ୱକୁ କେବଳ ଗୋଟିଏ ବାକ୍ୟରେ ପ୍ରକାଶ କରିଦେଇ ତାଙ୍କଠୁ ବିଦାୟ ନେଲି ।

ଶାନ୍ତିନିକେତନରେ ଡକ୍ଟର ମହତାବ ଯେଉଁ ପ୍ରବନ୍ଧଟି ପାଠକରି ଭରି ପ୍ରଶଂସିତ ହୋଇଥିଲେ ତା'ର ନାମ ହେଉଛି, 'ଓଡ଼ିଆ ସାହିତ୍ୟ—ହଜାରେ ବର୍ଷର କାହାଣୀ' । ଏହା ଝଙ୍କାରର ୨୧ ବର୍ଷ ୧ମ ସଂଖ୍ୟା ଅର୍ଥାତ୍ ୧୯୬୯ ସାଲ ଏପ୍ରିଲ ସଂଖ୍ୟାରେ ପ୍ରକାଶ ପାଇଥିଲା । ମହତାବଙ୍କ ସଙ୍ଗେ ମୋର କଥାବାର୍ତ୍ତା ବିଷୁବମିଳନର ପର ସପ୍ତାହରେ ଘଟିଥିଲା ।

ସେଦିନ ଘରକୁ ଫେରି ଆସିଲି ସିନା, ମନଟା କାହିଁକି ଖୁବ୍ ସନ୍ତେଇ ସନ୍ତେଇ ହେବାକୁ ଲାଗିଲା । ସନ୍ଧ୍ୟାବେଳେ ଆଡଭୋକେଟ ରମେଶ ଧଳଙ୍କ

ସଙ୍ଗେ ଦେଖା । ସେ ମୋତେ ଦେଖି ହଠାତ୍ ପଚାରିଲେ, ସାର, ଆପଣ ଆଜ ମହନ୍ତିବାବୁଙ୍କ ପାଖକୁ ଯାଇଥିଲେ କି ?

'ତମେ କେମିତି ଜାଣିଲ ?'—ଅତି ଆଶ୍ଚର୍ଯ୍ୟ ହୋଇ ମୁଁ ପଚାରିଲି ।

'ଆପଣଙ୍କ ଚାଲିଆସିବାର ଦଶ ପନ୍ଦର ମିନିଟ ବାଦେ ମୁଁ ଯାଇଥିଲି ଖୋଦ୍ ଆପଣଙ୍କ ବିଷୟ ନେଇ ।'

'ମହନ୍ତିବାବୁ ମୋ କଥା କ'ଣ କହୁଥିଲେ କି ?' — ବଡ଼ ଉଦ୍‌ବେଗରେ ଏକଥା କହି ଉତ୍ତର ଅପେକ୍ଷାରେ ରହିଲି ।

ଆପଣଙ୍କ ପାଖରେ ସେ ଯାହା କହିବାକୁ ସଙ୍ଗତ ମନେକଲେ ନାହିଁ, ମୋ ହାତରେ ସେ ଖବର ପଠାଇଦେଇଛନ୍ତି । ଶୁଣନ୍ତୁ ସେ କ'ଣ କହିଲେ ।

'ରମେଶ, ନଟବର ବାବୁ ଅବସର ନେବାପରେ କେମିତି ନିଯୁକ୍ତି ପାଇବେ ଏ କଥାରେ ମୁଣ୍ଡ ନ ଖେଳାଇ ସରକାରୀ କାମରୁ ବର୍ତ୍ତମାନ କିପରି ସୁରୁଖୁରୁରେ ବିଦାୟ ନେବେ ତା' ଚିନ୍ତା କରନ୍ତୁ । ତାଙ୍କ ଦେଇ ଚାକିରୀ କେଉଁଠି ହେବନାହିଁ ।'

'ପିଲାଗୁଡ଼ିକ ତାଙ୍କର ଛୋଟ ଛୋଟ, କେହି ପାରି ଉଠି ନାହାନ୍ତି । ତାଙ୍କ ପାଇଁତ ମୁଁ ଏଠାକୁ ଖାସ୍ ଆସିଥିଲି ।'—ଅତି ସନ୍ତର୍ପଣରେ ଏତିକି ମୁଁ ସୁପାରିଶ କଲି ।

ସେ ଟିକିଏ ହସିଦେଇ କହିଲେ, । ନଟବାବୁ ତାଙ୍କ ପିଲାମାନଙ୍କ କଥା ବୁଝନ୍ତି ନା, ଚାକିରୀ କେମିତି ରହି ହେବ ସେ କଥା ଜାଣନ୍ତି । ଯିଏ ପିଲାଙ୍କ କଥା ଭାବେ, ସେ ଚାକିରୀ କଥାରେ ମୁଣ୍ଡ ଖେଳାଏ । ନଟବାବୁଙ୍କ ଏ ଦୁଇ ଘର ଶୂନ ।'

ମୁଁ କହିଲି, । ଆପଣ ତାଙ୍କୁ କିଛି ପଚାରିଥିବେ । ସେ ବୋଧହୁଏ

ଆଗପଛ ବିଚାର ନ କରି ଦୋ ଠା କିଛି କହିଦେଉଛନ୍ତି । ଏଇଥିରେ ଆପଣ ଏମିତି ହେଲେ ଚଳେ ।

'ଚଳିବା ପାଇଁ ଯାହା ନହାତି ଦରକାର, ତାକୁ ଯଦି ଜଣେ ଭୁଲି ଯାଏ ସେଥିରେ କିଏ କ'ଣ କରିବ ?'—ମହିତାବଜୀ ମୋତେ ବୁଝାଇ-ବାକୁ ଆରମ୍ଭକଲେ । ମୋ ଲେଖା ଉପରେ ତାଙ୍କ ମତାମତ ଗୃହୀଁଲିରୁ ସେ ତାକୁ ଖୁବ୍ ପ୍ରଶଂସା କଲେ । ହେଲେ କଥା ପ୍ରସଙ୍ଗରେ । କିନ୍ତୁ', ତଥାପି' କହି ଦୁଇଥର ଅଟକିଗଲେ । ତାଙ୍କ ମନର କଥା ଜାଣିବା ପାଇଁ ମୁଁ ଚେଷ୍ଟାକରି ଯାହା ଶୁଣିଲି ମୁଁ ତ ଏକାବେଳକେ ଅବାକ୍ । ସତ୍ୟଂ ବ୍ରୁୟାତ୍, ପ୍ରିୟଂ ବ୍ରୁୟାତ୍, ନ ବ୍ରୁୟାତ୍ ସତ୍ୟମପ୍ରିୟମ୍— ଏ ମହତ୍ ବାକ୍ୟର ମହତ୍ତ୍ୱ ସେ ଆଜି ପର୍ଯ୍ୟନ୍ତ ଜାଣିପାରିଲେ ନାହିଁ କେମିତି ?'

ଆପଣ ବୋଧହୁଏ ତାଙ୍କୁ କିଛି ଅପ୍ରିୟ କଥା କହିଦେଇଛନ୍ତି ଏହା ଆଶଙ୍କା କରି ମୁଁ ମହିତାବଜୀଙ୍କୁ କହିଲି । ସତ୍ୟଂ ବ୍ରୁୟାତ୍—ଏ ମହା-ବାକ୍ୟକୁ ନଟବାବୁ ନିଜ ସାହିତ୍ୟିକ ଜୀବନରେ ସବୁବେଳେ ସମ୍ମାନ କରି ଆସିଛନ୍ତି । ଆଜି ପ୍ରିୟଂ ବ୍ରୁୟାତ୍ ହେଉଛି ଖୋସାମଦିଆଙ୍କ ସ୍ୱାର୍ଥସିଦ୍ଧିର ଏକ ଅବ୍ୟର୍ଥ ଅସ୍ତ୍ର । ଶେଷ ବାକ୍ୟଟି ହେଉଛି ଘରୁ କାପୁରୁଷ ଟାଉଟର ସୁବିଧାବାଦୀଙ୍କ ଜୀବନର ସର୍ବଶ୍ରେଷ୍ଠ ଅବଲମ୍ବନ । ନଟବାବୁ ଏ ଉଭୟଠାରୁ ସବୁବେଳେ ଦୂରରେ ।'

'ରମେଶ, ମୁଁ ଦେଖୁଛି ତମେ ତମ ଗୁରୁଙ୍କଠାରୁ ଆଉପାଦେ ଆଗରେ । ସେ କ'ଣ କହିଥିଲେ କିଛି ନ ଶୁଣି ମୋ କଥା ଉପରେ ଏତେ ଟୀପ୍ପଣୀ ।'—ଅତି ଗମ୍ଭୀର ହୋଇ ମହିତାବଜୀ କହିଲେ ।

'ନଟବାବୁ କ'ଣ କହିଛନ୍ତି ନ ଶୁଣି ସେ କି ଧରଣର କଥା କହି ଥିବେ ଅନୁମାନ କରିନେବା ମୋ ପକ୍ଷରେ କଷ୍ଟକର ନୁହେଁ । ତାଙ୍କ ଚିନ୍ତା-ଧାରା ସହିତ ପରିଚିତ ହୋଇ ନ ଥିଲେ ମୁଁ ଏପରି କହନ୍ତି କିପରି ? ଏଥର କହନ୍ତୁ ସେ କ'ଣ କହିଥିଲେ ।'

'କଥା ପ୍ରସଙ୍ଗରେ ସେ ଏତିକି କହିଲେ ଯେ ପ୍ରବନ୍ଧ ଭିତରେ ମୁଁ ଯେଉଁ କେତେଜଣଙ୍କ ନାମ ଦେଉଛି ସେଥିରୁ ଜଣଙ୍କୁ ଉଲ୍ଲେଖ କରି ନ ଥିଲେ କ୍ଷତି ତ କିଛି ନ ଥିଲା—ମହାତାବଙ୍କ ବଡ ଅନିଚ୍ଛାରେ ଏ କଥା ପ୍ରକାଶ କଲେ ।

ମୁଁ କହିଲି, 'ସାର୍' ମୁଁ ସେ ପ୍ରବନ୍ଧ ପଢ଼ିଛି । ନଟବାବୁ କଥାଟାକୁ ଠିକ୍ ଧରି ପାରିଛନ୍ତି । ଯେଉଁ ଲୋକ ଆଜି ସୁଦ୍ଧା ଓଡ଼ିଆ ସାହିତ୍ୟରେ ଅଜସ୍ର ଆବର୍ଜନା ତିଆରି କରି ଆସିଛନ୍ତି ତା'ର ଠିକଣିକି ଚଳି ନଟବାବୁ ପ୍ରସ୍ତୁତ କରିଥିବାର ମୁଁ ତାଙ୍କ ଘରେ ଦେଖି ଆସିଛି । ସେ ନିଜେ କ'ଣ ଲେଖୁଛି ଜାଣି ପାରୁ ନାହିଁ, ତା'ର ନିର୍ଦ୍ଦେଶନାରେ ଆପଣ ଲେଖା ପ୍ରସ୍ତୁତ କରିଛନ୍ତି ବୋଲି ସ୍ୱୀକାର କଲେ ଆପଣଙ୍କ ପ୍ରବନ୍ଧର ମୂଲ୍ୟ ଏ ଦେଶ ଲୋକଙ୍କ ଆଖିରେ କିପରି ଧରା ଦେବ ସେ କଥା ତ ଆପଣ ଚିନ୍ତା କଲେ ନାହିଁ । ସେ ନାମଟି ହେଉଛି ଅମୃତ ଭଣ୍ଡରେ ବିଷ ଟୋପା ପରି । ଏପରି ଅପ୍ରିୟ ସତ୍ୟକଥା କହି ନଟବାବୁ ଯେ ଆପଣଙ୍କ ଅବିଚାର ନିକଟରେ ମୁଣ୍ଡ ନୁଆଁଇ ଦେଇ ନାହାନ୍ତି, ଏହା ହେଉଛି ଆମ ସମସ୍ତଙ୍କ ପାଇଁ ମୁଣ୍ଡ-ଟେକି କଥା କହିବାର ଏକ ଅପୂର୍ବ ଆଦର୍ଶ ।

'ତମେ ଠିକ୍ କହୁଛ ରମେଶ ! ଆଜି କି କୋଡ଼ିଏ ବର୍ଷ ହେଲା ମୁଁ ତାଙ୍କର ବିଭିନ୍ନ ଲେଖା ପଢ଼ି ଆସିଛି । ସତ୍ୟକଥା କହିବାର ନିର୍ଭୀକତା ମୁଁ ସର୍ବଦା ଲକ୍ଷ୍ୟ କରିଛି । ତାଙ୍କର ଏ ସ୍ୱାତନ୍ତ୍ର୍ୟ ପାଇଁ ତାଙ୍କୁ ସବୁବେଳେ ମଧ୍ୟ ଭଲ ପାଇ ଆସୁଛି । ତାଙ୍କ ଲେଖା ପ୍ରକାଶ ଦିଗରେ ଝଙ୍କାରର ଦ୍ୱାର ସେଥିପାଇଁ ସର୍ବଦା ଉନ୍ମୁକ୍ତ ।'

× × × ×

ଦୀର୍ଘ ସାତ ବର୍ଷର ହାଇସ୍କୁଲ ଶିକ୍ଷକ ଜୀବନରେ ମୋର ଅଧ୍ୟାପନାର ବିଷୟ ଥିଲା ଗଣିତ ଓ ଭୂଗୋଳ । ୧୯୪୯ ସାଲ ଅକ୍ଟୋବର ମାସରୁ ଆରମ୍ଭହୁଏ ମୋର ଅଧ୍ୟାପକ ଜୀବନ । ଗଣିତ-ଭୂଗୋଳ ଅଧ୍ୟୟନ ସାହିତ୍ୟ ଅଧ୍ୟାପନା କ୍ଷେତ୍ରରେ ବିଶେଷ ଅନୁକୂଳ ନ ଥିଲା । ତେଣୁ ଅଧ୍ୟାପକ

ଜୀବନର ଆରମ୍ଭରୁହିଁ ମୋତେ ଜ୍ଞାନ—ଦାରିଦ୍ର୍ୟ, ହୀନମନ୍ୟତା ଏପରିକି ଗୋଟିଏ ଲକ୍ଷଣ ଅନ୍ତର୍ମୁଖିତାର ଶିକାର ହେବାକୁ ପଡ଼ିଥିଲା । ସେତେବେଳେ କବି ରାଧାମୋହନ ଗଡ଼ନାୟକ, ଡକ୍ଟର ମାୟାଧର ମାନସିଂହ, ପଣ୍ଡିତ ନୀଳକଣ୍ଠ ଦାସ, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ, ଡକ୍ଟର ହରେକୃଷ୍ଣ ମହତାବଙ୍କ ପରି କେତେଜଣ ସୁପ୍ରତିଷ୍ଠିତ ସାହିତ୍ୟିକଙ୍କ ସ୍ନେହ ସଂପର୍କରେ ଆସିବାର ପରମ ସୌଭାଗ୍ୟ ମୁଁ ଲାଭକରିଥିଲି । ଏମାନଙ୍କ ପରୋକ୍ଷ ଓ ପ୍ରତ୍ୟକ୍ଷ ଉତ୍ସାହରେ ମୁଁ ମୋର ସାହିତ୍ୟିକ ଜୀବନର ଗତିପଥକୁ ନିଜେ ହିଁ ପ୍ରସ୍ତୁତ କରି ନେଇଥିଲି । ମୋର ଏହି ପ୍ରସ୍ତୁତି କ୍ଷେତ୍ରରେ ଡକ୍ଟର ମହତାବ ଓ ଝଙ୍କାରର ଭୂମିକା ଥିଲା ଅନନ୍ୟ ସାଧାରଣ । ମୋ ଅଧ୍ୟୟନର ଫଳସ୍ୱରୂପ ସେତେବେଳେ ମୁଁ ଯାହାକିଛି ଚିନ୍ତା କରି ଲେଖୁଥିଲି, ଝଙ୍କାରର ଦ୍ୱାର ମୋ ପାଇଁ ଅବାରିତ ମୁକ୍ତ ନଥିଲେ ମୁଁ ସେ ସବୁ ଦେଶର ବହୁ ସଂଖ୍ୟକ ପାଠକ ପାଠିକାଙ୍କୁ ସହଜରେ ପରିବେଷଣ କରି ପାରିଥାନ୍ତି ବୋଲି ଆଜି ମନରେ ବିଶ୍ୱାସ ହେଉନାହିଁ । ଡକ୍ଟର ମହତାବ ମୋତେ କିପରି ଉତ୍ସାହ ଦେଉଥିଲେ ତାହା ଜାଣିବା ପାଇଁ ତା ୮-୧-୧୯୬୪ରେ ମୋ ପାଖକୁ ଲେଖିଥିବା ପତ୍ରଟି ଏଠାରେ ଅବିକଳ ଉଦ୍ଧାର କରିଦେଉଛି । ସେଥିରେ ସେ ଲେଖିଥିଲେ—

"ଆପଣଙ୍କ ୧୧-୧୨-୬୩ର ପତ୍ର ପାଇଛି । ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ଉତ୍ତର ଦେଇ ପାରି ନାହିଁ । ସେଥିପାଇଁ ଦୁଃଖିତ । ଆପଣଙ୍କର ପ୍ରବନ୍ଧମାନ ମିଳିଛି ଓ ସମୟକ୍ରମେ ସେ ସବୁ ପ୍ରକାଶିତ ହେବ । ବିଷୟ ଓ ପ୍ରବନ୍ଧ ପ୍ରାପ୍ତି ସମୟ ଇତ୍ୟାଦି ନାନା ବିଷୟ ବିଚାର କରି 'ଝଙ୍କାର'ର ପ୍ରତି ସଂଖ୍ୟା କିପରି ବହୁ ସଂଖ୍ୟକ ପାଠକଙ୍କ ରୁଚି ଅନୁକୂଳ ହେବ ସେଥିପାଇଁ ବ୍ୟବସ୍ଥା କରାହୁଏ । ମୁଁ ନିଜେ ରାଜନୀତିରେ ଥିଲେ ମଧ୍ୟ ପ୍ରତିଦିନ କିଛି ସମୟ ଦେଇ ସାହିତ୍ୟ ଦିଗରେ ଯେତିକି ପାରୁଛି କରୁଛି । ଏଣୁ 'ଝଙ୍କାର'ର ମୁଁ ନାମମାତ୍ର ସମ୍ପାଦକ ନୁହେଁ । ମନ୍ତ୍ରୀ ଥିଲା ବେଳେ ମଧ୍ୟ ମୁଁ ନିଜେ ସବୁ ଦେଖୁଥିଲି, ଆଜି ମଧ୍ୟ ଦେଖୁଛି । ବିଭିନ୍ନ ଦିଗରେ ସାହିତ୍ୟର ଉନ୍ନତି ପାଇଁ ଆପଣଙ୍କ ଭଳି ଯେଉଁମାନେ ସାଧନା କରୁଛନ୍ତି, ସମସ୍ତଙ୍କୁ ସାହାଯ୍ୟ କରିବା

ଆମ୍ଭମାନଙ୍କର ଉଦ୍ଦେଶ୍ୟ । ଆପଣ ଦୂରରେ ଥିବାରୁ ଯେ ଆମ ଦୃଷ୍ଟିରୁ ଅନ୍ତର ହୋଇ ଯାଉଛନ୍ତି ତା' ନୁହେଁ । ଆପଣଙ୍କ ସାଧନା ପ୍ରଶଂସନୀୟ ଓ ଆପଣଙ୍କ ଓଡ଼ିଆ ସାହିତ୍ୟକୁ ଦାନ ମଧ୍ୟ ମହତ୍ ।"

ଓଡ଼ିଶାରେ ଡକ୍ଟର ହରେକୃଷ୍ଣ ମହତାବ ହେଉଛନ୍ତି ଜଣେ ବିବାଦାତ୍ମକ ରାଜନୀତିଜ୍ଞ । ଅନେକଙ୍କ ବିଚାରରେ ସେ 'ନରହରି' ରୂପେ ହସ୍ତରେ ତ୍ରିଗୁଣ-ରଜ୍ଜୁ ଧରି ବହୁ 'ମୃଗୀ'କୁ ନଚାଇବାରେ ଏକାନ୍ତ ପାରଙ୍ଗମ । ଅତୀବ ଆଶ୍ଚର୍ଯ୍ୟର କଥା, ରାଜନୀତିଠାରୁ ମୁଁ ସର୍ବଦା ଦୂରରେ ଥିବାରୁ ମୋ ସାଙ୍ଗେ କଥାବାର୍ତ୍ତାବେଳେ ସେ କେବେ ଭୁଲବଶତଃ ମଧ୍ୟ ରାଜନୀତି କଥା ଉଠାଇ ନ ଥାନ୍ତି । ଗତ ତିରିଶ ବର୍ଷ ଭିତରେ ଅଜସ୍ରଥର ତାଙ୍କ ସହିତ ମୋର ଭେଟ ହୋଇଛି । ଏ ପ୍ରତ୍ୟେକ ଭେଟ ବେଳେ ମୋ ଆଗରେ ସେ କେବଳ ଜଣେ ସାହିତ୍ୟିକ ଭାବରେ ଧରାଦେଇଛନ୍ତି— ତାଙ୍କର ତ୍ରିଗୁଣରଜ୍ଜୁ କେବଳ ସ୍ନେହ-ସହାନୁଭୂତି ଉଦାରତାର ତ୍ରିମୂର୍ତ୍ତିରେ ରୂପାନ୍ତରିତ ହୋଇଯାଇଛି । ମୋ ସାହିତ୍ୟିକ ଜୀବନର ଗତିପଥରେ ଏହି ତ୍ରିମୂର୍ତ୍ତି ସନ୍ଦର୍ଶନ କରି ନ ଥିଲେ ତାହା କି ରୂପ ଧାରଣ କରିଥାନ୍ତା ତାହା ଆଜି ମୁଁ ଭାବି ପାରୁ ନାହିଁ ।

ଜୀବନରେ ମୋର ଜ୍ଞାନ-ଆହରଣର ପନ୍ଥା ହେଉଛି ଦୁଇଟି । ବହୁ ବିଷୟକ ପୁସ୍ତକ-ଅଧ୍ୟୟନ ଥିଲା ମୋ ଜ୍ଞାନାର୍ଜନର ସର୍ବଶ୍ରେଷ୍ଠ ଅବଲମ୍ବନ । ଗୁଣୀଜ୍ଞାନୀ ପଣ୍ଡିତମାନଙ୍କ ସଂସ୍ପର୍ଶରେ ଆସି ନିଜର ଦୃଷ୍ଟିକୋଣକୁ ମାର୍ଜିତ ତଥା ସଂପ୍ରସାରିତ କରିବା ହେଲା ଦ୍ୱିତୀୟ ପନ୍ଥା । ମହତାବଜୀଙ୍କ ପ୍ରବନ୍ଧ-ଆଲୋଚନା ପରେ ୧୯୭° ସାଲ ଠାରୁ ମୋ ଆଲୋଚନାର ଧାରାରେ ଯେଉଁ ପରିବର୍ତ୍ତିତ ସ୍ୱର ଶୁଣିବାକୁ ମିଳେ ତାହା ଗତ ୫।୬ ବର୍ଷ ଭିତରେ ପ୍ରକାଶିତ ମୋର ଛଅଟି ପୁସ୍ତକର ବିଭିନ୍ନ ପ୍ରବନ୍ଧରେ ରୂପାୟିତ ହୋଇ-ଅଛି । ଏ ସବୁ ଯେ 'ବ୍ରୁ୍ୟାର୍ ସତ୍ୟମପ୍ରିୟମ୍'ର ଅନ୍ତିମ ପରିଣତି, ଏହା ନିଃସନ୍ଦେହରେ କୁହାଯାଇପାରେ ।

ବାଣୀଭବନ
ସାମନ୍ତରାପୁର
ଭୁବନେଶ୍ୱର-୨

●

# ଗଡ଼ଜାତର ବଂଧୁ ଠକ୍କର ମହତାବ

ବ୍ରଜକିଶୋର ଧଳ

ଦୁନିଆଁରେ ବନ୍ଧୁତ ବହୁତ ପ୍ରକାର ଅଛନ୍ତି, ହେଲେ ପ୍ରକୃତ ବନ୍ଧୁ କିଏ ସେଥିପାଇଁ ମହତ୍ ବାକ୍ୟ ଅଛି—

"ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ଶତ୍ରୁ-ବିଗ୍ରହେ,
ରାଜ ଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସ ବାନ୍ଧବଃ ।"

ଆଜି ସୁଦ୍ଧା ଏ ପ୍ରବଚନର ବୈଧତା ସଂପର୍କରେ କୌଣସି ପ୍ରଶ୍ନ ଉଠିନାହିଁ ବା ତଦନୁରୂପ ବାକ୍ୟ ପ୍ରକାଶ ପାଇନାହିଁ । ମାତ୍ର ବନ୍ଧୁତାର ଢାଞ୍ଚା ଏବେ ଯଥେଷ୍ଟ ବଦଳି ଗଲାଣି । ସବୁ ବନ୍ଧୁତାର ମୂଳରେ ସ୍ୱାର୍ଥ ପୂର୍ତ୍ତି ମାତ୍ରାରେ ଜଡ଼ିତ । ମାତ୍ର ମହାବାକ୍ୟର ଉକ୍ତି ଅନୁସାରେ ଠକ୍କର ମହତାବ ଥିଲେ ଗଡ଼ଜାତ ବାସୀଙ୍କର ଜଣେ ପ୍ରକୃତ ବନ୍ଧୁ । ସେ କିନ୍ତୁ ସେତେବେଳେ ଠକ୍କର ଉପାଧିରେ ଭୂଷିତ ହୋଇନଥିଲେ । ସମସ୍ତେ ତାଙ୍କୁ ମହତାବ ବାବୁ ବୋଲି ସମ୍ବୋଧନ କରୁଥିଲେ ।

ବ୍ରିଟିଶ୍ ବାହୁଚ୍ଛାୟାତଳେ ଗଡ଼ଜାତର ରାଜାମାନେ ଏକଚ୍ଛତ୍ରବାଦ ଚଳାଇ ବହୁକାଳ ପ୍ରଜାମାନଙ୍କୁ ପଶୁଠାରୁ ହୀନ କରି ରଖିଥିଲେ । ୧୯୩୮ ମସିହା ପୂର୍ବରୁ ଠକ୍କର ମହତାବ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟିର ସଦସ୍ୟ ଥିଲେ । ସେତିକିବେଳେ ଗଡ଼ଜାତ ପ୍ରଜାମାନଙ୍କର ଦୁର୍ଦ୍ଦଶା ସଂପର୍କରେ ମହାତ୍ମାଗାନ୍ଧୀ ତଥା ପଣ୍ଡିତ ନେହେରୁ ପ୍ରଭୃତି ନେତୃସ୍ଥାନୀୟ ବ୍ୟକ୍ତି ମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସର୍ବଶ୍ରୀ ବଳବନ୍ତ ରାୟ ମେହେଟ୍ଟା, ଲାଲମୋହନ ପଟ୍ଟନାୟକ ଓ ସାରଙ୍ଗଧର ଦାସଙ୍କୁ ନେଇ ଓଡ଼ିଶା ଗଡ଼ଜାତ ତଦନ୍ତ କମିଟି ଗଠନ କରି ଗଡ଼ଜାତର ନଗ୍ନ ଅତ୍ୟାଚାରର ଚିତ୍ର ସାରା ପୃଥିବୀକୁ ଜଣାଇବା ସଙ୍ଗେ ସଙ୍ଗେ ରାଜା ତଥା ବ୍ରିଟିଶ୍ ଶାସକ ମାନଙ୍କ ମଧ୍ୟରେ ଆନ୍ଦୋଳନ ସୃଷ୍ଟି କରିଥିଲେ । ଅତ୍ୟାଚାରିତ ଗଡ଼ଜାତ-ବାସୀ ଅତ୍ୟାଚାରରୁ ରକ୍ଷା କରିବା! ସେତେବେଳେକୁ ତାଙ୍କର ଥିଲା ମୁଖ୍ୟ

ଉଦ୍ଦେଶ୍ୟ । ଢେଙ୍କାନାଳ ତଥା ଅନ୍ୟାନ୍ୟ ଗଡ଼ଜାତ ଆନ୍ଦୋଳନ ସହିତ ସମ୍ପୃକ୍ତ ଭଳି ନୀଳଗିରି ଓ ତାଳଚେରର ଆନ୍ଦୋଳନକୁ ନିଜ ଦାୟିତ୍ୱରେ ସେ ପରିଚାଳନା କରୁଥିଲେ ।

ନୀଳଗିରି ଲୋକେ ତାଙ୍କୁ କି ଭଳି ବନ୍ଧୁ ଭାବରେ ଦେଖୁଥିଲେ ତାହାର ଗୋଟିଏ ସୂଚନା ଦେଉଛି । ଥରେ ମହତାବ ବାବୁ ନୀଳଗିରିରେ ଗୋଟିଏ ପ୍ରଜା ସଭାକୁ ଯାଉଥିଲେ । ବାଟରେ ଗୋଟିଏ ସ୍ରୋତ ନାଳ ପଡ଼ିବାରୁ ନୀଳଗିରିର ଲୋକେ ତାଙ୍କ ମଟର ସହିତ ତାଙ୍କୁ କାନ୍ଧରେ ବୋହି ନାଳ ପାରି କରିଥିବାର ଶୁଣାଯାଇଥିଲା । ଭାରତ ବିଖ୍ୟାତ ତାଳ-ଚେର ପ୍ରଜାଆନ୍ଦୋଳନର ହିଜରତ କ୍ୟାମ୍ପକୁ ସେ ଠକ୍କର ବାପାଙ୍କ ଭଳି ଭାରତ ବିଖ୍ୟାତ ଜନସେବୀଙ୍କୁ ତଥା ବ୍ରିଟିଶ ଗୁଇନ୍ଦା ବିଭାଗର ଉଚ୍ଚ ଅଫିସର ମାନଙ୍କୁ ଟାଣି ଆଣି ପାରିଥିଲେ । ତଦ୍ଦ୍ୱାରା ରାଜା ଅତ୍ୟାଚାର ପଦାରେ ପଡ଼ିବା ସଙ୍ଗେ ସଙ୍ଗେ ରାଜ୍ୟ ବାହାରେ କ୍ୟାମ୍ପରେ ରହୁଥିବା ଲୋକେ ଭାରତର ବିଭିନ୍ନ ସେବା ସଂସ୍ଥାରୁ ସାହାଯ୍ୟ ପାଉଥିଲେ । ଶେଷରେ ତାଙ୍କର ଚେଷ୍ଟାରେ ନୀଳଗିରି ତଥା ତାଳଚେର ପ୍ରଜା ଆନ୍ଦୋଳନର ଜତା-ପଟ ହୋଇଥିଲା । ରଣପୁର ଲୋକେ ବେଜେଲଗେଟ୍ ସାହେବଙ୍କୁ ମାରି ଦେଲେ । ଏ ଘଟଣାରେ ପ୍ରଜାଙ୍କୁ ଦମନ କରିବା ପାଇଁ ବ୍ରିଟିଶ୍ ଗଭର୍ଣ୍ଣ-ମେଣ୍ଟ ରଣପୁରକୁ ମିଲିଟାରୀ ଆଣାଇବା ଜଣା ପଡ଼ିଗଲା । ସେତେବେଳେ ସେଠାକାର ପ୍ରଜାମାନେ ଯେ ଭଳି ଆତଙ୍କିତ ଅବସ୍ଥାରେ ଥାଆନ୍ତି ତାହା କଳ୍ପନାତୀତ । ବାହାରୁ କେହି ରଣପୁର ରାଜ୍ୟ ଭିତରକୁ ଯିବାକୁ ସାହାସ କରୁ ନ ଥିଲେ । ମାତ୍ର ମହତାବବାବୁ ନିଜ ଜୀବନକୁ ବିପଦାପନ୍ନ କରି ରଣପୁର ଭିତରକୁ ଯାଇ ରାଜ୍ୟରେ ମିଲିଟାରୀ ପହଞ୍ଚିବା ପୂର୍ବରୁ ଲୋକେ ରାଜ୍ୟଗଡ଼ ବାହାରକୁ ପଳାଇବା ପାଇଁ ବୁଲିବୁଲି କହି ବୁଲି ଆସିଥିଲେ ଏ ଭଳି ଦୁଃସାହସିକ କାର୍ଯ୍ୟ ପାଇଁ ବ୍ରିଟିଶର ମାନେ ତାଙ୍କ ବିରୁଦ୍ଧରେ ମୃତ୍ୟୁ ଦଣ୍ଡ ଭୋଗିବା ଭଳି ଅପରାଧ ସୃଷ୍ଟି କରିଥିଲେ । ଏହି ଘଟଣା ନେଇ ଅନେକ ଦଳାଚକଟା ପରେ ଶେଷରେ ମହାତ୍ମାଗାନ୍ଧୀ ଓ ଅନ୍ୟାନ୍ୟ କେତେକ ଶୁଭେଚ୍ଛୁଙ୍କ ସାହାଯ୍ୟତାରେ ସେ ଉକ୍ତ ଅଭିଯୋଗରୁ ମୁକ୍ତ

ହୋଇଥିବାର ଶୁଣାଯାଉଥିଲା । ଉଣପୂର ଗଡ଼ଜାତ ବାସୀଙ୍କ ପକ୍ଷେ ମହତାବ କ ଭଲ ବନ୍ଧୁ ପାଠକେ ଅନୁମାନ କରିବେ । ୧୯୩୮ ସେପ୍ଟେମ୍ବର ୧୨ ତାରିଖରେ ଢେଙ୍କାନାଳ ଟାଉନ୍ ନିକଟ ଅଳସୁଆ ହାଟ ତୋଟାରେ ଢେଙ୍କାନାଳ ପ୍ରଜାମାନଙ୍କ ଉପରେ ସରକାରଙ୍କ ତରଫରୁ ପ୍ରଥମ ଗୁଳି ଚାଳନା ହୋଇଥିଲା । ସେତେବେଳେ ମହତାବବାବୁ ଢେଙ୍କାନାଳକୁ ଦୌଡ଼ିଆସି ପ୍ରଜାମାନଙ୍କୁ ସାନ୍ତ୍ୱନା ଦେଇଥିଲେ ଓ ଏ ଘଟଣା ଭାରତର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ନଜରକୁ ଆଣିଥି ଲେ । ବେସରକାରୀ ଭାବରେ ଗଡ଼ଜାତବାସୀଙ୍କ ପ୍ରତି ଏହି ଭଲ ବନ୍ଧୁତା ପ୍ରଦର୍ଶନ କରି ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହେବାପରେ ଗଡ଼ଜାତର ମୁକ୍ତି ପାଇଁ ସବୁ ପ୍ରକାର ଚେଷ୍ଟା କରି ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କର ସହାୟତାରେ ଓଡ଼ିଶା ଗଡ଼ଜାତର ରାଜାମାନଙ୍କୁ କ୍ଷମତାଚ୍ୟୁତ କରାଇଥିଲେ । ଏହା ପରେ ପରେ ଭାରତର ଅନ୍ୟାନ୍ୟ ଗଡ଼ଜାତ ରାଜାମାନେ କ୍ଷମତାଚ୍ୟୁତ ହେଲେ ଓ ଗଡ଼ଜାତ ସବୁ ଭାରତ ସରକାରଙ୍କ ସହ ସାମିଲ ହେଲା । ଫଳରେ ବିଶାଳ ଉତ୍କଳ ଓ ବୃହତ୍ତର ଭାରତ ଗଠିତ ହୋଇ ପାରିଲା । ଗଡ଼ଜାତ ମିଶ୍ରଣ ପରେ ସେ ସବୁ ଅଞ୍ଚଳର ସୁ ପରିଚାଳନା ପାଇଁ ବିଭିନ୍ନ ଗଡ଼ଜାତର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ନେଇ ମହାତାବବାବୁ ଷ୍ଟେଟ୍ କାଉନ୍ସିଲ ଗଠନ କରି ନିଜେ ସେ କାଉନ୍ସିଲର ଅଧ୍ୟକ୍ଷତା କରିଥିଲେ । ୧୯୩୮ ମସିହା ପରଠାରୁ ୧୯୪୯ ମସିହା ପର୍ଯ୍ୟନ୍ତ ମୁଁ ଓ ମୋର ଅନ୍ୟାନ୍ୟ ଗଡ଼ଜାତ ବନ୍ଧୁମାନେ ତାଙ୍କ ସହିତ ଯେ ଭଲ ବନ୍ଧୁ ଭାବରେ ଚଳି ଆସିଛୁ, ତାହା ଭୁଲି ହେବ ନାହିଁ । ଆଜି ମଧ୍ୟ ମୋ ଭଳି ଅନେକ ଗଡ଼ଜାତବାସୀ ତାଙ୍କ ସଙ୍ଗେ ପତ୍ର ଜରିଆରେ ସମ୍ପର୍କ ସ୍ଥାପନ କରିଛୁ ଓ ବିଭିନ୍ନ ସମୟରେ ତାଙ୍କଠାରୁ ସୁ ପରାମର୍ଶ ପାଉଛୁ । ଭୁଲନ୍ତ ଚିଠିର ଉତ୍ତର ଦେବାରେ ମହତାବବାବୁଙ୍କ ଭଳି ଲୋକ ମୁଁ ଆଜି ଯାଏ ପାଇନାହିଁ ।

ଭାରତ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟି ସଭ୍ୟ, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ବମ୍ବେର ଲାଟ୍ ପରେ ଜନକଂଗ୍ରେସର ଦଳପତି ହିସାବରେ ଆମ୍ଭେମାନେ ତାଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲୁ । ତାଙ୍କର

ମୂଲ୍ୟବାନ୍ ଉପଦେଶ ଏବେ ସୁଦ୍ଧା କାର୍ଯ୍ୟରେ ଲଗା ଯାଉଛି । ତାଙ୍କୁ ଓଡ଼ିଶାର 'ଲୌହମାନବ' କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ପରିଣତ ବୟସ ତଥା ବାତନ୍ତ୍ରୀକ ହୋଇଥିବା ଦୃଷ୍ଟିରୁ ସେ ଅବଶ ବା ଅବସନ୍ନ ହୋଇ ପଡ଼ି ନାହାନ୍ତି ବରଂ ଅତୀବ ଧୈର୍ଯ୍ୟର ସହିତ ଦୈନିକ ସମ୍ବାଦପତ୍ରକୁ ଲେଖା, ଶହ ଶହ ଚିଠିର ଉତ୍ତର, ସରକାରୀ ତଥା ବେସରକାରୀ ସଭା, ସମିତିରେ ଯୋଗଦାନ ଓ ବିଭିନ୍ନ ବହୁ ଅନୁଷ୍ଠାନକୁ ସୁ ପରାମର୍ଶ ଦେଇ ଚାଲିଛନ୍ତି । ଆଜ ମଧ୍ୟ ବଢ଼ି, ମରୁଡ଼ି ବେଳେ ସେ ବିପନ୍ନ ଲୋକମାନଙ୍କ ପାଇଁ ଅକ୍ଲାନ୍ତ ପରିଶ୍ରମ କରୁଛନ୍ତି । ଏ ସବୁ ଦୃଷ୍ଟିରୁ ବିଚାର କଲେ ସେ ଓଡ଼ିଶାର ଅଦ୍ୱିତୀୟ ବ୍ୟକ୍ତି ।

ପ୍ରଭୁଙ୍କ ଠାରେ ପ୍ରାର୍ଥନା ତାଙ୍କର ଅବଶିଷ୍ଟ ଜୀବନ କାଳ ଶାନ୍ତିପ୍ରଦ ହେଉ ।

ଗଙ୍ଗେଶ୍ୱର ଡ଼ହ
ପୋ: ଅ: ଚନ୍ଦ୍ରଶେଖର ପ୍ରସାଦ
ଢେଙ୍କାନାଳ



# ଅସୀମର ପରିକ୍ରମା

ଡାକ୍ତର ଗୌରାଙ୍ଗଚରଣ ମହାପାତ୍ର

ଯାହା ଅନନ୍ତ,–ଅବାନ୍ତ,–ଅସୀମ ଓ ଅଲେଖ ସେ ସବୁର ପରିକ୍ରମା କରିବା ଅସାଧ୍ୟ ବା ଅସମ୍ଭବ ହେଲେ ମଧ୍ୟ-ଇତିହାସର ପୁନରାବୃତ୍ତି ବା ପରିକ୍ରମା କରାଯାଇ ପାରେ । ପ୍ରକୃତରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଅଶେଷ ଗୁଣଗରିମା, ନିଃସ୍ୱାର୍ଥପର, ଜନସେବା, ସ୍ୱଦେଶ ବତ୍ସଳ, ସର୍ବଗୁଣାଳଙ୍କୃତ, ପ୍ରଜାନୁରଞ୍ଜନ, ସୁଶାସକ, କ୍ଷମା, ବିଦ୍ୱାନ, ବାଗ୍ମୀ, ସମାଜ ସଂସ୍କାରକ ଓ ପ୍ରବୀଣ ରାଜନୀତିଜ୍ଞଙ୍କ ମହନୀୟ ଉଦାରତା ଓ ଅସୀମ କୀର୍ତ୍ତିକଳାପର ପରିକ୍ରମା କରିବା ସହଜସାଧ୍ୟ ନୁହେଁ । ଗୀତାରେ କୁହାଯାଇଛି—(ଇଚ୍ଛା ଦ୍ୱେଷ ସୁଖ ଦୁଖ-ସଂଘାତଶ୍ଚେତନାଧୃତିଃ’…) ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ଧୈର୍ଯ୍ୟ ପ୍ରଭୃତି ଧର୍ମ ମନୋବୃତ୍ତି ଓ ଅହଙ୍କାର ବର୍ଜ୍ଜନ, ଇନ୍ଦ୍ରିୟ ବିକାରଶାଳୀ ବ୍ୟକ୍ତିହିଁ ମହାନପୁରୁଷ । ଗୀତାର ନିମ୍ନୋକ୍ତ ପଂକ୍ତି ଗୁଡ଼ିକ ଯଥାର୍ଥରେ ମହତାବଙ୍କ ପାଇଁ ପ୍ରଯୁଜ୍ୟ ବୋଲି କହିଲେ କିଛି ଅତି ରଂଜିତ ହେବନାହିଁ ।

ଅମାନିତ୍ୱ ମଦମ୍ଭିତ୍ୱ ମହିଂସା କ୍ଷାନ୍ତିରାର୍ଜ୍ଜବଂ
ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ ॥
ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମନହଙ୍କାର ଏବଚ
ଜନ୍ମ ମୃତ୍ୟୁ ଜରା ବ୍ୟାଧି ଦୁଃଖଦୋଷାନୁଦର୍ଶନଂ ॥
ଅସକ୍ତିରନଭିଷ୍ୱଙ୍ଗଃ ପୁତ୍ରଦାର ଗୃହାଦିଷୁ
ନିତ୍ୟଞ୍ଚ ସମଚିତ୍ତ ତ୍ୱମିଷ୍ଟାନିଷ୍ଟୋପପତ୍ତିଷୁ ॥
ମୟି ଚାନନ୍ୟ ଯୋଗେନ ଭକ୍ତିରବ୍ୟଭିଚାରିଣୀ
ବିବିକ୍ତଦେଶ ସେବିତ୍ୱଂ ତତ୍ତ୍ୱଜ୍ଞାନାର୍ଥ ଦର୍ଶନଂ
ଏତଜ୍ ଜ୍ଞାନମିତି ପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା ॥—

ମହତାବ ରାଜପରିବାରର ବୈଭବର ପ୍ରାଚୁର୍ଯ୍ୟମଧ୍ୟରେ ଜନ୍ମଲାଭ କରିଥିଲେହେଁ—ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ, ଦେଶ ଓ ଜାତି ପାଇଁ ସର୍ବସ୍ୱ ତ୍ୟାଗ କରି, କେତେ ଦୁଃଖ କଷ୍ଟ, ନାନାଦି ନିର୍ଯ୍ୟାତନା ଭୋଗ କରିଛନ୍ତି । ପ୍ରକୃତରେ ସେଭଳି ସଂଗ୍ରାମ ଓ ସାଧନାର ପଟାନ୍ତର ନାହିଁ । × × ×

## ଓଡ଼ିଶା ପ୍ରତି ପ୍ରକୃତିର ଅବଦାନ

ପୁରାଣ ପ୍ରସିଦ୍ଧ ଦେବଭୂମି ଓଡ଼ିଶାର ଐତିହ୍ୟ ପରମ୍ପରା ଜଗତ ବିଖ୍ୟାତ ହେଲେହେଁ ବ୍ରିଟିଶ ମାନଚିତ୍ରରେ ଓଡ଼ିଶାର ଅବସ୍ଥିତିକୁ ଅବଜ୍ଞା କରାଯାଇଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀ ବା ଇଂରେଜ ସରକାର ୪ବର୍ଷ ପଛରେ ଓଡ଼ିଶାକୁ ଦଖଲ କରିଥିବାରୁ ଓଡ଼ିଶାର ସ୍ୱାତନ୍ତ୍ର୍ୟ ବିଲୋପ କରିଦେଇଥିଲେ । ପ୍ରତିଶୋଧ ମନୋବୃତ୍ତି ନେଇ ଓଡ଼ିଶାକୁ ଶତଧା ବିଭକ୍ତ କରି ମାନ୍ଦ୍ରାଜ, ମଧ୍ୟପ୍ରଦେଶ (ଛୋଟନାଗପୁର) ବିହାର, ବଙ୍ଗଳା ସହିତମିଶାଇ ଦେଇଥିଲେ ।··· ସେତେବେଳେ ଖାଲି କବି ଅବଶୋଷରେ ଗାଇଥିଲେ—

"ଗୋଦାବରୀଠାରୁ ଗଂଗାଯାଏ ବ୍ୟାପୀ
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି ।"

ଉତ୍କଳ ଗୌରବ ମଧୁସୂଦନ, ପାରଳାଖେମୁଣ୍ଡି ମହାରାଜା, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ଉତ୍କଳକେଶରୀ ମହତାବ ପ୍ରମୁଖ ଓଡ଼ିଶାରେ ଜନ୍ମଗ୍ରହଣ କରିନଥିଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହୋଇ ପାରିନଥାନ୍ତା । ଉତ୍କଳ ସମ୍ମିଳନୀର ଆନ୍ଦୋଳନ ବେଳକୁ ୧୯୨୧ ମସିହା ବେଳକୁ ମହତାବଜୀ ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ କଂଗ୍ରେସରେ ଯୋଗ ଦେଇସାରିଥିଲେ ଓ କଂଗ୍ରେସର ନାଗପୁର ଅଧିବେଶନରେ ଭାଷାଭିତ୍ତିରେ ପ୍ରଦେଶଗଠନ ପ୍ରସ୍ତାବ ଗୃହୀତ ହେବାପରେ ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ଘୋଷଣା ପ୍ରକାଶ ପାଇଲା ।

## ବିଶାଳ ଉତ୍କଳର ବାସ୍ତବ ପ୍ରତିଷ୍ଠାତା

ଓଡ଼ିଶା ବୋଇଲେ ସେତେବେଳେ ମୁଖ୍ୟତଃ କଟକ ପୁରୀ, ବାଲେଶ୍ୱରକୁ ବୁଝାଉଥିଲା । ତାପରେ ସମ୍ବଲପୁର ଓ ଶେଷରେ ଗଞ୍ଜାମ

କୋରାପୁଟ ଓଡ଼ିଶାରେ ମିଶିଲା । ଓଡ଼ିଶାର ୩୬ଟି ଗଡ଼ଜାତକୁ କରଦ ରାଜ୍ୟ ଆଖ୍ୟା ଦିଆଯାଇ ଉପରୋକ୍ତ ଜିଲ୍ଲାଗୁଡ଼ିକୁ ମୋଗଲବନ୍ଦୀ କୁହାଯାଉଥିଲା । × × × ଚତୁର ଓ ପ୍ରବୀଣ ରାଜନୀତିଜ୍ଞ ମହତାବଙ୍କ ଦୂରଦୃଷ୍ଟି ଯୋଗୁଁ ବିଶାଳ ଉତ୍କଳ ପ୍ରତିଷ୍ଠା ସମ୍ଭବ ହୋଇ ପାରିଛି ।

## ଦେଶୀୟରାଜ୍ୟ ମିଶ୍ରଣ

ଗାନ୍ଧୀଜୀଙ୍କ ନେତୃତ୍ୱରେ ଏ ଦେଶରେ ସ୍ୱାଧୀନତା ସଂଗ୍ରାମର ନିଆଁ ହୁ ହୁ ଜଳୁଥିବାବେଳେ ଗଡ଼ଜାତରେ ପ୍ରଜାଆନ୍ଦୋଳନ ଦ୍ୱାରା ମନମୁଖୀ ହୁକୁମଶାହୀ, ଅବାଧ ଗଡ଼ଜାତ ଶାସନର ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ପ୍ରଜା ଆନ୍ଦୋଳନ ଅତି ପ୍ରଖର ହୋଇ ଉଠିଥିଲା । ନିଖିଳଭାରତ କଂଗ୍ରେସ କମିଟି ଦ୍ୱାରା ଯେଉଁ ଦେଶୀୟରାଜ୍ୟ କମିଟି ଗଢ଼ା ଯାଇଥିଲା—ତହିଁରେ ବଳବନ୍ତ ରାଓ ମେହେଟା ସଭାପତି ଓ ମହତାବଙ୍କ ସମ୍ପାଦକ ଥିଲେ । + + + ଇଂରେଜ ସରକାର ଏଦେଶରୁ ଗଲାବେଳେ ଭାରତର ଅଖଣ୍ଡତାକୁ ବିପନ୍ନ କରି ଛିନ୍ନଛିନ୍ନ କରିବାର ବାଟ ଖୋଲି ଦେଇଗଲେ । ଫଳରେ ଦେଶ (ପାକିସ୍ଥାନ ଓ ଭାରତ) ବିଭାଜିତ ହେଲା ଓ ଇଂରେଜମାନେ ୫୦୦ କରଦରାଜ୍ୟକୁ ସାର୍ବଭୌମ ସ୍ୱତନ୍ତ୍ର ଦେବା ଫଳରେ ଦେଶର ରାଜା ମହାରାଜାମାନେ ମନମୁଖୀଶାସନ ଦ୍ୱାରା ଭାରତର ଏକତା ସଂହତି ବିଲୋପ କରିବାକୁ ତତ୍ପର ହେଲେ । ସେତେବେଳେ ଯଦି ଲୌହ-ମାନବ ସର୍ଦ୍ଦାର ପଟେଲ ଦେଶୀୟରାଜ୍ୟ କମିଟିର ପ୍ରସ୍ତାବକୁ କାର୍ଯ୍ୟକାରୀ କରିନଥାନ୍ତେ ତେବେ ଏଦେଶର ରାଜନୈତିକ ମାନଚିତ୍ର ସଂପୂର୍ଣ୍ଣ ଅଲଗା ହୋଇଯାଇଥାନ୍ତା । + + + ସର୍ଦ୍ଦାର ପଟେଲ ଗଡ଼ଜାତ ମିଶ୍ରଣର ଜୟଯାତ୍ରା ଆରମ୍ଭ କରିବା ପୂର୍ବରୁ ଡକ୍ଟର ମହତାବ ଓଡ଼ିଶାରେ ନୀଳଗିରି ପ୍ରଭୃତି ଗଡ଼ଜାତର (ମିଶ୍ରଣ) ଶାସନ ଦାୟିତ୍ୱ ନିଜହାତକୁ ନେଇସାରିଥିଲେ । ତାପରେ ପଟେଲଜୀ ଆସିଲେ ଓ ବିଧିବଦ୍ଧ ଭାବରେ ଓଡ଼ିଶାର ଗଡ଼ଜାତ ଗୁଡ଼ିକୁ ଓଡ଼ିଶାରେ ମିଶାଇ ଦେଇ ରାଜା ମହାରାଜାଙ୍କ ଅବାଧ ଶାସନର ବିଲୋପ ହେଲା । କହିବାବାହୁଲ୍ୟ ନୁହେଁ ଯେ, ଦେଶରାଜ୍ୟ ମିଶ୍ରଣ ପାଇଁ ମହତାବଙ୍କ ନେତୃତ୍ୱରେ ଓଡ଼ିଶା ପଥପ୍ରଦର୍ଶକ ହେଲା ।

## କ୍ୟାବିନେଟ ମିଶନ

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଇଂରେଜ ସରକାରଙ୍କର ଗୋଟିଏ ପାର୍ଲିଆମେଣ୍ଟାରୀ ମିଶନ ଭାରତକୁ ଆସିଥିଲେ । ତାପରେ ଆସିଲେ କ୍ୟାବିନେଟ୍ ମିଶନ । ସିମିଳାରେ ଏହି ବ୍ରିଟିଶ ମନ୍ତ୍ରୀପରିଷଦ ମହାତ୍ମାଗାନ୍ଧି, ପଣ୍ଡିତ ନେହୁରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ ପ୍ରଭୃତି କଂଗ୍ରେସ ଓ୍ୱାର୍କିଂ କମିଟି ମେମ୍ବରମାନଙ୍କ ସହିତ ସ୍ୱାଧୀନତା ସମ୍ପର୍କରେ ଆଲୋଚନା ଚଳାଇଲେ । ନେହୁରୁ, ପଟେଲ, ଆଜାଦ ପ୍ରଭୃତି ନେତାମାନେ କ୍ୟାବିନେଟ୍ ମିଶନକୁ "ଭାରତଛାଡ଼" ପ୍ରସ୍ତାବ ଦେଲେ । ମାତ୍ର ଡକ୍ଟର ମହତାବ କ୍ୟାବିନେଟ୍ ମିଶନକୁ ଅତି ଦୃଢ଼ଭାବରେ କହିଲେ, "ଇଂରେଜ ସରକାର ଭାରତଛାଡ଼ି ଯିବା ପାଇଁ ପ୍ରସ୍ତୁତ ହେଲେଣି । ଭାରତଛାଡ଼ି ଗଲାବେଳେ ଦେଶୀୟ ରାଜ୍ୟଗୁଡ଼ିକୁ ଭାରତସହିତ ମିଶାଇ ଦେଇଯାଆନ୍ତୁ ।" ମହତାବବାବୁ ଅଟିଲ କମିଟୀର ରିପୋର୍ଟକୁ ଉଲ୍ଲେଖ କରି ଓଡ଼ିଶା ସହିତ ଓଡ଼ିଶା ଗଡ଼ଜାତ ଗୁଡ଼ିକ ଶୀଘ୍ର ମିଶାଇ ଦେବା ବାଞ୍ଛନୀୟ ବୋଲି ଦୃଢ଼ଦାବୀ ଜଣାଇ ଏକ ସ୍ମାରକପତ୍ର ଦେଇଥିଲେ । ଏଥିଦ୍ୱାରା ବ୍ରିଟିଶ କ୍ୟାବିନେଟ ମିଶନ ମହତାବଙ୍କୁ ଜଣେ ଅତି ପ୍ରବୀଣ ଓ ଚତୁର ରାଜନୀତିଜ୍ଞ ବୋଲି ସମ୍ମାନ ପ୍ରଦର୍ଶନ କରିଥିଲେ ସାର ଷ୍ଟାଫୋର୍ଡ କ୍ରିପ୍ସ ଭଳି ବରିଷ୍ଠ ରାଜନୀତିଜ୍ଞ ମହତାବଙ୍କୁ ମଧ୍ୟାହ୍ନଭୋଜନକୁ ଡାକି ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ।

## ମଧ୍ୟବର୍ତ୍ତୀ କାଳୀନସରକାର

ଇଂରେଜ ସରକାର ଭାରତ ଛାଡ଼ି ଯିବା ପୂର୍ବରୁ ଯେଉଁ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନର ପ୍ରସ୍ତାବ ଦେଲେ ତନ୍ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ନାମ ବାଛୁଥିଲେ । ମାତ୍ର ମହାତ୍ମାଗାନ୍ଧିଙ୍କ ଅନୁରୋଧ କ୍ରମେ ମହତାବବାବୁ ବ୍ରିଟିଶ ସରକାରଙ୍କୁ ଚିଠି ଲେଖିଲେ—ମୋ ସ୍ଥାନରେ ଶରତଚନ୍ଦ୍ର ବୋଷଙ୍କୁ ମଧ୍ୟବର୍ତ୍ତୀକାଳୀନ ସରକାରରେ ନିଅନ୍ତୁ । ସେତିକିବେଳେ ସାରାବିଶ୍ୱରେ ମହତାବ ଜଣେ ଚତୁର ରାଜନୀତିଜ୍ଞ ବୋଲି ପ୍ରମାଣିତ ହୋଇଥିଲେ । ମହାତ୍ମାଗାନ୍ଧି ଏଥିଯୋଗୁଁ ଡକ୍ଟର ମହତାବଙ୍କୁ ଭୂୟସୀ ପ୍ରଶଂସା କରିଥିଲେ ।

## ଫାସୀ ମୁଁହରୁ ମୁକ୍ତ

ଦେଶ ଓ ଜାତିପାଇଁ ମହତାବଙ୍କ ଯେଉଁ ଅସୀମ ତ୍ୟାଗ, ଦୁଃଖ କଷ୍ଟ ଓ ନର୍ଯ୍ୟାତନା ଭୋଗିଛନ୍ତି ତାହା ବର୍ଣ୍ଣନା କରିବା ସହଜସାଧ୍ୟ ବ୍ୟାପାର ନୁହେଁ । ସଶ୍ରମ କାରାଦଣ୍ଡଠାରୁ ଆରମ୍ଭ କରି—ଭୋକ ଉପାସରେ, ଏପରିକ ଦ୍ୱ’ ପଇସାର ଚୋରଣୀକୁ ୮ କଚ୍ଛଣା କରି ପାଣିଗ୍ରାହ୍ମ ଓ ସେ ଦୁହେଁ ବାଣ୍ଟି ପିଇ ଜୀବନ ବଞ୍ଚାଇ ଦେଶସେବା କରିବାକୁ କ୍ଷାନ୍ତ ହୋଇନାହାନ୍ତି । ମହତାବଙ୍କ ଯୁବକ ଅବସ୍ଥାରେ ଯେଉଁ “କନକାମେଳ” (ପ୍ରଜାଆନ୍ଦୋଳନ) ହୋଇଥିଲା ସେଥିରେ ମହତାବଥିଲେ ଅନ୍ୟତମ ସାରଥୀ । କନକାରାଜା ଓ ଆଉ କେତେଜଣ ଜମିଦାର ଚକ୍ରାନ୍ତ କରି ମହତାବବାବୁଙ୍କ ନାମରେ ମିଥ୍ୟା ମୋକଦ୍ଦମା କରି ନାନାଦ ହାନ ଚକ୍ରାନ୍ତ କରିଥିଲେହେଁ ମହତାବବାବୁ ନିର୍ଦ୍ଦୋଷରେ ଖଲାସ ହେଲେ । × × ଗଡ଼ଜାତର ପ୍ରଜାଆନ୍ଦୋଳନରେ ରଣପୁରରେ ପଲିଟିକାଲ ଏଜେଣ୍ଟ ବ୍ରଜଲଗେଟ ହତ୍ୟା ଅପରାଧରେ ମହତାବଙ୍କୁ ଫାସୀ ଦେବା ପାଇଁ ବିରାଟ ଷଡଯନ୍ତ୍ର ହୋଇଥିଲା । ମାତ୍ର ତତ୍କାଳୀନ ଗଭର୍ଣ୍ଣର ଓ ମୀରମେନଙ୍କ ଯୋଗୁଁ ସେ ମର୍ଡରକେଶରୁ ମୁକ୍ତ ପାଇଲେ ।

## ଭାରତରେ ଦ୍ୱିତୀୟ

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଲବଣସତ୍ୟାଗ୍ରହ ଏ ଦେଶରେ ହୋଇଥିଲା ତହିଁରେ ଓଡ଼ିଶାର ଲବଣସତ୍ୟାଗ୍ରହ ଅନ୍ୟତମ । ଅର୍ଥାତ୍ ଓଡ଼ିଶାର ଆନ୍ଦୋଳନ ୨ୟ ସ୍ଥାନ ଅଧିକାର କରିଥିବାରୁ ଗାନ୍ଧିଜୀ ମହତାବଙ୍କୁ ଧନ୍ୟବାଦ ଜଣାଇଥିଲେ । ଅସ୍ପୃଶ୍ୟତା ନିବାରଣ ପାଇଁ ଗାନ୍ଧିଜୀ ଯେତେବେଳେ ହରିଜନ ପଦଯାତ୍ରା ଓଡ଼ିଶାରେ ଆରମ୍ଭ କରିଥିଲେ ସେତେବେଳେ ମହତାବବାବୁଙ୍କ ସଙ୍ଗଠନ ଶକ୍ତିରେ ଗାନ୍ଧିଜୀ ଅତିଶୟ ମୁଗ୍ଧ ହୋଇ ଓଡ଼ିଶାର ଦାରିଦ୍ର୍ୟ ଦୂର କରିବା ପାଇଁ ଓ ସେବାକାର୍ଯ୍ୟ ପାଇଁ କେତେ ଗୁଡ଼ିଏ ପରିକଳ୍ପନା ମହତାବଙ୍କଙ୍କ ସହାୟତାରେ ଆରମ୍ଭ କରି ଦେଇଥିଲେ ।

## ରାଜେନ୍ଦ୍ର ପ୍ରସାଦଙ୍କୁ କୈଫିୟତ

ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ପରେ ପରେ ଭାରତରେ ଅନ୍ୟାନ୍ୟ ଦେଶୀୟ ରାଜ୍ୟର ମିଶ୍ରଣ ହୋଇଥିଲେ ହେଁ ହାଇଦ୍ରାବାଦ ଭଳି ଅଳ୍ପ କେତୋଟି କରଦଷ୍ଟେଟ ମିଶିନଥିଲା। ତନ୍ମଧ୍ୟରୁ ମୟୂରଭଞ୍ଜ ଓଡ଼ିଶାରେ ନମିଶି ସାର୍ବଭୌମ ସ୍ୱତନ୍ତ୍ରତା ଘୋଷଣା କରିଥାଏ। ମୟୂରଭଞ୍ଜକୁ ଓଡ଼ିଶାରେ ମିଶାଇବାକୁ ମହତାବବାବୁ ନାନା ପ୍ରକାର ଉଦ୍ୟମ ଓ ଚେଷ୍ଟା ଚଳାଇ-ଥାନ୍ତି। ଏଣେ ହାଇଦ୍ରାବାଦ ପ୍ରଭୃତିର ମିଶ୍ରଣ ପାଇଁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଲାଗିଥାନ୍ତି। ମୟୂରଭଞ୍ଜ ଷ୍ଟେଟ ନିଜକୁ ସାର୍ବଭୌମସ୍ୱତନ୍ତ୍ରତା ଘୋଷଣାକରି ସେଠାରେ ଲୋକପ୍ରତିନିଧି ସରକାର ଗଢ଼ିବାକୁ ଲାଗିଲେ। ମୟୂରଭଞ୍ଜର ନୂତନ ବିଧାନସଭା (ସଖୀକୁଣ୍ଡେଇ ସରକାର)ଙ୍କୁ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଅଭିନନ୍ଦନ ଜ୍ଞାପନ କରି ଗୋଟିଏ ବାର୍ତ୍ତା ପଠାଇଦେଲେ। ସେତେବେଳେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଶାସକ ବିଧାୟକ ସଭାର ସଭାପତି ଥିଲେ। ତେଣୁ ତାଙ୍କର ଏଭଳି "ବାର୍ତ୍ତା" ମିଶ୍ରଣର ସଂପୂର୍ଣ୍ଣ ବିରୋଧୀ ବୋଲି ପ୍ରତୀତ ହେବାରୁ ମହତାବବାବୁ ଏ ବିଷୟ ସଙ୍ଗେ ସଙ୍ଗେ ପଣ୍ଡିତ ନେହରୁ, ସର୍ଦ୍ଦାର ପଟେଲ, ମୌଲନା ଆଜାଦ ପ୍ରଭୃତିଙ୍କୁ ଜଣାଇଲେ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କର ଏତାଦୃଶ ମିଶ୍ରଣ ବିରୋଧୀ କାର୍ଯ୍ୟ ବିଷୟ ଉତ୍ଥାପନ କଲେ। ଏଥିପାଇଁ ଡକ୍ଟର ପ୍ରସାଦଙ୍କୁ କୈଫିୟତ ତଲପ କରାଯାଇଥିଲା ଓ ସର୍ଦ୍ଦାର ପଟେଲ ଏଥିପାଇଁ ରାଜେନ୍ଦ୍ର ପ୍ରସାଦଙ୍କୁ ମଧ୍ୟ ଭର୍ତ୍ସନା କରିଥିଲେ। × × × ଯାହାହେଉ, ଚତୁର ରାଜନୀତିଜ୍ଞ ଡକ୍ଟର ମହତାବଙ୍କ ରାଜନୈତିକ କୌଶଳ କ୍ରମେ ମୟୂରଭଞ୍ଜ ଓଡ଼ିଶାରେ ମିଶିଗଲା।

## ଯୁଦ୍ଧପର ପୁନଗଠନ

୧୯୪୬ ମସିହାରେ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନ-ମନ୍ତ୍ରୀ ହେଲେ। ସେତେବେଳେ ଏ ଦେଶରେ ଇଂରେଜ ସରକାର ଯୁଦ୍ଧପର ପୁର୍ନଗଠନ ଯୋଜନା ନାମରେ ଗୋଟିଏ ଯୋଜନା ଚାଲୁ କରିଥାନ୍ତି।

ତଦନୁଯାୟୀ ଓଡ଼ିଶାର ପ୍ରାପ୍ୟ ଅତି ସୀମିତ ଥିଲା ··· ସେତେବେଳେ ଓଡ଼ିଶାରେ ଗୋଟିଏ ଟେକ୍ସଟାଇଲ ମିଲ୍ ବସିବା ପଡ଼ିଥିଲା । ଆମ ଦେଶରେ ଅହମଦାବାଦରେ ବେଶୀ ଲୁଗାକଳ ଥିଲେ ମଧ୍ୟ ଏ କଳ ଓଡ଼ିଶାରେ ନ ବସୁ ବୋଲି ବମ୍ବେର କଳମାଲିକମାନେ ଚକ୍ରାନ୍ତ ଚଳାଇଥାନ୍ତି । ମହତାବବାବୁ ଏକଥା ଜାଣିପାରି ଓଡ଼ିଶା ଟେକ୍ସଟାଇଲ ମିଲ ବସାଇବାକୁ ଉଦ୍ୟମ କଲେ । ବମ୍ବେର ଭିତ ବଡ଼ ବଡ଼ ନେତା । ସେମାନେ ଅପପ୍ରଚାର ଚଳାଇଲେ ଯେ ମହତାବ କଂଗ୍ରେସ ୱାର୍କିଂ କମିଟୀର ସଦସ୍ୟ ଓ ଗାନ୍ଧି-ବାଦୀ ହୋଇ ଲୁଗାକଳ ବସାଉଛନ୍ତି କିପରି ? ଏକଥା ମଧ୍ୟ ମହାତ୍ମାଗାନ୍ଧିଙ୍କ କାନକୁ ଗଲା । ମହତାବବାବୁ ସେମାନଙ୍କୁ ଅତି ରୂକ୍ଷସ୍ୱରରେ କହିଥିଲେ— ବମ୍ବେ, କଲିକତା ପ୍ରଭୃତିରେ ଟେକ୍ସଟାଇଲ ମିଲ୍ ବଢୁଥିବା ବେଳେ ଯୁଦ୍ଧପର ପୁନର୍ଗଠନ ଯୋଜନାରେ ଓଡ଼ିଶା ଭାଗରେ ଯେଉଁ ମିଲଟି ପଡ଼ିଛି ତାହାକୁ ଅନ୍ୟତ୍ର ନେବା ଆଳରେ ଏଭଳି ପ୍ରଚାରରେ ମୁଁ ଦବି ଯିବି ନାହିଁ । ଟିଏ ଶାସନରେ ରହିବେ ତାଙ୍କର ସର୍ବପ୍ରଥମ ଓ ମୌଳିକକାର୍ଯ୍ୟ ହେଲା ଦାନାକନାର ଅଭାବ ମେଣ୍ଟାଇବା । ତେଣୁ ଏଠାରେ ଲୁଗା କଳ ବସିଲେ ଗାନ୍ଧିନୀତିର କୌଣସି ଖିଲାପ ହେବ ନାହିଁ ।

## ନୂଆ ରାଜଧାନୀ ଓ ହୀରାକୁଦ

ମହତାବ ବାବୁ ଶାସନ ଦାୟିତ୍ୱ ନେବା ବେଳକୁ ଓଡ଼ିଶାରେ ଚାଲିଥାଏ "ଜୁଡ଼ୁମା ଆମର" ଆନ୍ଦୋଳନ ।········ ତାପରେ ହୀରାକୁଦ ଯୋଜନା ଆରମ୍ଭ ହେବା ମାତ୍ରେ ଚାଲିଲା ଢୁମୁକ ପ୍ରତିବାଦ । "ଜୁଡ଼ୁମା" ଆନ୍ଦୋଳନର ପ୍ରତିହତ ପରେ ମହାନଦୀରେ ହୀରାକୁଦ ବନ୍ଧ ନିର୍ମାଣର ସମସ୍ତ ବାଧାବିଘ୍ନ ଦୂର କରି ଓଡ଼ିଶାର ଭାଗ୍ୟ ବଦଳାଇ ଦେଇ ପାରିଛନ୍ତି । ଖାଲି ହୀରାକୁଦ ନିର୍ମାଣ ପାଇଁ ମହତାବବାବୁଙ୍କ ନାମ ସ୍ୱର୍ଣ୍ଣା କ୍ଷରରେ ଲେଖା ହୋଇ ରହିବ ନାହିଁ—ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା କରି ମହତାବଜୀ ଯଯାତିଙ୍କ ଭଳି ଇତିହାସରେ ଅମରତ୍ୱ ଲାଭ କରିଛନ୍ତି । ଓଡ଼ିଶାରେ ହାଇକୋର୍ଟ ପ୍ରତିଷ୍ଠା, କଟକବେତାର କେନ୍ଦ୍ର ପ୍ରତିଷ୍ଠା ପ୍ରଭୃତି ସର୍ବବିଧ ଉନ୍ନୟନ କାର୍ଯ୍ୟ ପାଇଁ ମହତାବଙ୍କ ନାମ

ଇତିହାସରେ ପ୍ରାଧାନ୍ୟ ଲାଭ କରିବ । ଖାଲି ସେତିକି ନୁହେଁ—କେବଳ ଭାରତରେ କାହିଁକି ଓଡ଼ିଶାକୁ ସମଗ୍ର ବିଶ୍ୱଦରବାରରେ ସମକକ୍ଷ ଓ ସୁପରିଚିତ କରିବାରେ ମହତାବଙ୍କ ଅବଦାନ ଚିରସ୍ମରଣୀୟ ହୋଇ ରହିବ ।

## ପ୍ରଥମ ଓଡ଼ିଆ

କଂଗ୍ରେସ କାର୍ଯ୍ୟକାରୀ କମିଟିର ପ୍ରଥମ ଓଡ଼ିଆ ସଦସ୍ୟ ହେଉଛନ୍ତି ଡକ୍ଟର ମହତାବ । ସେ ହେଉଛନ୍ତି ପ୍ରଥମ କେନ୍ଦ୍ର ମନ୍ତ୍ରୀ । ସେ ପ୍ରଥମ ଓଡ଼ିଆ ରାଜ୍ୟପାଳ, ସେକ୍ରେଟେରୀ ଜେନେରାଲ ଓ କଂଗ୍ରେସପାର୍ଲିଆମେଣ୍ଟାରୀ ଦଳର ଉପଦଳପତି । ପ୍ରଥମ ଓଡ଼ିଆ ଅନ୍ୟ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ଲାଭ କରିବା । ରାଜ୍ୟଗୋଷ୍ଠୀ ସମ୍ମିଳନୀରେ ପ୍ରଥମ ଓଡ଼ିଆଙ୍କ ପ୍ରତିନିଧିତ୍ୱ କରିବା ।

## ଜଳନ୍ତା ନିଆଁ

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କ ନିକଟକୁ ମହତାବବାବୁଙ୍କ ଅଜାଣତରେ ଗୋଟିଏ ଫାଇଲ ଯାଇଥିଲା । ରାଜଗୋପାଳାଚାରୀ ତାହା ପଢ଼ିସାରି ଫାଇଲ ଉପରେ ଲେଖିଦେଲେ—"ନିଆଁ ସହିତ ଖେଳନାହିଁ ।" ପ୍ରକୃତରେ ସେ ସୃଷ୍ଟିକର୍ତ୍ତା ଓ ସଂହାରକର୍ତ୍ତା ମଧ୍ୟ । ସେ ଅସମ୍ଭବକୁ ସମ୍ଭବ କରି ପାରନ୍ତି । ଦୁବକୁ ଦାରୁ ମଧ୍ୟ କରିଦେଇ ପାରନ୍ତି । ପ୍ରକୃତରେ ସେ ହେଉଛନ୍ତି କରିତ୍କର୍ମା ।

## ସୁଶାସକ

୧୯୪୬ ମସିହାରେ ମହତାବବାବୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲା-ବେଳେ ଚାରିଆଡେ ସାଂପ୍ରଦାୟିକ ଦଂଗା ହାଂଗାମା ଚାଲିଥାଏ । କଲିକତାରେ "ଡାଇରେକ୍ଟ ଆକ୍ସନ ଡେ" ପାଳନ ହେବା ପୂର୍ବରୁ ମୁସଲିମ ଲିଗ ତରଫରୁ ଯୋଗାଡ ଚାଲିଥାଏ ଓଡ଼ିଶାରେ ଗୋଟାଏ ସାଂପ୍ରଦାୟିକ ଗଣ୍ଡଗୋଳ ସୃଷ୍ଟିକରି ଦେଖାଇଦେବେ ଯେ ଓଡ଼ିଶାରେ ଶତକଡ଼ା ୪ଜଣ ମୁସଲମାନ

ଥିଲେ ମଧ୍ୟ ସେଠାରେ ବ ସାମ୍ପ୍ରଦାୟିକ ହଣାକଟା ବାଦ ପଡ଼ିଲା ନାହିଁ । ସେଇଥିପାଇଁ ଭଦ୍ରକକୁ ପେଶାଓ୍ୱାରୀ ଗୁଣ୍ଡା ଆଣି ମୁସଲମଲିଗ ତରଫରୁ ଗଣ୍ଡଗୋଳ ଭିଆଇ ଦେବେ । ମାତ୍ର ମହତାବବାବୁଙ୍କ ଚତୁର ରାଜନୀତିରେ ସେସବୁ ଚକ୍ରାନ୍ତ ଫସରଫାଟି ଯାଇଥିଲା । ସେତେବେଳେ ସବୁ ରାଜ୍ୟରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ହୋଇଥିଲେ ହେଁ ଓଡ଼ିଶା ଅବସ୍ଥା ସମ୍ପୂର୍ଣ୍ଣ ନିରାପଦ ଥିବାରୁ ଗାନ୍ଧିଜୀ ମହତାବଙ୍କୁ ପ୍ରଶଂସା କରିଥିଲେ ।

## ଏକାଧାରରେ......

ମହତାବ ଏକାଧାରରେ ଐତିହାସିକ । ସେ ଖାଲି ଓଡ଼ିଶା ଇତିହାସ ଲେଖି ନାହାନ୍ତି—ସେ ମଧ୍ୟ ଜଣେ ସୁସାହିତ୍ୟିକ । ଆନ୍ଧ୍ରବିଶ୍ୱବିଦ୍ୟାଳୟ ମହତାବଙ୍କ ସାହିତ୍ୟରେ ଡ଼ିଲିଟ୍ ପ୍ରଦାନ କଲାପରେ ଅନ୍ୟାନ୍ୟ ୬ଟି ବିଶ୍ୱବିଦ୍ୟାଳୟ ମଧ୍ୟ ଡକ୍ଟରେଟ ପ୍ରଦାନ କରିଛନ୍ତି । ମହତାବବାବୁ ଏକାଧାରରେ ସାହିତ୍ୟିକ, ଔପନ୍ୟାସିକ ଓ ସାମ୍ବାଦିକ ମଧ୍ୟ । କଂଗ୍ରେସରେ ଯୋଗଦାନ ସଙ୍ଗେ ସଙ୍ଗେ ମହତାବବାବୁ ପି: ଟି: ଆଇ: ର ସମ୍ବାଦଦାତା ଓ 'ଅମୃତବଜାର' ପତ୍ରିକାରେ ସ୍ୱତନ୍ତ୍ର ଲେଖକ ଥିଲେ । ''ରଚନା'' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ କରି ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ ପ୍ରଭୃତିକୁ ସଫଳ ରୂପାୟନ ଦେବାରେ ଆପ୍ରାଣ ଚେଷ୍ଟା କରୁଥିଲେ । ମହତାବବାବୁଙ୍କର 'ପଲାସୀ ଅବସାନ' ବହିକୁ ବ୍ରିଟିଶ ସରକାର ବାଜ୍ୟାପ୍ତ କରି ନେଇଥିଲେ ।

## ସର୍ବସ୍ୱତ୍ୟାଗୀ

ମହତାବ ବାବୁ ରାଜପରିବାରରେ ଜନ୍ମ ହୋଇଥିଲେହେଁ ଦେଶ ଓ ଜାତି ପାଇଁ ସର୍ବସ୍ୱ ତ୍ୟାଗ କରିଛନ୍ତି । ସବୁ ତ୍ୟାଗ ପରେ ବାଲେଶ୍ୱର ଜିଲ୍ଲାବୋର୍ଡର ଚେୟାରମେନ, ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ, ରାଜ୍ୟପାଳ ହୋଇ ଥିଲେ ହେଁ ସେ ନିଜ ପାଇଁ କିଛି କରି ନାହାନ୍ତି । କେଉଁଠି କଳକାରଖାନା ବା କିଛି ବେପାର ବାଣିଜ୍ୟ କରି ନାହାନ୍ତି । କିଛି ନାହିଁ । କିଛି କରି

ଯାଉନାହାନ୍ତି । ସେ ସର୍ବସ୍ୱ ତ୍ୟାଗ କରି ଓଡ଼ିଶା ପାଇଁ ଗଢ଼ିତୋଳିଛନ୍ତି– "ପ୍ରଜାତନ୍ତ୍ର ପ୍ରଚାର ସମିତି" । ସେହି ତାଙ୍କର ପୁଅ, ବାପ, ମା, ଭାଇ ବନ୍ଧୁ ସଖା, ସହୋଦର ସବୁକିଛି ପ୍ରଜାତନ୍ତ୍ର ପ୍ରଚାର ସମିତିର ଅବଦାନ ଖାଲି ପ୍ରଜାତନ୍ତ୍ର ପ୍ରଚାର ନୁହେଁ 'ଝଙ୍କାର' ଓ "ଇଷ୍ଟର୍ଣ୍ଣ ଟାଇମ୍ସ" । ସବୁଠାରୁ ବଡକଥା ହେଉଛି— 'ବିଷୁବ ମିଳନ' । ଏହାଦ୍ୱାରା ଓଡ଼ିଶାରେ ଅସଂଖ୍ୟ ସାହିତ୍ୟିକ ଓ ସାମ୍ବାଦିକ ସୃଷ୍ଟି ହୋଇପାରିଛନ୍ତି ।

ପ୍ରକୃତରେ ମହତାବଙ୍କର ପରିକଳ୍ପନା କରି ହେବ ନାହିଁ । ଯେଉଁଠି ପ୍ରତିଭାର ଆଦର ନାହିଁ — ଯେଉଁଠି ପୂଜ୍ୟ ପୂଜାର ଅଭାବ — ଯେଉଁଠି ହିଂସା, ବିଦ୍ୱେଷ, କପଟତା, ପରଶ୍ରୀକାତରତା ଏ ପ୍ରତିହିଂସା ଓ ପ୍ରତିଶୋଧ ଜର୍ଜରିତ ହୋଇ ଭାଇ ଭାଇର ଆଣ୍ଠୁ ଭାଙ୍ଗି ଦିଏ—ସେଠାରେ ଜାତିପ୍ରେମ, ଦେଶସେବା ଈଶ୍ୱରଙ୍କର ଅଭିପ୍ରେତ ଛଡ଼ା ଆଉ କିଛି ନୁହେଁ । ଧନ୍ୟ ସେହି କରିତ୍ କର୍ମା- ଯେ କି ସବୁବେଳେ କହନ୍ତି—'ସୁଅରେ ଭାସିଯିବା ସହଜ । ମାତ୍ର ଉଜାଣି ଉଠିବାରେ ବାହାଦୁରୀ ଅଛି । ନାନା ବାଧାବିଘ୍ନ ଘାତ ପ୍ରତିଘାତ ମଧ୍ୟରେ ଦୁଃଖ ସାଗର ପହଁରି ପହଁରି ଦେଶର ସ୍ୱାର୍ଥ ଓ ସୁଖ ପାଇଁ ପ୍ରାଣୋତ୍ସର୍ଗ କରିପାରିଛନ୍ତି । ମହତାବଙ୍କୁ ପାଇ ଓଡ଼ିଶା ଧନ୍ୟ ହୋଇଛି । ମାତ୍ର ମହତାବ ହତଭାଗ୍ୟ ଓଡ଼ିଶାରେ ଜନ୍ମ ହୋଇଛନ୍ତି । ଅର୍ଥାତ୍ ମହତାବ ଓଡ଼ିଶାରେ ନ ଜନ୍ମି ଉତ୍ତର ପ୍ରଦେଶରେ ଜନ୍ମିଥିଲେ ଆଜି ଏପରି ବିଷଚକ୍ରାନ୍ତ ଘଟି ନ ଥାନ୍ତା । + + +

ମହତାବବାବୁ ସେଦିନ କହିଥିଲେ— "ସମୀରର ସଂଯୋଗ ନହେଲେ ପୁଷ୍ପର ସୁଗନ୍ଧ ମାନବ ସମାଜ ଜାଣି ପାରିବ ନାହିଁ । ବଣଫୁଲ ବଣରେ ଫୁଟି ମଉଳିଯିବ ।

ମଲ୍ଲିକାପୁର,
କଟକ

# ଏକ ଯୋଗଜନ୍ମା ପୁରୁଷ

ହେମନ୍ତ କୁମାର ଦାସ

୧୯୪୮ ମସିହା ଜାନୁଆରୀ ୩୦ ତାରିଖର ଏକ ସ୍ମରଣୀୟ ଶୀତଳ ଅପରାହ୍ନ । କ୍ଷୁଦ୍ରତମ ଗଡ଼ଜାତ ତିଗିରିଆର ଗଡ଼ଦାଣ୍ଡରେ ଅଭୂତପୂର୍ବ ଜନସମାଗମ, ସତେ ଯେମିତି ଏକ ଦୀର୍ଘ ପ୍ରତୀକ୍ଷିତ ମହୋତ୍ସବ । ସ୍ଲୋଗାନ ମୁଖର ଏକ ବିରାଟ ପଟୁଆର ଆଗେଇ ଚାଲିଛି । ସାଙ୍ଗରେ ଆସିଥିବା ହାକିମ ହୁକୁମା ଓ ସ୍ଥାନୀୟ ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ପଟୁଆରର ଆଗେ ଆଗେ ଚାଲିଥାଆନ୍ତି ସ୍ୱାଧୀନତା ପର-ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ । ଢିଲ୍ ପ୍ୟାଣ୍ଟ ତାଙ୍କୁ ଫିକା ପାଉଁଶିଆ ରଙ୍ଗର ବେକଚାପା କୋଟ । ଗୋରା ତକ ତକ ସବଳ ଚେହେରା । ଆଖି ଓ ଓଠରେ ଆତ୍ମବିଶ୍ୱାସ ଏବଂ ତୃପ୍ତିର ହସ । ମୁଣ୍ଡ ସିଧା ଟେକି ଛାତି ଫୁଲେଇ ଦୃଢ଼ ମନ୍ଥର ଗତିରେ ଚାଲିଥାଆନ୍ତି ସେ । ମନେହେଉଛି ସେହି ସମଗ୍ର ଜନସମାବେଶ ମଧ୍ୟରେ ସେ ଥିଲେ ସର୍ବାଧିକ ଦୀର୍ଘକାୟ ବ୍ୟକ୍ତି । ବ୍ୟକ୍ତିତ୍ୱରେ ନିଶ୍ଚିତଭାବେ ଏକ ଅସାମାନ୍ୟତା ଫୁଟିଉଠୁଥାଏ ।

ସାଧାରଣ ସଭା । ଉଦ୍‌ବୋଧନ । ଗଡ଼ଜାତବାସୀଙ୍କ ପାଇଁ ସ୍ୱାଧୀନ ସରକାରଙ୍କର ବହୁମୁଖୀ ଉନ୍ନୟନ ମୂଳକ ନୀତିର ବଖାଣ ମଧ୍ୟରେ ଘନଘନ କରତାଳି ପର୍ବ ଚାଲିଥାଏ । ସଭା ସାଙ୍ଗ ପରେ ଆୟୋଜିତ ଆତସବାଜିର ସମାରୋହ । ଅନ୍ଧାରଭଙ୍ଗା ଆକାଶ ଛାତିରେ ରଙ୍ଗୀନ୍ ନିଆଁର ଖେଳ ଓ ପ୍ରକମ୍ପ । ହଠାତ୍ ସବୁ ବନ୍ଦ ହୋଇଗଲା । କଣ ଏକ ମର୍ମନ୍ତୁଦ ସମ୍ବାଦ ପାଇ ମହତାବଜୀଙ୍କ ମୁହଁ ଶୁଖିଗଲା । ଶିଶୁ ଭଳି କଇଁ କଇଁ କାନ୍ଦ । ହଠାତ୍ ସଦଳବଳେ ପ୍ରତ୍ୟାବର୍ତ୍ତନ କଲେ କଟକ ଅଭିମୁଖେ । ପରେ ଜଣାଗଲା ସନ୍ଧ୍ୟା ସାଢେ ଛ' ଘଣ୍ଟା ବେଳେ ଆତତାୟୀର ଗୁଳି ଚୋଟରେ ଜାତିର ଜନକ ପ୍ରିୟ ବାପୁଜୀ ଢଳିପଡ଼ିଲେ । ଏଭଳି ଏକ ଦୀର୍ଘ ବଳିଷ୍ଠ

ବ୍ୟକ୍ତିତ୍ୱ ଯେ ଶୈଳ ଭଳି କାଠପାଟିର ତାହା ଦେଖି ସେଦିନ ଅନେକେ ହତଚକିତ ହୋଇ ଯାଇଥିବେ । ହୃଦୟର ସୂକ୍ଷ୍ମତମ ତନ୍ତ୍ରୀରେ ଅପ୍ରତ୍ୟାଶିତ ଆଘାତ ଲାଗିଯାଇଥିଲା ପରି ।

ଏହି ଅଳ୍ପ କେତେ ମାସ ତଳେ ସତୀ ସାଧ୍ୱୀ ସହଧର୍ମିଣୀ ସୁଭଦ୍ରାଙ୍କର ବିୟୋଗ ସମୟରେ ସେହି ଆଖିରୁ ଏଟେ ଅଶ୍ରୁ ବହିବାର କେହି ଦେଖିନାହିଁ । ଅଚଳ ମହାମେରୁ ପରି ବସି ରହିଥାନ୍ତି । ସମବେଦନା ଜଣାଇବା ପାଇଁ ଆସୁଥିବା ଅଜସ୍ର ଆଗନ୍ତୁକଙ୍କୁ ଓଲଟି ନିଜଆଡ଼ୁ ଆଗୁଆ ସମ୍ଭାଷଣ । କି ଧୈର୍ଯ୍ୟ ! ଗୀତା-ପୁରୁଷ ସୁଲଭ ନିର୍ଲିପ୍ତତା ଦେଖି ସମସ୍ତେ ଅବାକ୍ । ଶବାଧାର ଉଠିଲା ବେଳେ ମୁହୂର୍ତ୍ତକ ଲାଗି ଆଖି ଛଳଛଳ ହୋଇଯାଇଥିଲା । ପର୍ବତ କନ୍ଦରରୁ ନିର୍ଝରଣୀ ଝରିଲା ପରି ଦୁଇଧାର ଲୁହ ଗଡ଼ିଥିଲା । ବାମ ହାତରେ ଥରକ ପାଇଁ ପୋଛି ଦେଇଥିଲେ । ବାସ୍ ସେତିକି । ଏକବିଂଶ ବର୍ଷ ତଳେ ବାପୁଜୀଙ୍କ ମୃତ୍ୟୁ ସମ୍ବାଦରେ ଯେ କୋହ ସମ୍ଭାଳି ନ ପାରି ଶୋକସ୍ତ୍ୱାରେ ଭାଙ୍ଗି ପଡ଼ିଥିଲେ, ଆଜି ପରିଣତ ବୟସରେ ନିଜର ଜୀବନ ସାଥୀକୁ ହରାଇ ସିଦ୍ଧ ତପସ୍ୱୀ ଭଳି ସ୍ଥିର ରହିପାରିଲେ । ଧନ୍ୟ ଜୀବନର ସାଧନା ।

ମହତାବ ଓଡ଼ିଶା ଭୂଇଁର ଜଣେ ଇତିହାସ ସୃଷ୍ଟିକାରୀ ପ୍ରତିଭା । ଏଭଳି ବ୍ୟକ୍ତିତ୍ୱରେ ସବୁବେଳେ କିଛି ନା କିଛି ଅସାଧାରଣତା ରହିଥାଏ । ନିଷ୍ଠୁରତମ ସମାଲୋଚକ ମଧ୍ୟ ସ୍ୱୀକାର କରିବ ଯେ, ମହତାବଙ୍କ ବ୍ୟକ୍ତିତ୍ୱରେ ଏଭଳି ଅନେକ ଅସାଧାରଣତା ରହିଛି । ତାଙ୍କର ପିତୃ ମାତୃ ପ୍ରଦତ୍ତ ନାମ ନଧରି ଖାଲି 'ମହତାବ' କହିଲେ ଓଡ଼ିଶାର ପୁରପଲ୍ଲୀଠାରୁ ଆରମ୍ଭ କରି ଦେଶର ଶିକ୍ଷିତ ମହଲର ସର୍ବତ୍ର ଏହି ବ୍ୟକ୍ତିତ୍ୱକୁ ଜାଣନ୍ତି । ଯେମିତି 'ଗାନ୍ଧୀ' 'ନେହେରୁ' 'ପଟେଲ୍' କହିଲେ ଏକ ଏକ ନିର୍ଦ୍ଦିଷ୍ଟ ମହାନ୍ ବ୍ୟକ୍ତିତ୍ୱକୁ ବୁଝାଯାଏ ।

ସାଧାରଣ ରାଜନୈତିକ ଜୀବନ, ସଂଗ୍ରାମ, ନିର୍ଯ୍ୟାତନା, ଝଡ଼ଝଞ୍ଜା । ତାରି ମଧ୍ୟରେ ବି ସେ ତାଙ୍କ ସୃଜନଶୀଳ ପ୍ରତିଭାର ବିକାଶ ବାଧାପ୍ରାପ୍ତ

ହୋଇ ନାହିଁ । ଇତିହାସ ଠାରୁ ଆରମ୍ଭକରି ଉପନ୍ୟାସ, ନାଟକ, କବିତା, ପର୍ଯ୍ୟନ୍ତ ସାହିତ୍ୟର ବିଭିନ୍ନ ବିଭାଗରେ ସୃଷ୍ଟି । ସାମ୍ବାଦିକତା ସ୍ତରରେ ପ୍ରଜାତନ୍ତ୍ର, ଇଷ୍ଟର୍ଣ୍ଣଟାଇମସ୍ ଓ ଝଙ୍କାର ଭଳି ସାହିତ୍ୟ ପତ୍ରିକାର ପ୍ରତିଷ୍ଠା ରାଜନୀତି କ୍ଷେତ୍ରରେ କେନ୍ଦ୍ର ମନ୍ତ୍ରୀଠାରୁ ଆରମ୍ଭକରି, ମୁଖ୍ୟମନ୍ତ୍ରୀ, ରାଜ୍ୟପାଳ ପଦବୀର ଅଧିକାରୀ । ସତରେ କି ବହୁମୁଖୀ ପ୍ରତିଭାବନ୍ତ ବ୍ୟକ୍ତିତ୍ୱ । ଏଭଳି ପ୍ରତିଭା ଈଶ୍ୱରଙ୍କର ଅଜସ୍ର କୃପା ବ୍ୟତୀତ ଅନ୍ୟ କ'ଣ ହୋଇ ପାରେ ? ରାଜ୍ୟର ପ୍ରଥମ ମୁଖ୍ୟମନ୍ତ୍ରୀ ଭାବେ ପରିବର୍ତ୍ତିତ ପରିସ୍ଥିତିକୁ ଦୃଷ୍ଟି ଦେଇ ଶାସନର ଢାଞ୍ଚା ପ୍ରସ୍ତୁତ କରିବାରେ ମହତାବ ଯେଉଁ ଦୂରଦୃଷ୍ଟିର ପରିଚୟ ଦେଇଛନ୍ତି ତାହା ନିଃସନ୍ଦେହରେ ପ୍ରଶଂସାର୍ହ ।

ଏକ ସୃଜନଶୀଳ ପ୍ରତିଭା ପ୍ରତ୍ୟେକ କ୍ଷେତ୍ରରେ ମୌଳିକତା ପ୍ରଦର୍ଶନ କରିବାକୁ ସଚେଷ୍ଟ ହୁଏ । ମହତାବଜୀଙ୍କ ବ୍ୟକ୍ତିତ୍ୱର ମୌଳିକତା ତାଙ୍କ ବେଶ ପୋଷାକଠାରୁ ଆରମ୍ଭ କରି ଶାସନକାର୍ଯ୍ୟ ପରିଚାଳନା ପର୍ଯ୍ୟନ୍ତ ସବୁସ୍ତରରେ ପରିଦୃଷ୍ଟ ହୁଏ । ତାଙ୍କର ସାଧାରଣ ପୋଷାକ ଥିଲା ଫୁଲ୍-ପ୍ୟାଣ୍ଟ । ଟ୍ରାଉଜର କହିଲେ ଚଳେ । ବେଶ୍ ଢିଲା ହାଓ୍ୱାଇର ହାତ କହୁଣୀ ତଳ ପର୍ଯ୍ୟନ୍ତ ଲମ୍ବ । ସେଭଳି ପୋଷାକ ଆଉ କିଏ ପିନ୍ଧିବାର କିଏ ଦେଖିଛି ?

ଚାଲିବାର ଭଙ୍ଗୀ ଖୁବ୍ ସହଜ । ମୁଣ୍ଡ ସଳଖ, ଗୁଣ୍ଡି ଆଗକୁ ଶରୀର ଓ ବୟସ ଭାରରେ ବେଶ୍ ପ୍ରକାରେ ଦେଖାଯାଏ । ସେ ଚାଲିସହିତ କାହାର ସାମଞ୍ଜସ୍ୟ ଦେଖିଛନ୍ତି ? ଅନେକ ବାଗ୍ମୀ ଅଛନ୍ତି, ଓଜସ୍ୱିନୀ ଭାଷଣ ଦେଇ ସ୍ରୋତାମଣ୍ଡଳୀକୁ ଉତ୍ତେଜିତ କରିପାରନ୍ତି, ଉଦ୍‌ବୁଦ୍ଧ କରିପାରନ୍ତି । ଏ ବିଦ୍ୟାରେ ମହାତାବଙ୍କଙ୍କ ଭଙ୍ଗୀ କିନ୍ତୁ ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର, ଅନନୁକରଣୀୟ । ଧୀର ଗମ୍ଭୀର । ସ୍ୱରବେଶ ମୋଟା । ସବୁଦିନିଆ କୁହା ଭାଷାରେ ବକ୍ତୃତା । ସତେ କି ଶ୍ରୋତାମାନଙ୍କ ଆଗରେ ଠିଆ ହୋଇ କଥାବାର୍ତ୍ତା କରୁଛନ୍ତି । ସମସ୍ତଙ୍କ ବୁଝିବା ଭଳି ଭାଷା । ଅତି ଜଟିଳ ସମସ୍ୟାକୁ ମଧ୍ୟ ଅତି ସହଜ ଭାବରେ ପରିବେଷଣ କରନ୍ତି । ବକ୍ତୃତା ଏବଂ ଲେଖାରେ ସାଧାରଣଙ୍କ ମନର କଥା ପ୍ରକାଶ କରିବାର କଳା ସେ ଯେପରି ଆୟତ୍ତ କରିପାରିଛନ୍ତି

ତାହା ଅନ୍ୟ କେହି ପାରନ୍ତି କି ନା ସନ୍ଦେହ । ଗୋଟିଏ ଗୋଟିଏ ସାଧାରଣ କଠିନ ସମସ୍ୟାକୁ ତାତ୍ତ୍ୱିକ ବ୍ୟାଖ୍ୟାକରି ସେ ଏପରି ଶୈଳୀରେ ପରିବେଷଣ କରି ଦିଅନ୍ତି ଯେ ସାମୟିକ ଭାବେ ହେଲେ ମଧ୍ୟ ବିଶ୍ୱାସ ଜନ୍ମିଯାଏ, ମହତାବ ଦେଉଥିବା ସମାଧାନ ହିଁ ଏକ ମାତ୍ର ସମାଧାନ ।

ହୀରାକୁଦ ବନ୍ଧ ନିର୍ମାଣ ବେଳେ ପଶ୍ଚିମ ଓଡ଼ିଶାରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇ ଯେଉଁ ଆନ୍ଦୋଳନ ମୁଣ୍ଡଟେକି ଥିଲା ତାହା ଏବେ ବି ଅନେକଙ୍କ ସ୍ମୃତିରେ ଥିବ । ମହତାବଜୀ ନିଜେ ଏହି ଆନ୍ଦୋଳନକାରୀମାନଙ୍କର ସମ୍ମୁଖୀନ ହୋଇ ଅବସ୍ଥାକୁ ଯେପରି ଆୟତ୍ତ କରି ପାରିଥିଲେ ତାହା ଯେ କୌଣସି ଶାସକ ଓ ଜନ ନେତା ପକ୍ଷେ ଗୌରବର କଥା । ଓଡ଼ିଶାର ଅର୍ଥ-ନୀତିକ ଚିତ୍ର ବଦଳାଇବାରେ ହୀରାକୁଦର ଅବଦାନ କ'ଣ ତାହା ଆଜି ପ୍ରତ୍ୟେକ ଓଡ଼ିଶାବାସୀ ହୃଦୟଙ୍ଗମ କରୁଛନ୍ତି ।

୧୯୫୬ ମସିହାର ସୀମା ଆନ୍ଦୋଳନ । ଓଡ଼ିଶାର କୋଣେ କୋଣେ ଗଣଆନ୍ଦୋଳନର ପ୍ରବଳ ପ୍ରବାହ, ଆନ୍ଦୋଳନର ପୁରଭାଗରେ ଛାତ୍ର ସମାଜ । ମହତାବଜୀ ସେତେବେଳେ ବମ୍ବେପ୍ରଦେଶର ଗଭର୍ଣ୍ଣର । ଓଡ଼ିଶାର ରାଜନୀତିକୁ ପ୍ରତ୍ୟାବର୍ତ୍ତନ କରିବାର ଅଭିଳାଷ ମର୍ମ କରେ ତଥାପି କୌଣସି ପ୍ରକାଶ୍ୟ ସୂଚନା ନ ଥାଏ । ଆନ୍ଦୋଳନ ଉଗ୍ରତର ରୂପ ନେଉଥିବା ବେଳେ ରାଜ୍ୟପାଳ ମହତାବ ଆସୁଥାନ୍ତି ଓଡ଼ିଶା । ଆନ୍ଦୋଳନକାରୀଙ୍କ ମଧ୍ୟରେ ପ୍ରବଳ ଉତ୍ସାହ ଉଦ୍ଦୀପନା । ସ୍ୱାଧୀନତା ସଂଗ୍ରାମର ମହାରଥୀ ନବଉତ୍କଳର ନିର୍ମାତା ନିଶ୍ଚୟ କିଛି ନା କିଛି ସମାଧାନ ଥୋଇ ଆନ୍ଦୋଳନର ଲକ୍ଷ୍ୟକୁ ଚରିତାର୍ଥ କରିବେ । ନିର୍ଦ୍ଦିଷ୍ଟ ଦିନ ଆସିଲା । ଏକ ଖୋଲାଜିପ୍‌ରେ ଦଣ୍ଡାୟ-ମାନ ହୋଇ ଛାତ୍ର ସମାଜର ଗଗନଭେଦୀ ସ୍ଲୋଗାନ ମଧ୍ୟରେ ସେ ଧୀରେ ଅଗ୍ରସର ହେଉଥାନ୍ତି । ଟାଉନ ହଲ୍‌ପଡ଼ିଆ ଲୋକାରଣ୍ୟ । ସମସ୍ତଙ୍କ ବିଶ୍ୱାସ ଆଜି ଓଡ଼ିଶାର ନ୍ୟାର୍ଯ୍ୟଦାବୀ ହାସଲର ଏକ ଐତିହାସିକ ଦିନ । ବ୍ୟକ୍ତିତ୍ୱରେ ତାଙ୍କର ଏଭଳି କିଛି ସ୍ୱାତନ୍ତ୍ର୍ୟତା ଅଛି ଯଦ୍ୱାରା କୌଣସି ସ୍ଥାନରେ ତାଙ୍କର ଉପସ୍ଥିତି ଜନସାଧାରଣଙ୍କ ମନରେ ଆଶା ଓ ବିଶ୍ୱାସ ସଞ୍ଚାର କରେ । ଏହାକୁ କହନ୍ତି ନେତୃତ୍ୱ ପରାକାଷ୍ଠା ।

ସଭା ଚାଲିଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ରହିଥାନ୍ତି ସେ କେତେ-ବେଳେ ତାଙ୍କ ବହୁ ପ୍ରତୀକ୍ଷିତ ନିଷ୍ପତ୍ତି ଘୋଷଣା କରିବେ । ସ୍ୱଭାବସୁଲଭ ଭଙ୍ଗୀରେ ସେ କହିଚାଲିଥାନ୍ତି । ଷଡ଼େଇକଳା ଖରସୁଆଁ ଓଡ଼ିଶାରେ ରହିବା ପ୍ରତ୍ୟେକ ଓଡ଼ିଆର ହୃଦୟର କଥା କରତାଳିର ତରଙ୍ଗ । ଜନତାକୁ ନୀରବ ରହିବା ପାଇଁ ଇସାରା ଦେଇ କହିଲେ ଏଭଳି ଏକ ଦୁରୂହ କାର୍ଯ୍ୟ ସାଧନ କରିବା ପାଇଁ ଏକତା, ସାହସ ଓ ଆତ୍ମ ବିଶ୍ୱାସ ଦରକାର । ସମବେତ ଜନତା ନୀରବରେ ଜଣାଇଲେ ଏ ମହାନ କାର୍ଯ୍ୟରେ ସେ ସବୁର ଅଭାବ ନାହିଁ । ତାପରେ ମହତାବଜୀ କହିଲେ ଅନ୍ୟ ଏକ ଅସଲ ଜିନିଷର ସର୍ବଶେଷ ଆବଶ୍ୟକ ଯାହା ବ୍ୟତୀତ ଏ ମହାନ ଜନ-ଆନ୍ଦୋଳନ ସଫଳ ହୋଇପାରିବ ନାହିଁ । ଜନତା ଉଦ୍‌ଗ୍ରୀବ ହୋଇ ଜାଣିବାକୁ ରହିଲେ ତାହା କ'ଣ । ଉତ୍ତରରେ ଦେଲେ ତାହା ହେଉଛି ଧୈର୍ଯ୍ୟ, ଅସୀମ ଧୈର୍ଯ୍ୟ । ଅଧୈର୍ଯ୍ୟ ହେଲେ ଆନ୍ଦୋଳନ ପଥଭ୍ରଷ୍ଟ ହୋଇ-ଯାଇପାରେ । ମହାଭାରତର ଉପାଖ୍ୟାନ ସଂକ୍ଷେପରେ ବଖାଣି କହିଲେ ସାମାନ୍ୟ ପାଞ୍ଚଖଣ୍ଡି ପଡ଼ା ପାଇଁ ମଧ୍ୟ ଶ୍ରୀକୃଷ୍ଣ ସମର୍ଥିତ ମହାବଳୀ ପାଣ୍ଡବ-ମାନେ ପ୍ରଥମେ ଯୁଦ୍ଧ ନ କରି ଧର୍ଯ୍ୟ ତେରବର୍ଷ ଅଜ୍ଞାତ ବାସ କରିଥିଲେ । ଏହି ଅଜ୍ଞାତ ବାସ, ଏହି ଧୈର୍ଯ୍ୟ ପରିଶେଷରେ କେବଳ ପଞ୍ଚପଡା ନୁହେଁ ସମଗ୍ର କୁରୁସାମ୍ରାଜ୍ୟକୁ ପାଣ୍ଡବମାନଙ୍କୁ ପ୍ରାପ୍ତ କରାଇଲା । ତେଣୁ ସେ ପ୍ରକାଶ କଲେ ଯେ ଉପାନ୍ତ ଅଞ୍ଚଳର ପୁନରୁଦ୍ଧାର ପାଇଁ ଉଗ୍ରଆନ୍ଦୋଳନରେ ନମାତି ଧୈର୍ଯ୍ୟ ଅବଲମ୍ବନ କରିବା ଶ୍ରେୟସ୍କର ହେବ । ଏହା ନିଶ୍ଚିତ ଯେ ବିଚ୍ଛିନ୍ନ ଅଞ୍ଚଳମାନ ଓଡ଼ିଶାରେ ନ ମିଶିବା ପର୍ଯ୍ୟନ୍ତ ଓଡ଼ିଶାବାସୀଙ୍କର ଏକ ସ୍ୱପ୍ନ ଅପୂର୍ଣ୍ଣ ରହିଥିବ । ଜନତା ସେ ଭାଷା ବୁଝିଲେ । ସେ ସମାଧାନକୁ ସାଦରେ ଗ୍ରହଣ କଲେ । କରତାଳି ଧ୍ୱନିରେ ଧର୍ମସ୍ଥଳ ଉଚ୍ଛୁଳି ପଡ଼ିଲା । ଆନ୍ଦୋଳନର ଗତି ତା ପରଦିନଠାରୁ ଥମିଲା । ଦିନ କେଇଟା ପରେ ସବୁ ଥମିଗଲା । ଲକ୍ଷ୍ୟ କରିବାର କଥା ତାଙ୍କ ଜନମନ ଛୁଆଁ କଥାର କରାମତି ।

ସବୁ ଆଡ଼େ ସମାଲୋଚନା ଚାଲିଲା । ମହତାବଙ୍କ ଭଳି ଜଣେ ପ୍ରମୁଖ

ଜନନେତା ମାର୍ଗଭ୍ରଷ୍ଟ ହୋଇ ନିଜଦଳ ତ୍ୟାଗ କରି ଅନ୍ୟ ରାଜନୈତିକ ଦଳରେ ସାମିଲ୍ ହେଲେ । ଧୀର ଗମ୍ଭୀର ଭାବରେ ସମାଲୋଚକମାନଙ୍କୁ ଉତ୍ତର ଦେଲେ ରାଜନୀତିରେ ବିଶେଷତଃ ଗଣତନ୍ତ୍ର ଭିତ୍ତିକ ରାଜନୀତିରେ ବ୍ୟକ୍ତି ବିଶେଷର ମତପରିବର୍ତ୍ତନ ଏକ ସ୍ୱାଭାବିକ କଥା ଏହା ଏକ ଗଣତାନ୍ତ୍ରିକ ଅଧିକାର । ଏଥିରେ କୌଣସି ବିଜ୍ଞ ବ୍ୟକ୍ତି ବିବ୍ରତ ହେବା ଅନୁଚିତ । ଲକ୍ଷ୍ୟକରିବାର କଥା ବିଷୟଟିର ବୌଦ୍ଧିକ ବ୍ୟାଖ୍ୟା । ଏଥିରେ କେଉଁ ସମାଲୋଚକ କଣ ବା କହିବ ?

ଭାରତର ସବୁପ୍ରାନ୍ତରେ ଭୂଦାନ, ଗ୍ରାମଦାନ ବାର୍ତ୍ତାର ଜୁଆର । ଭୂଦାନ ଯଜ୍ଞର ଉପଯୋଗିତା ଓ ଉତ୍କର୍ଷତା ଉପରେ ସବୁଶ୍ରେଣୀର ନେତାମାନେ ଶତକଣ୍ଠ । ଜନତାର ନାଡ଼ୀ ଚିପିବାରେ ମହତାବଜୀ ସିଦ୍ଧହସ୍ତ । ସେ ସର୍ବପ୍ରଥମେ ନିର୍ଭୀକ ମତ ପ୍ରକାଶ କଲେ ଯେ ଭୂଦାନ ଆନ୍ଦୋଳନ ଦାରିଦ୍ର୍ୟ ଦୂରୀକରଣ ନକରି ଦାରିଦ୍ର୍ୟ ବଣ୍ଟନହିଁ କରିବ । ବିଭିନ୍ନ ମହଲରେ ଖୁବ୍ ପ୍ରତିକ୍ରିୟା ପ୍ରକାଶ ପାଇଲା । ନିଜ ମତରେ ସେ ଅଟଳ ରହିଲେ । ଏବେ ବିଚାର କରାଯାଇ ପାରେ ତାଙ୍କର ମୌଳିକ ଓ ନିର୍ଭୀକ ମତର ଯଥାର୍ଥତା ।

ଜୀବନ ତାଙ୍କର ଏକ ନିଚ୍ଛକ ସଫଳତାର କାହାଣୀ ନୁହେଁ । ଗୋଲାପ ପାଖୁଡ଼ା ସହିତ ଅନେକ ଗୋଲାପର କଣ୍ଟା ସେ ଚଲାପଥରେ ମାଡ଼ିଛନ୍ତି । ପାଦରକ୍ତାକ୍ତ ହୋଇଛି । ହେଲେ ଯାତ୍ରା ଦୁର୍ବାର । ତାଙ୍କର ଅଜସ୍ର ଗୁଣମୁଗ୍ଧ ଅନୁଗାମୀ ଓ ଶୁଭେଚ୍ଛୁ ଥିଲେ ମଧ୍ୟ ସମାଲୋଚକ ସଂଖ୍ୟା ମଧ୍ୟ ନିତାନ୍ତ ନଗଣ୍ୟ ନୁହେଁ । ଏ ସମସ୍ତ ସମାଲୋଚନା କିନ୍ତୁ ମୁଖ୍ୟତଃ ତାଙ୍କର ରାଜନୈତିକ କାର୍ଯ୍ୟକଳାପ ଓ ଗତିବିଧି ଉପରେ ସୀମିତ । ରାଜନୀତି ତାଙ୍କ ପ୍ରତିଭାର ଏକ ଅଂଶ ମାତ୍ର—ଅବଶ୍ୟ ସର୍ବଦା ଦୃଷ୍ଟି ଆକର୍ଷଣ କରୁଥିବା ଅଂଶ । ଅପର ପକ୍ଷେ ସେ ଜଣେ ଦକ୍ଷଶାସକ ସମାଜ ସଂସ୍କାରକ, ବରିଷ୍ଠ ସାହିତ୍ୟିକ, ସଙ୍ଗଠକ ଓ ଚିନ୍ତାନାୟକ । ସଂକ୍ଷେପରେ କହିଲେ ସେ ଏକ

ଅସାଧାରଣ ବହୁମୁଖୀ ପ୍ରତିଭା । କେବଳ ରାଜନୀତି ସହିତ ସଂଶ୍ଳିଷ୍ଟ ଥିବା ହେତୁ କେତେକାଂଶରେ ବିବଦମାନ ହେଲେହେଁ ଏକ ସର୍ବମାନ୍ୟ ବ୍ୟକ୍ତିତ୍ୱ ।

ପ୍ରତିଭାପୂଜାରେ ଯଥାଯୋଗ୍ୟ ତତ୍ପରତାର ଅଭାବ ଓଡ଼ିଆ ଜାତିର ଏକ ବ୍ୟାଧି । ଦାନ୍ତ ଥିବାଯାଏ ଦାନ୍ତର ଉପଯୋଗିତା ହୃଦୟଙ୍ଗମ କରିହୁଏ ନାହିଁ । ଦିନ ଆସିବ ମହତାବଙ୍କ ପରି ଯୋଗଜନ୍ମା ପୁରୁଷଙ୍କର ଅମିତ ପ୍ରତିଭାର ଉପଯୁକ୍ତ ମୂଲ୍ୟାୟନ ହେବ ।

# ହେ ନମସ୍ୟ

ଡାଃ ରାଜେଶ୍ୱରୀ ଦଳବେହେରା

ଉଣେଇଶ ବା'ଷଠି

ସାହିତ୍ୟ ଏକାଡେମୀ ପୁରସ୍କାର ବିତରଣ ଲାଗି ସେଦିନ ବନ୍ଧୁ-ମିଳନର ଆୟୋଜନ ହୋଇଥାଏ । ମୁଁ ଯାଇଥାଏ ପୁରସ୍କାର ଆଣିବାଲାଗି "ଶ୍ୱେତ ଚଇତାଳି" ପାଇଁ ।

ମଞ୍ଚ ଉପରେ ବସିଥାନ୍ତି ପବିତ୍ରମୋହନ ପ୍ରଧାନ ଆଉ ଡକ୍ଟର ମହତାବ ।

ମୋ ନାଁ ଡକା ହେଲା ।

ମଞ୍ଚ ଉପରକୁ ଗଲି ପୁରସ୍କାର ଆଣିବାଲାଗି ।

ଡକ୍ଟର ମହତାବ ହାତରେ ପୁରସ୍କାର ଧରିଥାନ୍ତି ।

ଛାତି ଭିତରଟା ଉଠୁଥାଏ, ପଡୁଥାଏ । ମୁଣ୍ଡ ନୁଆଁଇଲି, ନମସ୍କାର..

ତମକୁ ପୁରସ୍କାର ଦିଆହେବନି ।

ମୁଣ୍ଡ ଉପରକୁ କଲି । ଆଖିରେ ମୋର ବିସ୍ମୟ ଆଉ ଜିଜ୍ଞାସା ।

ମହତାବବାବୁ ହସୁଥାନ୍ତି । ଠିକ୍ ଅଛି । ତମେ ମତେ ପ୍ରତିଶ୍ରୁତି ଦିଅ ଯେ ପୁଣି ଲେଖା ଆରମ୍ଭ କରିବ ବୋଲି, ତା ହେଲେ ତମକୁ ପୁରସ୍କାର ମିଳିବ ।

ଆଖି ମୋର ଓଦା ହୋଇଗଲା । ଆଶ୍ଚର୍ଯ୍ୟ··· କେମିତି ଜାଣିଲେ ଡକ୍ଟର ମହତାବ ଯେ ମୁଁ ଲେଖା ବନ୍ଦ କରିଦେଇଚି ବୋଲି ? ଓଡ଼ିଶାର ଅନେକ ଲେଖକ ଲେଖିକାଙ୍କ ଭିତରେ ମୁଁ ଜଣେ ଅତି ନଗଣ୍ୟ । ହୁଏତ ବହୁତ ଲୋକ ଜାଣି ବି ନ ଥିବେ ମୋ ନାଁ—ଆଉ ଯିଏ ଜାଣିଥିବେ ମୁଁ ଲେଖୁଛି ବୋଲି, ହୁଏତ ସେମାନେ ଖବର ବି ରଖି ନ ଥିବେ ଯେ ମୁଁ ଲେଖା ବନ୍ଦ କରିଦେଇଚି ବୋଲି । କିନ୍ତୁ କେମିତି ଏ ଖବର ମହତାବବାବୁ

ରଖିଲେ ? ଏତେ ବିଖ୍ୟାତ ଲେଖକ, ଲେଖିକା ଆଜି ଆଜି ମୋଭଳି ଜଣେ ନଗଣ୍ୟ ଲେଖିକାଙ୍କୁ ସେ କେମିତି ମନେ ରଖିଲେ ?

ବହୁତ ବର୍ଷ ତଳେ ରବିବାର ପ୍ରଜାତନ୍ତ୍ରରେ କ୍ଷୁଦ୍ର ଗଳ୍ପ ପ୍ରକାଶନ ପାଇଁ ଉତ୍କଳର ମହତାବଙ୍କଠୁ ବନ୍ଧୁ ମିଳନରେ ପୁରସ୍କାର ପାଇଥିଲି ।

ଅଦ୍ଭୁତ—କେମିତି ସେ ମନେ ରଖିଚନ୍ତି ଏତେ କଥା ? ନାନା ବାଧା, ବନ୍ଧନ ଭିତରେ ବହୁତ ବର୍ଷ ପର୍ଯ୍ୟନ୍ତ ଲେଖିପାରି ନ ଥିଲି । ବହୁତ ଦିନ ନ ଲେଖିଲେ ପରେ କେମିତି ଗୋଟାଏ ଶିଥିଳତା ଆସି ଯାଇଥିଲା । ଲେଖିବି ଲେଖିବି ବୋଲି ଭାବି ବି ଲେଖିପାରେ ନା ।

କିନ୍ତୁ ଆଶ୍ଚର୍ଯ୍ୟ, ମୋର ସେଇ ଦୁର୍ବଳତା ଉପରେ ଆଘାତ କଲେ ଉତ୍କଳର ମହତାବ—ମୋର ସୁପ୍ତ କାମନାକୁ ପୁଣି ଚେତେଇ ଦେଲେ ।

ମଥା ନୁଆଁଇଲି— ମୁଁ ଲେଖିବି ନିଶ୍ଚୟ ।

ହସିଲେ ମହତାବବାବୁ—ପୁରସ୍କାର ମୋ ହାତରେ ଦେଇ ଆଶୀର୍ବାଦ କରିଥିଲେ ।

ମୁଁ ହାତଯୋଡ଼ି ପ୍ରଣାମ କଲି ।

ସେଇଠି ଠିଆହୋଇ ମୁଁ ପ୍ରତିଜ୍ଞା କରିଥିଲି, ମୁଁ ପୁଣି ଲେଖିବି । ଆଜିର ଏ ମୁହୂର୍ତ୍ତ ମତେ ପୁଣି ଲେଖନୀ ଧରେଇବା ଲାଗି ପ୍ରେରଣା ଦେଉଚି ସେଇ ପ୍ରେରଣାକୁ ମୁଁ ସଫଳ କରିବାକୁ ଚେଷ୍ଟା କରିବି ।

ମୁଁ ଫେରି ଆସିଥିଲି ।

ତା' ପରେ ମୁଁ ପୁଣି ଲେଖିବାକୁ ଆରମ୍ଭ କରିଥିଲି । ଯଦିଓ ଆଗପରି ନିୟମିତ ଭାବେ ଲେଖିପାରେ ନାହିଁ । ତଥାପି ମଝିରେ ମଝିରେ ଲେଖେ । ଖାଲି ଲେଖିବାର ଅଭ୍ୟାସ ରଖିବା ପାଇଁ ।

ମଝିରେ ମଝିରେ ମୋର ଦେଖା ହୁଏ ଉତ୍କଳର ମହତାବଙ୍କ ସଙ୍ଗେ । ବାହାଦରରେ ନ ହେଲେ ବନ୍ଧୁ ମିଳନରେ ।

ମୁଁ ନମସ୍କାର କରେ । ପଚାରେ, ଭଲ ଅଛନ୍ତି ?

ହସନ୍ତି ମହତାବବାବୁ, ଲେଖାଲେଖି କରୁଚ ତ ?

ମୁଁ ମୁଗ୍ଧ ହୋଇଛି, ଋଣୀ ହୋଇଛି । ଓଡ଼ିଆ ସାହିତ୍ୟ ପାଇଁ ଯିଏ ଏତେ ଚିନ୍ତା କରିଚନ୍ତି, କ୍ଷୁଦ୍ରରୁ କ୍ଷୁଦ୍ରତର ମଣିଷ ହାତରେ ବି ଯିଏ ଲେଖନୀ ଧରେଇବାର ପ୍ରୟାସ କରିଚନ୍ତି, ତାଙ୍କୁ ମୁଁ କେମିତି ଭାବରେ ସମ୍ମାନ ଜଣେଇବି ?

ଯିଏ କଳାପ୍ରେମୀ, ଦୁନିଆର ପ୍ରତି ପ୍ରାଣରେ ସେ କଳାର ସନ୍ଧାନ କରନ୍ତି । ତାଙ୍କ ପାଖେ ନଗଣ୍ୟ ଆଉ ବରିଷ୍ଠର ପାର୍ଥକ୍ୟ ନ ଥାଏ—ତାଙ୍କ ପାଖେ ବଡ଼ ଆଉ ସାନର ପାର୍ଥକ୍ୟ ନ ଥାଏ । ମହତାବବାବୁ ଚାହିଁଥିଲେ, ବଡ଼ଠୁ ଆରମ୍ଭ କରି ସାନ ପର୍ଯ୍ୟନ୍ତ ପ୍ରତ୍ୟେକେ ଓଡ଼ିଆ ସାହିତ୍ୟକୁ କାଣିଚାଏ ବି ଦାନ କରନ୍ତୁ । ମୃଗନାଭି କସ୍ତୁରୀ ପରି ସେ କାହାରେ ଖାଲି ପ୍ରତିଭାଙ୍କୁ ଖୋଜି ବୁଲିଚନ୍ତି । ସେ ଗୁଣିଆ ପରି ଗୁଣ ଚିହ୍ନିଚନ୍ତି ।

ସେ ହଉଚନ୍ତି ପ୍ରକୃତ ସ୍ରଷ୍ଟା ।

ମୁଁ ନଗଣ୍ୟ । ତଥାପି ମୁଁ ଚେଷ୍ଟା କରିବି ମୋର କାଣିଚାଏ ଭାଗରୁ କିଛି ଦାନ କରିବା ଲାଗି । ଜାଣିନି ମୁଁ ସଫଳ ହେବି ନା ନାହିଁ, ଓତେବେ ଯୋଉ ମହାନ୍ ପୁରୁଷ ମତେ ପ୍ରେରଣା ଦେଇଚନ୍ତି, ତାଙ୍କ ପାଖେ ମୁଁ ମୁଣ୍ଡ ନୁଆଁଉଚି ।

ସିଏ ମୋର ନମସ୍ୟ ।



# ଜନନାୟକ ଡକ୍ଟର ମହତାବ

ରମେଶଚନ୍ଦ୍ର ଧଳ

ଡକ୍ଟର ମହତାବ ଆଉ ବ୍ୟକ୍ତିବିଶେଷ ହୋଇ ରହିନାହାଁନ୍ତି । ସେ ଏକ ଅନୁଷ୍ଠାନରେ ପରିଣତ ହୋଇଗଲେଣି । ବିଗତ ଅର୍ଦ୍ଧଶତାବ୍ଦୀରୁ ଅଧିକ ସମୟଧରି ସେ କେବଳ ଓଡ଼ିଶାର ରାଜନୈତିକ ନୁହେଁ, ସାଂସ୍କୃତିକ ଓ ସାମାଜିକ ଜୀବନ ନିୟନ୍ତ୍ରଣ କରିଆସୁଛନ୍ତି । ସେ କେବଳ ଓଡ଼ିଶାର ଇତିହାସ ରଚନା କରି ଐତିହାସିକ ହୋଇନାହାଁନ୍ତି ସେ ଇତିହାସର ମୋଡ଼ ବଦଳାଇ ଦେଇଛନ୍ତି । ସେ ଏକଧାରରେ ଜନନାୟକ, ସାହିତ୍ୟିକ ଓ ଐତିହାସିକ ରୂପେ ଆପଣାକୁ ପ୍ରତିଷ୍ଠା କରିପାରିଛନ୍ତି ।

ଜୀବନସାରା ସେ, ସର୍ବଦା ଅନ୍ୟାୟ ଅନାଚାର ବିରୁଦ୍ଧରେ ସଂଗ୍ରାମ କରିଛନ୍ତି । ସେଥିପାଇଁ ତାଙ୍କୁ ଜୀବନର ବହୁମୂଲ୍ୟ ଦେବାକୁ ପଡ଼ିଛି । ସ୍ୱାଧୀନତା ଆନ୍ଦୋଳନରେ କିପରି ସେ ଅତି ସାହସର ସହିତ ବିଭିନ୍ନ ପରିସ୍ଥିତିରେ ନେତୃତ୍ୱ ଦେଇଥିଲେ ତାର ବହୁ କାହାଣୀ ଶୁଣାଯାଏ । ଏହିପରି ବ୍ୟକ୍ତିବିଶେଷଙ୍କ ତ୍ୟାଗଫଳରେ ଦେଶରୁ ବ୍ରିଟିଶ୍‌ମାନେ ଅପସରି ଗଲେ । କଂଗ୍ରେସ ଶାସନକୁ ଆସିଲା । ମାତ୍ର ପରେ ଆପଣାର ସ୍ୱାର୍ଥପାଇଁ କଂଗ୍ରେସ ଦଳର ଦୋଷ ଦୁର୍ବଳତାକୁ ସେ ଆଖି ବୁଜିଦେଇ ନାହାଁନ୍ତି । ପ୍ରତିବାଦ କରି କଂଗ୍ରେସ ଦଳ ଛାଡ଼ି ଦେଲେ ଏବଂ ରାଜ୍ୟରେ ଜନକଂଗ୍ରେସ ଦଳ ଗଠନକରି କଂଗ୍ରେସକୁ ଶାସନରୁ ହଟାଇବାକୁ ସକ୍ଷମ ହୋଇପାରିଥିଲେ । ଦେଶରେ ଆପଦକାଳୀନ ପରିସ୍ଥିତି ଘୋଷଣା ହେଲା । ତା ବିରୁଦ୍ଧରେ ପ୍ରଥମେ ସେ ଜନମତ ସୃଷ୍ଟି କରିବା ପାଇଁ ଚେଷ୍ଟାକରି ଜେଲ୍‌ବରଣ କଲେ । ଏହି ପରିସ୍ଥିତିର ସୁଯୋଗ ନେଇ ସେ ଲାଭବାନ ହୋଇପାରି ଥାଆନ୍ତେ, ଯାହାକି ତାଙ୍କର ସମସାମୟିକ ବହୁବନ୍ଧୁ ଓ ସହକର୍ମୀ କରିଥିଲେ । ମାତ୍ର ସେ ତାହା କରିନାହାନ୍ତି । ଏହାହିଁ ହେଉଛି ଡକ୍ଟର ମହତାବଙ୍କ ବିଶେଷତ୍ୱ ।

ଉତ୍କଳର ମହତାବଙ୍କୁ ବହୁପୂର୍ବରୁ ଜାଣିଥିଲେ ହେଁ ମୁଁ ରେଭେନ୍ସା କଲେଜ ସ୍କୁନସ୍କୁନର ସମ୍ପାଦକ ଥିବା ସମୟରେ ତାଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସିବାର ସୁଯୋଗ ପ୍ରଥମେ ପାଇଥିଲି । ତାପରେ ୧୯୭୫–୧୯୭୦ ପର୍ଯ୍ୟନ୍ତ ସାମ୍ବାଦିକ ଭାବେ ଭୁବନେଶ୍ୱରରେ ପ୍ରଜାତନ୍ତ୍ର, ଇଷ୍ଟର୍ଣ୍ଣ ଟାଇମସ୍‌ର ସ୍ୱତନ୍ତ୍ର ପ୍ରତିନିଧି ଏବଂ ଝଙ୍କାରର ସମ୍ପାଦନା କାର୍ଯ୍ୟକରି ଉତ୍କଳର ମହତାବଙ୍କୁ ଅଧିକ ନିକଟରେ ଜାଣିବାର ସୁଯୋଗ ମୋତେ ମିଳିଥିଲା । ତାଙ୍କର ଦୈନନ୍ଦିନ ଜୀବନ ଶିକ୍ଷଣୀୟ, ବ୍ୟକ୍ତିତ୍ୱ ଆକର୍ଷଣୀୟ ।

ତାଙ୍କ ଜୀବନର ବଡ଼ବଡ଼ ଘଟଣା ଅପେକ୍ଷା କେତେଗୋଟି ଛୋଟ ଛୋଟ ଘଟଣା ମୁଁ ଏଠାରେ ଉଲ୍ଲେଖ କରୁଛି । ବ୍ୟକ୍ତିଗତ ସମ୍ପର୍କ ରକ୍ଷା କରିବାରେ ଉତ୍କଳର ମହତାବ ଓଡ଼ିଶାରେ ଅଦ୍ୱିତୀୟ । ପ୍ରତିଦିନ ସେ ଅନେକ ଲୋକଙ୍କୁ ସାକ୍ଷାତ କରନ୍ତି । ସେମାନଙ୍କ ସମସ୍ୟା ସମାଧାନରେ ଯଥାଶକ୍ତି ସାହାଯ୍ୟ କରନ୍ତି । ଅନେକଙ୍କୁ ଚିଠି ଲେଖନ୍ତି । ତାଙ୍କ ସମର୍ଥକ, ସମାଲୋଚକ, ତୀବ୍ର ରାଜନୈତିକ ପ୍ରତିଦ୍ୱନ୍ଦୀ, ସାଧାରଣ କର୍ମୀ, ଶିକ୍ଷକ, ଛାତ୍ର, ବ୍ୟବସାୟୀ ସାଧାରଣ ମଣିଷ ତାଙ୍କ ପାଖକୁ ଆସିଥାଆନ୍ତି ବିଭିନ୍ନ ଭାବେ ତାଙ୍କର ସମର୍ଥନ, ସାହାଯ୍ୟ, ସହଯୋଗ କାମନାକରି । ରାଜନୈତିକ କର୍ମୀମାନେ କିଏ କେତେବେଳେ ଆସନ୍ତି କହିବା କଷ୍ଟ । କିଏ ଖୋଲାଖୋଲି କିଏ ବା ନିରୋଳାରେ ଗୋପନରେ ଆସିଥାନ୍ତି । କେହି ସନ୍ତୋଷ ବା କେହି ଅସନ୍ତୋଷ ନେଇ ଫେରନ୍ତି । ମାତ୍ର ତାଙ୍କ ଅଜଣାରେ ରାଜ୍ୟ ଭିତରେ ଖୁବ୍ କମ୍ ରାଜନୈତିକ, ସାଂସ୍କୃତିକ, ସାମାଜିକ କାର୍ଯ୍ୟ ହୋଇଥାଏ । ବେଳେ ବେଳେ ଦେଖାଯାଏ ତାଙ୍କ ଅଫିସ୍‌ରୁମ୍ ପରଦା ଆଡ଼େଇ ବାହାରି ଆସିବା ସଙ୍ଗେ ସଙ୍ଗେ କେତେକେ ତାଙ୍କର ସମାଲୋଚନା ଆରମ୍ଭ କରିଦିଅନ୍ତି । ମୁଁ ଏଥିରେ ଆଶ୍ଚର୍ଯ୍ୟ ହୁଏ ନାହିଁ । ଭାବେ ସତରେ ଫଳନ୍ତି ଗଛ ସିନା ଢେଲାମାଡ଼ ଖାଏ ।

ଉତ୍କଳର ମହତାବଙ୍କ ସାହିତ୍ୟିକ ଜୀବନ ଓ ସାଧନା ନିଶ୍ଚିତଭାବେ ଅନୁକରଣୀୟ । ସମସ୍ତ ବ୍ୟସ୍ତତା ମଧ୍ୟରେ ସେ ଅଧିକାଂଶ ସମୟ ଲେଖା-ପଢ଼ାରେ ଅତିବାହିତ କରିଥାଆନ୍ତି । ଝଙ୍କାର, ପ୍ରଜାତନ୍ତ୍ର ପାଇଁ କେବଳ

ସେ ଲେଖି ନାହାଁନ୍ତି । ଓଡ଼ିଶା ଏବଂ ଓଡ଼ିଶା ବାହାରର ବହୁ ପତ୍ରପତ୍ରିକା ପାଇଁ ସେ ବରାବର ଲେଖନ୍ତି । ଇଂରାଜୀ ଓ ହିନ୍ଦୀରେ ସେ ଟାଇପ୍ କରି ଜାଣନ୍ତି ।

ଡକ୍‌ଟର ମହତାବଙ୍କ ନିକଟକୁ ଦେଶ ବିଦେଶରୁ ବହୁ ପତ୍ରପତ୍ରିକା ଆସେ । ସେସବୁ ବିଭିନ୍ନ ରୁଚିର ବିଭିନ୍ନ ଅନୁଷ୍ଠାନର । ଅତି ମନଧ୍ୟାନର ସହିତ ସେଗୁଡ଼ିକ ଅଧ୍ୟୟନ କରନ୍ତି । ସେ କେବଳ ସୃଜନଶୀଳ ସାହିତ୍ୟ ସୃଷ୍ଟି କରୁନାହାନ୍ତି । ଓଡ଼ିଶାରେ ଏକ ବଳିଷ୍ଠ ସାହିତ୍ୟିକ ଗୋଷ୍ଠୀ ଓ ବାତାବରଣ ସୃଷ୍ଟି କରିବାରେ ସେ ସଫଳକାମ ହୋଇପାରିଛନ୍ତି । ଆଜି ଅନେକ ଯେଉଁମାନେ ଓଡ଼ିଶାରେ ପ୍ରତିଷ୍ଠିତ ସାହିତ୍ୟିକରୂପେ ଜଣାଶୁଣା, ସେମାନେ ଦିନେ ରବିବାର ପ୍ରଜାତନ୍ତ୍ର, ମୀନ ବଜାର, ନାଗିମହଲ ଅବା ଝଂକାରରେ ଲେଖକ ଜୀବନ ଆରମ୍ଭ କରିଥିଲେ ଏବଂ ଏବେ ମଧ୍ୟ ତାହା ଅବ୍ୟାହତ ରଖିଛନ୍ତି—ଏକଥା ଦୃଢ଼ତାର ସହିତ କୁହାଯାଇପାରେ ।

ପ୍ରଜାତନ୍ତ୍ର ପ୍ରଚାର ସମିତିର 'ବିଷୁବ ମିଳନ' ରାଜ୍ୟର ଲେଖକ ଶିଳ୍ପୀମାନଙ୍କ ଏକ ସାଂସ୍କୃତିକ ଉତ୍ସବରେ ପରିଣତ ହୋଇପଡ଼ିଲାଣି । ଏହି ଉତ୍ସବ ଅନୁକରଣରେ ଆଜି ଓଡିଶାର ବିଭିନ୍ନ ସ୍ଥାନରେ ଏହି ସମୟରେ ବିଷୁବ-ମିଳନ ପାଳିତ ହେଉଛି । ସାହିତ୍ୟ ଓ ସାଂସ୍କୃତିକ କ୍ଷେତ୍ରକୁ ଏହା ଡକ୍‌ଟର ମହତାବଙ୍କର ଏକ ସ୍ମରଣୀୟ ଦାନ । ଓଡ଼ିଶାରେ ଅନ୍ୟ କୌଣସି ରାଜନୈତିକ ନେତା ସାହିତ୍ୟ ଓ ସାଂସ୍କୃତିକ ବିକାଶ ନିମନ୍ତେ ଏପରି ସଫଳ ଭୂମିକା ଗ୍ରହଣ କରିପାରି ନାହାଁନ୍ତି । ବିଷୁବମିଳନ ସମୟରେ ନବୀନଠାରୁ ପ୍ରବୀଣ ପର୍ଯ୍ୟନ୍ତ ସମସ୍ତ ସାହିତ୍ୟିକ ଯେପରି ନିମନ୍ତ୍ରିତ ହୋଇ ଆସନ୍ତି ସେଥିପ୍ରତି ଡକ୍‌ଟର ମହତାବ ଦୃଷ୍ଟି ଦେଇଥାଆନ୍ତି । ସାନ ହୁଅନ୍ତୁ ବଡ଼ ହୁଅନ୍ତୁ ଯଦି କେହି ତାଙ୍କୁ କିଛି ବହିପତ୍ର ଦିଅନ୍ତି ତେବେ ସେ ତାହା ଅଧ୍ୟୟନ କରନ୍ତି । ମତାମତ ଦିଅନ୍ତି ।

ଅନେକଦିନ ତଳେ କଥା ପ୍ରସଙ୍ଗରେ ସେ ଥରେ କହିଥିଲେ, 'ଆଜିକାଲି ତୁମେ ଯୁବକମାନେ ସାଧନା ଅପେକ୍ଷା ପ୍ରଚାର ଉପରେ ଅଧିକ

ଶୁଣୁଥିଲେ ଦେଉଛ । ମାତ୍ର ଆମେମାନେ ଯାହାକିଛି କରୁଥିଲୁ, ସେଥିପାଇଁ ଆମର ସାଧନା ଥିଲା । ନିଷ୍ଠା ଥିଲା । ଛନ୍ଦୋବଦ୍ଧ କବିତା ଲେଖିବାପାଇଁ ସେ କିପରି ଅଭ୍ୟାସ କରୁଥିଲେ ତାହା ଦେଖାଇବା ପାଇଁ ସେ ତାଙ୍କ ଆଲମିରାରୁ କେତେକ ପୁରୁଣା ଖାତା କାଢ଼ି ଦେଖାଇଥିଲେ । ସେ କିପରି କବିତା ଲେଖା ଅଭ୍ୟାସ କରୁଥିଲେ ତାହା ମୁଁ ସେଥିରୁ ଦେଖିଥିଲି । ସେଥିରେ ସା, ରି, ଗା, ମା, ପା···ହାରମୋନିୟମର ବିଭିନ୍ନ ସ୍ୱରତରଙ୍ଗ ଲିପିବଦ୍ଧ ହୋଇଥିବାର ମୁଁ ଦେଖିଲି । ପ୍ରଶ୍ନ କଲି, ଏସବୁ କ'ଣ ? ସେ ହସି ହସି କହିଥିଲେ ସେ ହାରମୋନିୟମ୍ ବଜାଇ ଜାଣନ୍ତି । ଆଜିକାଲି ପରି ଗାଁ ଗହଳରେ ସଭାସମିତି କରିବା ପାଇଁ ଯେପରି ମାଇକ୍‌ର ସୁବିଧା ସୁଯୋଗ ଅଛି ତା ଆମବେଳେ ସେପରି ନଥିଲା । ଲୋକମାନଙ୍କୁ ଏକଜୁଟିତ କରିବା ପାଇଁ ଆମେ ପ୍ରଥମେ କିଛି ଗାଆଣ ବାଜଣା କରୁଥିଲୁ । ତାପରେ ଲୋକ ହୋଇଗଲେ ଆମେ ଗାଆଣ ବାଜଣା ବନ୍ଦକରି ସଭା କାର୍ଯ୍ୟରେ ଆଗେଇଥିଲୁ । ସେଦିନ ଏ ଆଲୋଚନାବେଳେ ଏକାମ୍ର ନିବାସକୁ ଗୋଟିଏ ଗ୍ରୁପ ଫଟୋ ଆସିଥିଲା । ଉତ୍କଳର ମହତାବ ତାଙ୍କ ହାରମୋନିୟମ୍‌ଟି ସେଦିନ ତାଙ୍କୁ ଦେଇ ଦେଇଥିଲେ । ପରେ ବୁଝିଲି ଯେ ଉତ୍କଳର ମହତାବ ସମସ୍ତ ରାଜନୈତିକ କାର୍ଯ୍ୟକଳାପ ମଧ୍ୟରେ ମଧ୍ୟ ଆପଣାର କେତେକ ସଉଖିନ୍ ଅଭ୍ୟାସ ହରାଇ ନ ଥିଲେ । ୧୯୪୮-୪୯ ମସିହାରେ ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ବିଭିନ୍ନ ପ୍ରକାରର ୭୮ ଗୋଟି ବଂଶୀ ରଖି ବରାବର ବଜାଉଥିଲେ । ସେ ମଧ୍ୟ କୀର୍ତ୍ତନ ଜାଣନ୍ତି ।

କେବଳ ସଙ୍ଗୀତ, ସାହିତ୍ୟ, ଗାଉଣା ବାଜଣାରେ ନୁହେଁ, ଖେଳ କସରତରେ ମଧ୍ୟ ତାଙ୍କର ବହୁ ଆଗ୍ରହ । ସେ ଏବେବି ବହୁ କ୍ରୀଡ଼ାନୁଷ୍ଠାନ ସହିତ ସଂପୃକ୍ତ । ତେବେ ଖେଳରେ ଆଉ ଅଂଶ ଗ୍ରହଣ କରୁନାହାନ୍ତି । ମାତ୍ର ବମ୍ବେରେ ରାଜ୍ୟପାଳ ଥିବା ପର୍ଯ୍ୟନ୍ତ ସେ ନିଜର ଗ୍ରାମ ଅଗରପଡ଼ାର ସାଧାରଣ ଲୋକଙ୍କ ସହିତ ରଜପର୍ବରେ ବରାବର ବାଗୁଡ଼ି ଖେଳୁଥିଲେ ।

ପ୍ରାର୍ଥନା ଓ ଆଧ୍ୟାତ୍ମିକ ଆଲୋଚନାରେ ସେ ବିଶେଷ ସମୟ ଦେଇ-ଥାଆନ୍ତି । ଯୋଗୀ ଅରବିନ୍ଦ ଏବଂ ମହେଶଯୋଗୀ ପ୍ରମୁଖ ବିଶିଷ୍ଟ ଧର୍ମପ୍ରାଣ

ବ୍ୟକ୍ତିମାନଙ୍କ ସମ୍ବନ୍ଧ ତାଙ୍କର ବ୍ୟକ୍ତିଗତ ସମ୍ପର୍କ ଥିଲା ଓ ରହିଛି । ଏବେ ସେ ବହୁ ଧର୍ମାନୁଷ୍ଠାନ ସହିତ ସଂପୃକ୍ତ । ଏସବୁ ସତ୍ତ୍ୱେ ବି ଧର୍ମନାମରେ ଯେ କୌଣସି ପାଗଳାମିକୁ ସେ ଘୃଣା କରନ୍ତି । ପ୍ରତ୍ୟେକେ ପ୍ରତିଦିନ କିଛି ସମୟ ପ୍ରାର୍ଥନା ଓ ସତ୍ ଆଲୋଚନାରେ ସମୟ ଦେବା ଉଚିତ୍ ବୋଲି ସେ କହି ଥାଆନ୍ତି ।

ଡକ୍ଟର ମହତାବ ପୋଷାକ ପରିଚ୍ଛଦ ଓ ରହିବା ପରିବେଶର ପରିଚ୍ଛନ୍ନତା ଉପରେ ବିଶେଷ ଗୁରୁତ୍ୱ ଅାରୋପ କରି ଥାଆନ୍ତି । ମାତ୍ର ବେଶ ପୋଷାକ ପାଇଁ ଅଯଥା ଖର୍ଚ୍ଚାନ୍ତ ହେବାକୁ ସେ ପସନ୍ଦ କରନ୍ତି ନାହିଁ । ସେ ଅତି ନିୟମିତ ଓ ଶୃଙ୍ଖଳିତ ଜୀବନ ଯାପନ କରିଥାଆନ୍ତି । ଖୁବ୍ ଭୋରରୁ ସେ ଶଯ୍ୟା ତ୍ୟାଗ କରନ୍ତି । ସକାଳ ଛ'ଟା ସାତଟା ସମୟ ମଧ୍ୟରେ ସେ କିଛିନା କିଛି ଲେଖାଲେଖି କରନ୍ତି । ଅନେକ ସମୟରେ ବହୁ ବିଶିଷ୍ଟ ବ୍ୟକ୍ତି ଏବଂ ରାଜ୍ୟର ଉଚ୍ଚ ଅଫିସରଙ୍କୁ ଏକାମ୍ର ନିବାସରେ ଏହି ସମୟରେ ଦେଖିବାକୁ ମିଳିଥାଏ । ଡକ୍ଟର ମହତାବଙ୍କ ସଙ୍ଗେ ନିରୋଳାରେ କିଛି ଆଲୋଚନା କରିବା ଲାଗି ଏହା ହେଉଛି ପ୍ରକୃଷ୍ଟ ସମୟ । ୯ଟା ଭିତରେ ସେ ତାଙ୍କର ସକାଳର ସମସ୍ତ କାମ ସାରିଦେଇ ଅଫିସକୁ ଆସନ୍ତି । ସେତେବେଳକୁ ତାଙ୍କ ଅପେକ୍ଷାରେ ଅନେକ ଥା'ଆନ୍ତି । ସାକ୍ଷାତ ଆରମ୍ଭ ହୁଏ । ଏହିପରି ପ୍ରାୟ ଦିନ ଗୋଟାଏ ପର୍ଯ୍ୟନ୍ତ ଚାଲେ । ତାପରେ ମଧ୍ୟାହ୍ନ ଭୋଜନ, ସାମାନ୍ୟ ବିଶ୍ରାମ । ଦିନ ତିନିଟା ସାଢ଼େ ତିନିଟା ଭିତରେ କଟକ ପ୍ରଜାତନ୍ତ୍ର ଯାଆନ୍ତି । ସେଠାରେ କିଛି ସମୟ କଟାଇ ସନ୍ଧ୍ୟାରେ ଫେରନ୍ତି । ସଭାସମିତି, କେଉଁଠିକୁ ଯିବାର ନଥିଲେ ଦୈନନ୍ଦିନ କାର୍ଯ୍ୟ କ୍ରମରେ ବ୍ୟତିକ୍ରମ ହୋଇ ନଥାଏ । ପ୍ରତିଦିନ କିଛିନା କିଛି ସଭାସମିତିର କାର୍ଯ୍ୟସୂଚୀ ତାଙ୍କ ଡାଏରୀରେ ଥାଏ । କ୍ଷମତାରେ ଥାଆନ୍ତୁ ଅବା ନଥାନ୍ତୁ ଡକ୍ଟର ମହତାବଙ୍କ ନିକଟରେ ଯେତେ ଭିଡ଼ ହୁଏ ତାହା ଅନ୍ୟତ୍ର ଦେଖା ଯାଏ ନାହିଁ ।

ଡକ୍ଟର ମହତାବଙ୍କ କଥା ଭାବିଲେ ମୋର ଗୋଟିଏ ଦ୍ରୁତଗାମୀ ନଦୀର କଥା ମନକୁ ଆସେ । ନଦୀ ଯେପରି କାହାକୁ ଅପେକ୍ଷା ନ କରି ଧାଇଁ

ଥାଏ ଏବଂ ଉଭୟ ପାର୍ଶ୍ୱ ଭୂମିକୁ ପଟୁପକାଇ ଉର୍ବର କରେ ଏବଂ ଜଳ ବିତରଣ କରି ଚାଲିଥାଏ, ଠିକ୍ ସେହିପରି ଡକ୍ଟର ମହତାବ ଜନମତ ନିୟନ୍ତ୍ରଣ କରି ଗଣ ଓ ଗଣସ୍ୱାର୍ଥକୁ ଆଗରେ ନେଇ ଚାଲିଥାଆନ୍ତି । ଅନ୍ୟ ନେତାମାନଙ୍କ ପରି ସଙ୍କଟଜନକ ପରିସ୍ଥିତିରେ ସେ କେବେ ବିଚଳିତ ହେବାର ଦେଖାଯାଇ ନାହିଁ । ତାହା ହିଁ ତାଙ୍କର ବ୍ୟକ୍ତିତ୍ୱର ବିଶେଷତ୍ୱ । ସେଥିପାଇଁ ସୁଦିନ ପରି ଦୁର୍ଦ୍ଦିନରେ ମଧ୍ୟ ଦେଶବାସୀ ଡକ୍ଟର ମହତାବ ବିଭିନ୍ନ ସମସ୍ୟା ନେଇ କ'ଣ କହୁଛନ୍ତି ତାହା ଜାଣିବା ପାଇଁ ଆଗ୍ରହର ସହିତ ଅପେକ୍ଷା କରି ରହିଥାନ୍ତି । କେବଳ କଥାରେ ପରାମର୍ଶ ଦେଇ ସେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ଦୁର୍ଦ୍ଦିନରେ ସେ ଯାଇ ଲୋକଙ୍କ ପାଖରେ ଠିଆ ହୁଅନ୍ତି । ତା'ର ଗୋଟିଏ ଶ୍ରେଷ୍ଠ ଦୃଷ୍ଟାନ୍ତ ଦେଉଛି ।

କଳାହାଣ୍ଡିରେ ମରୁଡ଼ି ପଡ଼ିଥାଏ । ସରକାର ଯେତିକି ଯତ୍ନନେବା କଥା ସେଥିପ୍ରତି ଉଦାସୀନ ରହିଥାଆନ୍ତି । ମନ୍ତ୍ରୀମାନେ ଏକପ୍ରକାର ନିଷ୍କ୍ରିୟ । ଜୁନ୍ ମାସର ମୁଣ୍ଡଫଟା ଖରା । ଡକ୍ଟର ମହତାବ କଳାହାଣ୍ଡି ବାହାରିଲେ ମଟର ଭିତରେ ଉତ୍ତାପରୁ ରକ୍ଷାପାଇବା ପାଇଁ ଟ୍ରକ୍‌ସିଟାଉଏଲ ଦୁଇଟଦାର କରି ଓଦା କରି ମୁଣ୍ଡରେ ପକାଇ । ସେ ଯିବା ବେଳେ ଏକାନ୍ତ ନିବାସରେ ଜଣେ ବଙ୍ଗୀୟ ଭଦ୍ରଲୋକ ଥିଲେ । ତାଙ୍କୁ ଦେଖି କହିଲେ ଏହାହିଁ ଡକ୍ଟର ମହତାବଙ୍କୁ ଜନନାୟକ କରି ଗଢ଼ିତୋଳିଛି । ବର୍ତ୍ତମାନ ମଧ୍ୟାହ୍ନ ପ୍ରହରରେ ଫୋନ୍ କରି ଦେଖ, ଅଧିକାଂଶ ମନ୍ତ୍ରୀଙ୍କ ରେସିଡେନ୍‌ସରେ ଫୋନ କି କେହି ଧରିବେ ନାହିଁ ।

ବିଂଶ ଶତାବ୍ଦୀର ଓଡ଼ିଆ ଜାତୀୟ ଜୀବନରେ ଡକ୍ଟର ମହତାବ ଏକ ଅବିଚ୍ଛିନ୍ନ ଅନୁଷ୍ଠାନ । ଆଜି ବିଭିନ୍ନ କ୍ଷେତ୍ରରେ ଦଳ ଦଳ ରାଜନୈତିକ କର୍ମୀ କୁହ ନେତା କୁହ, କୁହ ସାହିତ୍ୟ କବି ସମାଜସେବୀ ଯାହାକିଛି କୁହ ସୃଷ୍ଟି କରିଚାଲିଛନ୍ତି । ଜାତିର ସ୍ୱାର୍ଥପାଇଁ ଡକ୍ଟର ମହତାବ ଦୀର୍ଘାୟୁ ହୁଅନ୍ତୁ ଏହାହିଁ ମୋର ପ୍ରାର୍ଥନା ।

ଆଡ୍‌ଭୋକେଟ୍
ଭୁବନେଶ୍ୱର

# ମହତାବ : ପ୍ରଥମ ପରିଚୟ କାଳର ସ୍ମୃତି

ଅଧ୍ୟାପକ ଡକ୍ଟର ମନ୍ମଥ ନାଥ ଦାସ

ଛାତ୍ରାବସ୍ଥାର ପ୍ରଥମ ସାକ୍ଷାତକାଳରୁ ଆଜ ପର୍ଯ୍ୟନ୍ତ ଘନିଷ୍ଠ ପରିଚୟ ମଧ୍ୟରେ ମହତାବଙ୍କ ବ୍ୟକ୍ତିତ୍ୱକୁ ଯେପରି ମୁଁ ଦେଖିଛି ଓ ଜାଣିଛି, ତାହା ଚିନ୍ତା କଲାବେଳେ ଦୁଇ ପ୍ରକାର ବ୍ୟକ୍ତିତ୍ୱର ଉଦାହରଣ ମନେ ପଡ଼ୁଛି ।

ଥରେ ମହାତ୍ମା ଗାନ୍ଧୀ ଭାରତର ଦୁଇ ବରେଣ୍ୟ ସନ୍ତାନ ବାଳ-ଗଙ୍ଗାଧର ତିଲକ ଏବଂ ଗୋପାଳକୃଷ୍ଣ ଗୋଖଲେଙ୍କ ମଧ୍ୟରେ ନିମ୍ନ ମର୍ମରେ ତୁଳନା କରି କହିଥିଲେ : ତିଲକ ହେଉଛନ୍ତି ହିମାଳୟ ପରି ମହାନ ଓ ଉତ୍ତୁଙ୍ଗ, ତେଣୁ ତାଙ୍କ ସମୀପବର୍ତ୍ତୀ ହେବା ଦୁରୂହ; ଅପର ପକ୍ଷରେ ଗୋଖଲେ ହେଉଛନ୍ତି ପୁଣ୍ୟତୋୟା ଗଙ୍ଗା ସଦୃଶ, ଯାହାଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ସାହସ ସହିତ ସେ ନିଜକୁ ନିମଜ୍ଜିତ କରିପାରୁଥିଲେ । ଅର୍ଥାତ୍, ତିଲକଙ୍କ ପ୍ରତି ଥିଲା ସମ୍ମାନସୂଚକ ଭୟ, ଅଥଚ ଗୋଖଲେଙ୍କ ପ୍ରତି ନିର୍ଭୟ ଭକ୍ତି ।

ମୋର ଯେତେଦୂର ବିଶ୍ୱାସ, ମହତାବ ହେଉଛନ୍ତି ସେହି ପର୍ଯ୍ୟାୟର ବ୍ୟକ୍ତି, ଯାହାଙ୍କ ବ୍ୟକ୍ତିତ୍ୱ ପ୍ରତି କୌଣସି ବ୍ୟକ୍ତିର ମନରେ କୌଣସି ପ୍ରକାର ଭୟ ଆସିନାହିଁ । ତେଣୁ ସବୁ ଶ୍ରେଣୀର ଲୋକ ସବୁ ସମୟରେ ଯେ କୌଣସି ଉଦ୍ଦେଶ୍ୟ ବା କାମ ପାଇଁ ତାଙ୍କ ପାଖକୁ ନିର୍ବିଘ୍ନରେ ଆସି ପାରନ୍ତି ଏବଂ କ୍ଷମତାହୀନ କାଳରେ କିମ୍ବା କ୍ଷମତା ବାହାରେ ତାଙ୍କର ସେହି ମହନୀୟ ମନୋଭାବ ଅନ୍ୟମାନଙ୍କୁ ତାଙ୍କ ପ୍ରତି ଆକର୍ଷିତ କରି ରଖିଛି । ଅନ୍ୟ ପ୍ରତି ଉଦାର ମାନବିକ ଦୃଷ୍ଟିଭଙ୍ଗୀ ମହତାବଙ୍କ ନେତୃତ୍ୱର ପ୍ରକୃତ ବିଶେଷତ୍ୱ । ରାଜନୀତି କ୍ଷେତ୍ରରେ ଏବଂ ଘଟଣା ଚକ୍ରରେ

ହୁଏତ ଅନେକେ ତାଙ୍କର ଶତ୍ରୁ ହୋଇଛନ୍ତି କିମ୍ବା ଶତ୍ରୁ ଆଚରଣ କରିଛନ୍ତି, କିନ୍ତୁ ସେହିମାନଙ୍କୁ ପୁଣି ତାଙ୍କର ନିକଟତମ ଓ ଅନୁଗତ ବନ୍ଧୁରୂପେ ଦେଖିବାକୁ ମିଳୁଛି । ଯେଉଁମାନେ ରାଜନୀତି ପାଖରୁ ଦୂରରେ, ସେମାନଙ୍କ ପାଇଁ ମହତାବ ଜଣେ ସମ୍ମାନିତ ଜନନାୟକ ଏବଂ ସମସ୍ତଙ୍କର ପ୍ରିୟ ହିତୈଷୀ ରୂପେ ହିଁ ସବୁଦିନ ପାଇଁ ପରିଚିତ ।

ଏଥିସଙ୍ଗେ ଆଉ ଏକ ଚାରିତ୍ରିକ ଗୁଣ ଉଲ୍ଲେଖଯୋଗ୍ୟ । ଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂଲଣ୍ଡରେ ଦୁଇଜଣ ବିଶିଷ୍ଟ ରାଜନୀତିଜ୍ଞ ଥିଲେ ଡିସରାଏଲି ଏବଂ ଗ୍ଲାଡଷ୍ଟୋନ । ଉଭୟେ ଥିଲେ ଇଂରେଜ ଜାତିର ନମସ୍ୟ । ପ୍ରଧାନମନ୍ତ୍ରୀ କିମ୍ବା ବିପକ୍ଷ ଦଳର ନେତା ରୂପେ ଉଭୟଙ୍କର ଭୂମିକା ଥିଲା ବୈଶିଷ୍ଟ୍ୟପୂର୍ଣ୍ଣ । କିନ୍ତୁ ଉଭୟଙ୍କ ଚରିତ୍ରରେ ପୁଣି ଦେଖିବାକୁ ମିଳୁଥିଲା ବିପରୀତମୁଖୀ ଗୁଣ । ଉଭୟଙ୍କୁ ସାକ୍ଷାତ କଲାପରେ ଏ ବିଷୟରେ ଜଣେ ବୁଦ୍ଧିମାନ ବ୍ୟକ୍ତି ବର୍ଣ୍ଣନା କରିଥିଲେ : ଡିସ୍‌ରାଏଲିଙ୍କ ସହ ସାକ୍ଷାତ କରି ଫେରିଲା ପରେ ମୋତେ ଜଣାଗଲା ମୁଁ ନିଜକୁ ଯାହା ଭାବିଥିଲି ତା' ଠାରୁ ଅନେକ ବଡ଼; ଅଥଚ ଗ୍ଲାଡଷ୍ଟୋନଙ୍କ ସହ ସାକ୍ଷାତ ପରେ ମୋତେ ବୋଧହେଲା ମୁଁ ନିଜକୁ ଯାହା ଭାବିଥିଲି ତା' ଠାରୁ ଅନେକ ଶ୍ରେଷ୍ଠ ।

ଏ ପୁଣି ବ୍ୟବହାରର ବିଶେଷତ୍ୱ । ଅର୍ଥାତ୍, ଜଣେ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ପାଖରୁ ସାମାନ୍ୟ ଲୋକେ ମଧ୍ୟ ସମ୍ମାନ, ପ୍ରେରଣା ଓ ଉତ୍ସାହ ପାଇ ଗର୍ବର ଫେରି ଆସନ୍ତି, ଅଥଚ ସେହିପରି ପ୍ରତିଷ୍ଠିତ ଅପର ନେତାଙ୍କ ପାଖରୁ ସେମାନେ ନିଜର ଦୋଷଦୁର୍ବଳତା କିମ୍ବା ଅଯୋଗ୍ୟତାର ପରିଚୟ ପାଇ ଲଜ୍ଜିତ ହୋଇ ଆସନ୍ତି ।

ମୋ ପରି ଯେଉଁମାନେ ମହତାବଙ୍କ ସହିତ ଖୁବ ଅବସ୍ଥାରୁ ସମ୍ପର୍କ ରଖିବାର ସୁଯୋଗ ପାଇଛନ୍ତି ସେମାନେ ସମସ୍ତେ ଏକମତ ହେବେ ଯେ ତାଙ୍କ ଆଗରେ ଆମର ନିଜତ୍ୱ କେବେ ହେଲେ ହ୍ରାସ ପାଇନାହିଁ, ଅପର ପକ୍ଷରେ ତାଙ୍କ ବ୍ୟବହାର ଓ ପ୍ରେରଣା ପ୍ରକାରାନ୍ତରେ ଆତ୍ମବିଶ୍ୱାସ ଆଣି ଦେଇଛି ଯେ ଆମେ ମଧ୍ୟ ଯୋଗ୍ୟ ହେବାପାଇଁ ସକ୍ଷମ, କିମ୍ବା ଆମର ମଧ୍ୟ ଯଥେଷ୍ଟ ନିଜସ୍ୱ ଗୁଣ ରହିଛି ।

ଅନେକ ଦିନ ଆଗର କଥା । ୧୯୪୬ ମସିହା । ମୁଁ ସେତେବେଳେ ରେଭେନ୍‌ସା କଲେଜରେ ବି. ଏ. କ୍ଲାସର ଛାତ୍ର । ବିଶ୍ୱ ମହା-ଯୁଦ୍ଧ ଶେଷ ହୋଇଛି । ଭାରତର ସ୍ୱାଧୀନତା ଆସନ୍ନପ୍ରାୟ । ଚାରିଆଡେ ନବ ଜାଗରଣ, ନୂତନ ଉନ୍ମାଦନା । ଚାରିଆଡେ ରାଜନୈତିକ ଚଞ୍ଚଳତା । ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ବୀରତ୍ୱ କାହାଣୀ ଦେଶବାସୀଙ୍କର ମୁଖ୍ୟ ଆଲୋଚ୍ୟ ବିଷୟ । ଏଣେ, ଆଜାଦ ହିନ୍ଦ୍ ଫୌଜର ମୁଖ୍ୟ ସେନାପତି-ମାନଙ୍କର ବିଚାର ଚାଲିଛି । ଆଉ ବନ୍ଦୀମାନଙ୍କର ମୁକ୍ତି ପାଇଁ ଚାରିଆଡେ ଆନ୍ଦୋଳନ, ବିକ୍ଷୋଭ ଓ ଜନ ସମାବେଶ । ସେହି ସମୟର ଗୋଟିଏ ଦିନ । ରେଭେନ୍‌ସା କଲେଜ ପାଖରୁ ଦୀର୍ଘ ଶୋଭାଯାତ୍ରା ଚାଲିଲା କଟକ ଟାଉନ ହଲ ପର୍ଯ୍ୟନ୍ତ । ସେଠାରେ ବିରାଟ ସଭାର ଆୟୋଜନ ହୋଇଛି । ସଭାପତିତ୍ୱ କରିବେ ହରେକୃଷ୍ଣ ମହତାବ । ଅନେକ ନେତା ଓ ବିଶିଷ୍ଟ ବ୍ୟକ୍ତି ଭାଷଣ ଦେବେ । ଛାତ୍ରମାନଙ୍କ ମଧ୍ୟରୁ କହିବାପାଇଁ ମୋତେ ଉଦ୍ୟୋକ୍ତାମାନଙ୍କର ଆଦେଶ ମିଳିଥାଏ ।

ସେହିଦିନ ମହତାବଙ୍କ ସହିତ ମୋର ପ୍ରଥମ ସାକ୍ଷାତ । ଓଡ଼ିଶା ରାଜନୀତିର ସେତେବେଳେ ସେ ପ୍ରଧାନ କର୍ଣ୍ଣଧାର । ଭାରତୀୟ ରାଜନୀତିରେ ତାଙ୍କର ସ୍ଥାନ ପୁଣି ଅତି ଉଚ୍ଚରେ । ମୁଁ ସାମାନ୍ୟ ଜଣେ କଲେଜ ଛାତ୍ର । ଅନେକ ପଛରୁ ବସି ଦୂରରୁ ମୁଁ ତାଙ୍କୁ ସଭାପତି ଆସନରେ ଦେଖୁଥିଲି । ଭାଷଣ ପରେ ଭାଷଣ-ଚାଲିଛି । ଶେଷରେ ପଡ଼ିଲା ମୋର ପାଳି । ପ୍ରାୟ ପାଞ୍ଚ ଦଶ ମିନଟ ଏଣୁ ତେଣୁ କ'ଣ କହି ମୋ ଯାଗାକୁ ଫେରିଲି । ସେତିକିବେଳେ ଜଣେ କଂଗ୍ରେସ କର୍ମୀ ପାଖକୁ ଆସି ଖଣ୍ଡିଏ କାଗଜ ବଢାଇ ଦେଲେ । ଲେଖାଥିଲା, ସଭାପରେ ମୋ ସହିତ ଦେଖା କରିବ, ମହତାବ ।

ସଭା ଶେଷ ହେଲା । ମହତାବଙ୍କ ଚାରିପଟେ ଅନେକ ଲୋକ । ମୁଁ ମଧ୍ୟ ଆଗ୍ରହରେ ଛିଡ଼ା ହୋଇ ରହିଛି, କାରଣ ସେ ମୋତେ ଡାକିଛନ୍ତି । ହଠାତ୍ ମୋ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । କହିଲେ : "ଖୁବ୍ ସୁନ୍ଦର ଭାଷଣ ଦେଇଛ । ତୁମର ନାମ କ'ଣ ?" ମୁଁ ନାମ କହିଲି । ସେ ପୁଣି କହିଲେ : "ସ୍ୱରାଜ ଆଶ୍ରମରେ ଆଗାମୀ କାଲି ଦେଖା କରିବ ।"

ମହତାବଙ୍କ ମୁହଁରୁ ସେହି ସାମାନ୍ୟ ପ୍ରଶଂସା ଯେ ମୁଁ ଭଲ ଭାଷଣ ଦେଉଛି, ଏହା ଜଣେ ଅଳ୍ପ ବୟସ୍କ ଯୁବ ପାଇଁ ଯଥେଷ୍ଟ ପ୍ରେରଣା ଓ ଆତ୍ମବିଶ୍ୱାସ ଆଣି ଦେଇଥିଲା । ତାଙ୍କର ସେହି ଉଚ୍ଚ ମନୋଭାବ ତାଙ୍କ ପ୍ରତି ମୋତେ ଏବଂ ମୋର ଅନେକ ସହପାଠୀଙ୍କୁ ସ୍ୱତଃ ଆକର୍ଷଣ ଆଣି-ଦେଇଥାଏ । ସନ୍ଧ୍ୟା ପରେ ସନ୍ଧ୍ୟା ନିଜର ପାଠ ପଢ଼ା ଛାଡ଼ିକରି ଆମେ ଯାଉଥାଉଁ ସ୍ୱରାଜ ଆଶ୍ରମକୁ । ନିଜପ୍ରତି କର୍ତ୍ତବ୍ୟ ଅପେକ୍ଷା ଦେଶର ଡାକ ଥିଲା ପ୍ରକୃତ ଉନ୍ମାଦନା । ତାହାହିଁ ଥିଲା ସେହି ସମୟର ବିଶେଷତ୍ୱ । ମହତାବଙ୍କ ସହ ଆମର ଘନିଷ୍ଠ ସମ୍ପର୍କ ବଢ଼ି ଉଠିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ଅନେକ ବିଷୟ ଉପରେ ଆଲୋଚନା କଲାବେଳେ ଆମେ ବିନା ଦ୍ୱିଧାରେ ନିଜର ଅଜ୍ଞତାର ପରିଚୟ ମଧ୍ୟ ଦେଇ ପାରୁଥିଲୁ, କିନ୍ତୁ ସେଥିପାଇଁ ତାଙ୍କର ଆମମାନଙ୍କ ପ୍ରତି କୌଣସି ହେୟ ଭାବ ନଥିଲା । ସେଥିପାଇଁ ମହତାବଙ୍କ ସ୍ୱରାଜ ଆଶ୍ରମରୁ ଫେରିଲାବେଳେ ଆମେ ନିଜ ନିଜକୁ ଅନେକ ବଡ଼ ବୋଲି ଭାବି ଫେରି ଆସୁଥିଲୁଁ ।

ଦିନକର କଥା । ପ୍ରଥମ ସାଧାରଣ ନିର୍ବାଚନ ପାଇଁ ପ୍ରସ୍ତୁତି ଚାଲିଛି । ବିଭିନ୍ନ ନିର୍ବାଚନମଣ୍ଡଳୀ ପାଇଁ ପ୍ରାର୍ଥୀ ବଛା ହେଉଛି । ସ୍ୱରାଜ ଆଶ୍ରମ ସେତେବେଳେ ସତେ ଯେପରି ଓଡ଼ିଶାର ରାଜନୈତିକ ରାଜଧାନୀ । ଏବଂ, ମହତାବ ସେତେବେଳକୁ ରାଜନୀତିର ପ୍ରଧାନ ସେନାପତି । କଲେଜ ହଷ୍ଟେଲରେ ଖବର ପାଇଲି ମୋ ଅଞ୍ଚଳ ଉତ୍ତର ବାଲେଶ୍ୱର ପାଇଁ ଜଣେ ବାହାରର ଲୋକଙ୍କୁ କଂଗ୍ରେସ ପ୍ରାର୍ଥୀ ରୂପେ ମନୋନୀତ କରାଗଲାଣି । ଖରାବେଳ । ଦଉଡ଼ିଲି ସ୍ୱରାଜ ଆଶ୍ରମକୁ ପ୍ରତିବାଦ ଜଣାଇ-ବାକୁ, ଆମ ଅଞ୍ଚଳର ଜଣେ ଲୋକଙ୍କୁ ସେ ଟିକଟ୍ ଦିଆଯିବା ଉଚିତ୍, ଏକଥା କହିବା ପାଇଁ । ମୁଁ ସେତେବେଳେ ଅନେକ ସମୟରେ ଖଦଡ଼ ପିନ୍ଧୁଥିଲି । କିନ୍ତୁ ସେଦିନ କଂଗ୍ରେସକର୍ମୀଙ୍କର ସେହି ସମାବେଶକୁ ଗଲାବେଳେ ପେଣ୍ଟ ସାର୍ଟ ପିନ୍ଧି ତରତରରେ ଚାଲି ଯାଉଛି । ଆଶ୍ରମର ପରିସର ଭିତରେ ଅସଂଖ୍ୟ କଂଗ୍ରେସ କର୍ମୀ, ଅଧିକାଂଶ ବୟସ୍କ ଏବଂ ବରିଷ୍ଠ ବ୍ୟକ୍ତି । ଗୋଟିଏ କୋଠରୀ ମଧ୍ୟରେ ବାଲେଶ୍ୱର ଜିଲ୍ଲାର ମୁଖ୍ୟ କର୍ମୀମାନେ ବସିଥାଆନ୍ତି । ମୁଁ ସିଧା ସେହି କୋଠରୀ ଭିତରେ ପଶିଲି

ଏବଂ ଅନ୍ୟମାନଙ୍କ ବୟସ କମ୍ବା ସମ୍ମାନ ପ୍ରତି ଭ୍ରୂକ୍ଷେପ ନକରି ଆକ୍ଷେପ କରିବାକୁ ଲାଗି ପଡ଼ିଲା । କ'ଣ ଆମ ଅଞ୍ଚଳରେ ମଣିଷ ନାହାନ୍ତି ? ଆପଣମାନେ ନିଜ ଇଚ୍ଛାରେ ବାହାରର ଲୋକଙ୍କୁ ଆମ ଉପରେ ଲଦି ଦେବେ କାହିଁକି ? ଏହା କ'ଣ କଂଗ୍ରେସର ବିଚାର ? ଇତ୍ୟାଦି, ଇତ୍ୟାଦି । ଜଣେ ବୟୋଜ୍ୟେଷ୍ଠ ନେତା ସେପରି ଧୃଷ୍ଟତା ସହ୍ୟ କରିପାରି ନାହାନ୍ତି । ସେ ଉତ୍ତେଜିତ ସ୍ୱରରେ କହି ଉଠିଲେ : "ତୁମେ ଜେଲ ଯାଇଥିଲ ? କଂଗ୍ରେସର ନୀତି କଥା କିଛି ଜାଣିଛ ? ଯାଅ, ଏ ପୋଷାକ ବଦଳକରି ଖଦଡ଼ ପିନ୍ଧି ଫେରିଆସ, ତା ପରେ ସ୍ୱରାଜ ଆଶ୍ରମରେ ଛିଡ଼ା ହୋଇ ଆମ ସାଙ୍ଗରେ କଥାବାର୍ତ୍ତା କରିବ ।"

ଦିନ ୧୨ଟା ଖରାରେ ରେଭେନ୍‌ସା କଲେଜ ପାଖରୁ ସ୍ୱରାଜ ଆଶ୍ରମ ପାଖକୁ ଚାଲି ଚାଲି ଆସିଥିଲି । ସେପରି ଅବସ୍ଥାରେ ଏପରି କଥା ସହ୍ୟ କରିବା ଶକ୍ତି ସେ ବୟସରେ ଆସି ନଥିଲା । ଘଣ୍ଟାଏ କାଳ ତର୍କ ବିତର୍କ କରି ସେହି ବୟସ୍କ ନେତାଙ୍କୁ କହିଲି : "ଚାଲନ୍ତୁ ମହତାବଙ୍କ ପାଖକୁ । ସେ ବିଚାର କରିବେ ।"

କବା୫ ଠେଲି ମହତାବଙ୍କ ଅଫିସ ଭିତରେ ପଶିଲୁଁ । ସେଠାରେ କେତେଜଣ ବିଶିଷ୍ଟ ନେତା ବସିଥାନ୍ତି । ଆଲୋଚନା ଚାଲିଥାଏ । ସମସ୍ତେ ଗମ୍ଭୀର । ମୁଁ କହି ପକାଇଲି : "ସାର୍ , ଖଦଡ଼ ନ ପିନ୍ଧିଲେ କମ୍ବା ଜେଲ ଯାଇନଥିଲେ ସ୍ୱରାଜ ଆଶ୍ରମକୁ ଆସିବା କମ୍ବା ନିଜ ଅଞ୍ଚଳ କଥା କହିବା କ'ଣ ଅନ୍ୟାୟ ?" ସବୁକଥା ତରତରରେ ଏକାଥରକେ କହିଗଲି । ମହତାବ ବାବୁ ହସି ଉଠିଲେ । ଅନ୍ୟ ଭଦ୍ରଲୋକ କିଛି କହିବା ପୂର୍ବରୁ ସେ ତାଙ୍କୁ ପଚାରି ଦେଲେ : "କହୋ, ସେ ପିଲା କ'ଣ ତୁମରି ସାଙ୍ଗରେ ଜନ୍ମିଥିଲେ, ନା ଏକାସାଙ୍ଗରେ ରାଜମହଲରେ ପଢ଼ିଥିଲେ, ନା ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଯେ ତୁମରି ପରି ଖଦଡ଼ ପିନ୍ଧିଥାନ୍ତେ, ଜେଲ୍ ଯାଇଥାନ୍ତେ ?"

ମହତାବଙ୍କ ମୁଖରୁ ସେ ବୟସ୍କ ଲୋକଙ୍କ ନାମ ଶୁଣି ସଙ୍ଗେ ସଙ୍ଗେ ତାଙ୍କୁ ପ୍ରଣାମ କଲି । ତାଙ୍କ ସାଙ୍ଗରେ ଆଗରୁ ପରିଚୟ ନଥିଲା, କିନ୍ତୁ

ବାପାଙ୍କ ପାଖରୁ ତାଙ୍କ ନାମ ପିଲା କାଳରୁ ଶୁଣିଥିଲି । ସେ ଥିଲେ ଜଣେ ନିଷ୍ଠାପର ରାଜନୀତିଜ୍ଞ, ତ୍ୟାଗୀ ଦେଶ ସେବୀ ଏବଂ ପବିତ୍ର ମନୁଷ୍ୟ, ଅନେକ କଷ୍ଟ ପାଇଛନ୍ତି, ଦେଶ ହିତରେ ନିର୍ଯ୍ୟାତନା ଭୋଗିଛନ୍ତି । ନିଜ ବ୍ୟବହାର ପାଇଁ ଦୁଃଖ ପ୍ରକାଶ କରିବା ପୂର୍ବରୁ ମହତାବ ବାବୁ ମୋତେ କହିଲେ : "କହୋ, ମନ୍ମଥ, ଏତେ ଭାବପ୍ରବଣ ହେଲେ ଚଳିବ ? ରାଜନୀତି ଯଦି କରିବ, କଥା ସହ୍ୟ କରିବାକୁ ଶିଖ । ତା ଯଦି ନ ପାରିବ, ନଦୀ କୂଳରେ ବସି କବିତା ଲେଖିବାକୁ ଚେଷ୍ଟାକର ।" ତାଙ୍କର ଏକଥା ଶୁଣି ଅନ୍ୟମାନେ ହସି ଉଠିଲେ ।

ମହତାବଙ୍କ ହସ ଓ କୌତୁକାତ୍ମକ କଥା ମଧ୍ୟରେ ମୋର ଭାବପ୍ରବଣତା ଉଭେଇ ଗଲା । ମୁଁ କହିବାକୁ ଯାଇଥିଲି ଆମ ଅଞ୍ଚଳର ଉଦୀୟମାନ ଦେଶସେବୀ ଓ ପ୍ରତିଭାଶାଳୀ ଶିକ୍ଷିତ ଯୁବକ ଶ୍ରୀ ଶଶୀକାନ୍ତ ଭଞ୍ଜଙ୍କୁ କଂଗ୍ରେସ ଟିକେଟ ଦେବାପାଇଁ । ମହତାବ ଶ୍ରୀଯୁକ୍ତ କରୁଣାକର ପାଣିଗ୍ରାହୀଙ୍କୁ ଡାକ ପଠାଇ ମୋ ସାଙ୍ଗରେ ପରିଚୟ କରାଇଦେଲେ । ତାଙ୍କୁ ଟିକେଟ ମିଳିବା ପ୍ରାୟ ଠିକ୍ ହୋଇ ଗଲାଣି । ମହତାବ ତାଙ୍କୁ କହିଲେ "କରୁଣାକର, ଏମାନେ ସନ୍ତୁଷ୍ଟ ନ ହେଲେ ତୁମେ ଟିକେଟ ପାଇ କଣ କରିବ ?" କରୁଣାକର ବାବୁ ମୋତେ କହିଲେ, "ତୁମେ ମୋ ନାତି ସାଙ୍ଗରେ ପଢ଼ୁଛ, ତେଣୁ ମୋ ନାତି ପରି । ମୋତେ ପର ଭାବିଲେ ଚଳିବ ?"

ସେ ଯୁଗର ରାଜନୀତିରେ ବିଶେଷ ଈର୍ଷା କିମ୍ବା ବିଦ୍ୱେଷ ନଥିଲା । ଦେଶ ସେତେବେଳେ ବି ସ୍ୱାଧୀନ ହୋଇନାହିଁ । ଗାନ୍ଧୀ ଯୁଗର ରାଜନୀତିରେ ପ୍ରତ୍ୟେକଙ୍କ ପାଇଁ ଶାଳୀନତା ଓ ଶୃଙ୍ଖଳାଜ୍ଞାନ ଏକ ମାନସିକ ଅବସ୍ଥାରେ ପରିଣତ ହୋଇ ଯାଇଥାଏ । ଉଚ୍ଚ ନେତୃମଣ୍ଡଳୀର ନିର୍ଦ୍ଦେଶ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ଆବଶ୍ୟକତା ମଧ୍ୟ ନଥାଏ ।

ମୋର ବି. ଏ. ପରୀକ୍ଷା ଶେଷ ହେଲା ୧୯୪୭ ଗ୍ରୀଷ୍ମଛୁଟି ପୂର୍ବରୁ । ଆଗରେ ଦୀର୍ଘ ଅବକାଶ । ମହତାବ ବାବୁ ସେତେବେଳକୁ ଓଡ଼ିଶାର

ପ୍ରଧାନ ମନ୍ତ୍ରୀ (ମୁଖ୍ୟମନ୍ତ୍ରୀ ପଦବୀ ପରେ ପ୍ରଚଳିତ ହେଲା) । ତାଙ୍କ ଆଦେଶ ନେଇ ନିଜ ଅଞ୍ଚଳକୁ ଗଲି, କଂଗ୍ରେସ କର୍ମୀମାନଙ୍କ ସହିତ ମିଳିମିଶି ଗଠନ ମୂଳକ କାମ କରିବା ପାଇଁ । ବାଲିଆପାଳ ପାଖରୁ କିଛି ଦୂରରେ କର୍ମୀ ସମ୍ମିଳନୀ ବସିଥାଏ । ମୁଁ ସେଥିରେ ଯୋଗ ଦେଲି । ସେଠାରେ ଦୂରରୁ ଆସିଥିବା ଜଣେ ଲୋକ ଆମମାନଙ୍କ ଆଗରେ ଆପତ୍ତି ଦେଲେ, ତାଙ୍କୁ ସମାଜରେ ବାସନ୍ଦ ରଖା ଯାଇଛି, କାରଣ ଗ୍ରୀଷ୍ମ କାଳର ଦିନେ ମଧ୍ୟାହ୍ନରେ ତୃଷାର୍ତ୍ତ ଅବସ୍ଥାରେ ନିଜ ଇଲାକାରେ ଗୋଟିଏ ହାଟ ଉପରେ ସେ ଜଣେ ମୁସଲମାନ ପାଖରୁ ପାଣି ମାଗି ପିଇଥିଲେ । ସଙ୍ଗେ ସଙ୍ଗେ ମୁଁ ଘୋଷଣା କରିଦେଲି : " ଏପରି ଅନ୍ଧ ବିଶ୍ୱାସ ଆଉ ଚାଲିବ ନାହିଁ । ମଣିଷ ମଣିଷ ଭିତରେ ପାର୍ଥକ୍ୟ ରଖିବା ପାଇଁ ଧର୍ମାନ୍ଧ ବ୍ୟକ୍ତି-ମାନଙ୍କର ଏପରି କଠୋର କାର୍ଯ୍ୟାନୁଷ୍ଠାନ ଆଉ ବରଦାସ୍ତ କରାଯିବ ନାହିଁ । ତେଣୁ ଆମେ ୨୦ ଜଣ ପର୍ଯ୍ୟନ୍ତ କଂଗ୍ରେସ କର୍ମୀ ଓ ଯୁବକ ପ୍ରକାଶ୍ୟ ଭାବରେ ଭୋଗରାଇ ଗ୍ରାମର ବିଶିଷ୍ଟ କଂଗ୍ରେସକର୍ମୀ ଜଫର ସାହେବଙ୍କ ଘରେ ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକେ ମିଳିମିଶି ପଂକ୍ତି ଭୋଜନ କରିବୁଁ ।" ଜଫିର ସାହେବ ଏବଂ ଶୋଭାନ୍ ସାହେବ ରାଜି ହୋଇଗଲେ । ପଂକ୍ତି ଭୋଜନର ତାରିଖ ଘୋଷଣା କରି ଦେଲି । ଏବଂ ବାଲିଆପାଳ ପାଖରୁ ଭୋଗରାଇ ଯାଇ ଆମେ ସେଠାରେ ମୁସଲମାନ ଘରେ ହିନବେଳେ ବହୁ ଓ ଆଡ଼ମ୍ବର ଭିତରେ ଭୋଜନ କଲୁଁ ।

ସେତେବେଳେ ଏପରି ଘଟଣା ସମାଜ ପକ୍ଷରେ ସହ୍ୟ କରିବା ସମ୍ଭବ ନଥିଲା । ସଙ୍ଗେ ସଙ୍ଗେ ସାରା ଅଞ୍ଚଳରେ ଚହଳ ପଡ଼ିଗଲା । ଯେଉଁ-ମାନେ ଖାଇଛନ୍ତି ସେମାନଙ୍କୁ ସମସ୍ତଙ୍କୁ ବାସନ୍ଦ କରିବାପାଇଁ ଅନେକ ଲୋକ ଲାଗିପଡ଼ିଲେ । ମୁଁ ସବୁକଥା ମହତାବଙ୍କ ପାଖକୁ ଲେଖି ଜଣାଇ-ଥିଲି । ଆଶ୍ଚର୍ଯ୍ୟର କଥା, ତାଙ୍କର ବ୍ୟସ୍ତ ରାଜନୈତିକ ଜୀବନରେ ସେ ଏପରି ସାମାନ୍ୟ କଥା ଉପରେ ଏବଂ ଜଣେ ନଗଣ୍ୟ କଲେଜ ଯୁବକକୁ ଉତ୍ତର ଦେବାପାଇଁ ସମୟ ପାଉଥାନ୍ତି । ସାରା ଓଡ଼ିଶାର ଶାସକ ଦାୟିତ୍ୱ ତାଙ୍କ ହାତରେ । ତଥାପି, ଓଡ଼ିଶାର ପୁରପଲ୍ଲୀରେ ଯାହା କିଛି ଘଟୁଥାଏ,

ସେ ବିଷୟରେ ସେ ଅବଗତ ହେବାକୁ ଚାହୁଁଥାନ୍ତି ଏବଂ ଆବଶ୍ୟକାସ୍ଥଳେ ଉପଦେଶ ମଧ୍ୟ ଦେଉଥାନ୍ତି ।

ମୋ ପକ୍ଷରେ ଅବସ୍ଥା କ୍ରମେ ଜଟିଳ ହୋଇ ଆସିଲା । ସେ ପାଇଁ ମହତାବଙ୍କୁ ଆଣି ଏକ ବିରାଟ ସାଧାରଣ ସଭାରେ ଛିଡ଼ା କରାଇବା ପାଇଁ ଇଚ୍ଛା ହେଲା । ସେ ଲୋକଙ୍କୁ ବୁଝାଇ ଦେବେ, ନବୋତ୍ଥିତ ଦେଶ ଆଗରେ ଏପରି ସାମାନ୍ୟ କଥାମାନଙ୍କୁ କେନ୍ଦ୍ରକରି କଂଗ୍ରେସ ବିରୋଧୀ ମନୋଭାବ ସୃଷ୍ଟି କରିବା ଉଚିତ ନୁହେଁ । ଲୋକେ ତାଙ୍କ କଥା ଶୁଣିବେ ଏବଂ ମାନିବେ । ସୁତରାଂ ଲାଗି ପଡ଼ିଲି ଭୋଗରାଇଠାରେ ଏକ ବିରାଟ ଜନ-ସମାବେଶର ଆୟୋଜନ ପାଇଁ । ସବୁପ୍ରକାର ବନ୍ଦୋବସ୍ତ କରିସାରି କଟକ ଯାଇ ମହତାବଙ୍କୁ ଏବଂ ତାଙ୍କର ଅନୁଗାମୀ କେତେଜଣ ନେତାଙ୍କୁ ଧରି ଫେରିଲି ।

ଜଳେଶ୍ୱର ଷ୍ଟେସନରେ ସନ୍ଧ୍ୟାବେଳେ ରେଳଗାଡ଼ି ପହଞ୍ଚିଲା । ସେଠାରୁ ତହିଁ ପରଦିନ ସକାଳେ ଭୋଗରାଇ ଯିବାର କାର୍ଯ୍ୟକ୍ରମ । କିନ୍ତୁ ଓଡ଼ିଶାର ଶେଷ ସୀମାରେ ଅବସ୍ଥିତ ଅବହେଳିତ ଭୋଗରାଇକୁ ଯିବାପାଇଁ ରାସ୍ତାଘାଟ କଥା କହିଲେ ନ ସରେ । ଜଳେଶ୍ୱର ଠାରୁ ବାଟଗ୍ରାମ ୧୮ ମାଇଲ କଚ୍ଚାରାସ୍ତା । ଖଣ୍ଡିଏ ଦୁଇଖଣ୍ଡ ଭଙ୍ଗା ଦଦରା ବାସ୍ ବର୍ଷରେ ମାତ୍ର ଛଅ ମାସ ଚାଲୁଥାଏ । ଟିକିଏ ବର୍ଷା ହେଲେ ରାସ୍ତା ବନ୍ଦ ହୋଇଯାଏ । ରାସ୍ତା ଉପରେ ଆଣ୍ଠୁଏ କମ୍ପା ଅଣ୍ଟାଏ କାଦୁଅ ସୃଷ୍ଟି ହୁଏ । ଜୁନ୍ ମାସର ଶେଷ ସମୟ । ବର୍ଷା ଋତୁ ଆସିନାହିଁ । ତେଣୁ ବାସ ଚାଲୁଛି । ଆଗରୁ ସେଥିରେ ମହତାବଙ୍କୁ ନେବାପାଇଁ ସବୁ ବନ୍ଦୋବସ୍ତ ସରିଛି । କିନ୍ତୁ ଅକସ୍ମାତ ରାତିରେ ହେଲା ପ୍ରବଳ ବର୍ଷା । ରାତି ପାହିଲା ବେଳକୁ ମେଘ ନାହିଁ, କିନ୍ତୁ ରାସ୍ତାଘାଟ ବନ୍ଦ । ବାସ ଯାଇ ପାରିବ ନାହିଁ । କଟକରୁ ଏବଂ ବାଲେଶ୍ୱରରୁ ଆସିଥିବା ନେତାମାନେ ବିରକ୍ତ ହୋଇ ବସିଛନ୍ତି । ମୁଁ ଏଣେତେଣେ ଦଉଡ଼ିବାରେ ଲାଗିଛି । କ'ଣ କରାଯିବ ସେହି ଚିନ୍ତାରେ ମୁଣ୍ଡ ଖରାପ ହୋଇଗଲାଣି । ଜିପ୍ ଖଣ୍ଡିଏ ପାଇବା ଅସମ୍ଭବ । ବ୍ରିଟିଶ ଶାସନ ଶେଷ ହୋଇନାହିଁ । ବେସରକାରୀ କାମପାଇଁ ସରକାରୀ କର୍ମ-

କର୍ମକର୍ତ୍ତାମାନେ ବା କାହିଁକି ସାହାଯ୍ୟ କରିବେ । ବେଳ ବଢ଼ି ଚାଲିଛି । ପୁଣି ଜୁନ ମାସର ପ୍ରଚଣ୍ଡ ଖରା । ନେତାମାନେ ମୋତେ ସେକ୍ରେଟେରୀଙ୍କୁ କହିଦେଲେ : ମହତାବବାବୁ କଟକ ଫେରିବେ । ଭୋଗରାଇ ଯିବାର ପ୍ରଶ୍ନ ନାହିଁ । ମୁଁ ଅସହାୟ ଅବସ୍ଥାରେ ଛିଡ଼ା ହୋଇ ସେମାନଙ୍କ ମନ୍ତବ୍ୟ ଶୁଣିଲି । ସେଠାରେ ହଜାର ହଜାର ଲୋକ ଜମା ହୋଇଥିବେ । ଅଥଚ ମହତାବ ଯିବେ ନାହିଁ । ମୋ'ର ଅବସ୍ଥା କ'ଣ ହେବ ।

ବେଳ ପ୍ରାୟ ୯ଟା ହେଲାଣି । ଶୁଣିଲି, ଖଣ୍ଡିଏ ମାଲବାହୀ ଟ୍ରକ୍ କୌଣସି ପ୍ରକାରେ କାଦୁଅ ଠେଲି ଠେଲି ବାଟଗ୍ରାମ ଯିବ । ଦଉଡ଼ିଲି ଟ୍ରକ ମାଲିକ ପାଖକୁ । ଅନେକ ପ୍ରକାର କାତର ଆବେଦନ ପରେ ସେ କେତେଜଣ ନେତାଙ୍କୁ ସେଥିରେ ନେଇଯିବା ପାଇଁ ଡ୍ରାଇଭରକୁ ଆଦେଶ ଦେଲେ, ଅବଶ୍ୟ ପଛରେ ମାଲଗୁଡ଼ିକ ସାଙ୍ଗରେ । କିନ୍ତୁ ମହତାବଙ୍କୁ ସେକଥା କିପରି କହିବ । ଅନ୍ୟମାନେ ଦିନ ଏଗାରଟା ଗାଡ଼ିରେ କଟକ ଫେରିବା ପାଇଁ ବାହାରି ବସିଲେଣି । ଅନ୍ୟ ଉପାୟ ନଦେଖି ଶେଷରେ ସାହସ ବାନ୍ଧିଲି । ମହତାବଙ୍କୁ କହିଲି : "ସା'ର, ଏ ଅଞ୍ଚଳ କଥା ଆପଣ ଜାଣନ୍ତି । ଟ୍ରକ ଖଣ୍ଡିଏ ଯିବ ବୋଲି କହୁଛି । ମୁଁ କ'ଣ କରିବ । ଆପଣଙ୍କ ଯାହା ଇଚ୍ଛା ।"

ବରଂ ପରବର୍ତ୍ତୀ ତାଙ୍କ ପାଖରେ ସେଦିନ ଦେଖିଲି ଜଣେ ଗ୍ରାମପ୍ରାନ୍ତ ତାଙ୍କର ଦୟା ଓ ଅନୁକମ୍ପା ଏବଂ ସେଥିସଙ୍ଗେ ଯିବାପାଇଁ ଆଗ୍ରହ । ଟ୍ରକ ଡ୍ରାଇଭରର ସିଟ୍ ପାଖରେ ଭଙ୍ଗା ଟୁଲଟିଏ ରଖାଗଲା । ତା ଉପରେ କୌଣସି ପ୍ରକାରେ ମହତାବ ବସିଲେ । ଆମେ ସମସ୍ତେ ପଛରେ ମାଲପତ୍ର ଭିତରେ ଖୁନ୍ଦା ଖୁନ୍ଦି ହୋଇ ବସିଲୁଁ । ନେତାମାନଙ୍କର ଅସନ୍ତୋଷର ସୀମା ନାହିଁ । କିନ୍ତୁ ମହତାବଙ୍କ ଭୟରେ କିଛି କହିପାରୁ ନାହାନ୍ତି । ଟ୍ରକ ଚାଲିଲା ।

ଆଗରେ କାଦୁଅ ପଡ଼ିଲେ ସମସ୍ତଙ୍କୁ ଚାଲିବାକୁ ପଡ଼ୁଥାଏ । ମହତାବ ମଧ୍ୟ ଗୋଟିଏ ହାତରେ ନିଜର ଚପଲ ଓ ଅନ୍ୟ ହାତରେ ଆଣ୍ଠୁ ଉପରକୁ ଲୁଗା ଟେକି ଧରି କାଦୁଅ ଭିତରେ ଚାଲୁଥାନ୍ତି । ତାଙ୍କ ଲୁଗାପଟା ସବୁ

କର୍ଦ୍ଦମାକ୍ତ ହେଲଣି । ଦୁଃଖ ଓ ଲଜ୍ଜାରେ ମୁଁ ତାଙ୍କ ପାଖରୁ ଦୂରେଇ ରହୁଥାଏଁ ଏବଂ ଅନ୍ୟମାନଙ୍କର ଭର୍ତ୍ସନା ଭିତରେ ଅପରାଧୀ ପରି ମୁହଁ ତଳକୁ ପୋତି ସମସ୍ତଙ୍କ ପଛରେ ଚାଲିଥାଏଁ । ଦୁଇ ଘଣ୍ଟାରୁ ବେଶି କାଦୁଅ ଭିତରେ ପୁଣି ଟ୍ରକ ଠେଲିବାକୁ ମଧ୍ୟ ପଡ଼ିଲା ।

ଶେଷରେ ଦିନ ପ୍ରାୟ ବାରଟା ବେଳେ ଟ୍ରକ ବାଟଗ୍ରାମ ଠାରେ ପହଞ୍ଚିଲା । ସେଠାରୁ ଭୋଗରାଇ ଆଉ ପାଞ୍ଚ ମାଇଲ ବାଟ । ସେ ବାଟ ରାଜପଥ କିମ୍ବା ସାଧାରଣ ଗ୍ରାମ୍ୟପଥ ନୁହେଁ । ବାଲି ଆଡ଼ୁଆ ପରେ ବାଲି ଆଡ଼ୁଆ, ଯାହାକୁ କବିବର ରାଧାନାଥ ବର୍ଣ୍ଣନା କରିଥିଲେ "ଭୋଗରାଇ ପର୍ଯ୍ୟନ୍ତ ଦିଗନ୍ତ ବିସ୍ତାରି ବାଲୁକାରାଶି ।'' ମହାତ୍ମାଙ୍କ ଯିବାପାଇଁ ଆଗରୁ ଖଣ୍ଡିଏ ସବାରୀ ବନ୍ଦୋବସ୍ତ ହୋଇଥାଏ । "ସାର, ଆପଣ ଏଥିରେ ବସନ୍ତୁ" ମୁଁ ଅନୁରୋଧ କଲି । "ମନ୍ମଥ, ଏ କ'ଣ କହୋ ? ମୁଁ ଏଥିରେ ବସିବି ବୋଲି କିମିତି ଭାବିଲ" ଉପହାସ କରି ସେ କହିଲେ । ଏବଂ ବାକ୍ୟ ଶେଷ ହେବା ପୂର୍ବରୁ ସେ କ୍ଷିପ୍ର ଗତିରେ ଆଗେଇ ଚାଲିଲେ । ଶତାଧିକ ଲୋକେ ଆସିଥିଲେ ସେଠାରୁ ତାଙ୍କୁ ପାଛୋଟି ନେବାପାଇଁ । ରାସ୍ତାରେ ସ୍ଥାନେ ସ୍ଥାନେ ଅନେକ ଲୋକ ଅପେକ୍ଷା କରି ରହିଥିଲେ ତାଙ୍କୁ ଦେଖିବା ପାଇଁ । ଆମର ଶୋଭାଯାତ୍ରା ଚାଲିଲା । ମହାତ୍ମା ଆଗରେ ଚାଲିଛନ୍ତି । ଜୁନ୍ ମାସ ମଧ୍ୟାହ୍ନର ସେହି ପ୍ରଚଣ୍ଡ ଉତ୍ତାପ ତାଙ୍କୁ ବାଧୁନାହିଁ । ଲୋକମାନେ ତାଙ୍କର ଜୟଧ୍ୱନି ଦେଇ ଚାଲିଛନ୍ତି । ସେ ସମସ୍ତଙ୍କ ଆଗରେ ଏକ ଉତ୍ତପ୍ତ ବାଲୁକା ଉପରେ ପ୍ରତିଯୋଗିତାରେ ଚାଲିଲାପରି ଯେତେ ବେଗରେ ପାରନ୍ତି ଆଗେଇ ଚାଲିଥାନ୍ତି । ଶୋଭାଯାତ୍ରାର ଆକାର ବଢ଼ି ବଢ଼ି ଚାଲିଥାଏ । ସବା ପଛରେ ଚାଲିଛି ସବାରୀ । ସେଥିରେ ନିଜ ନିଜକୁ ଅଦଳ ବଦଳ କରି ଦୁଇ ତିନିଜଣ କଂଗ୍ରେସ କର୍ମୀ ଜଣକ ପରେ ଜଣେ ବସିବାରେ ଲାଗିଛନ୍ତି । ଏବଂ ରାସ୍ତାର ସ୍ଥାନେ ସ୍ଥାନେ ସରଳ ଗ୍ରାମବାସୀମାନେ ସବାରୀ ଭିତରେ ମହାତ୍ମା ଅଛନ୍ତି ଭାବି ଫୁଲ ଓ ଫୁଲମାଳ ଲଦି ଦେଉଥାନ୍ତି । ଭୋଗରାଇ ଧରିଲା ବେଳକୁ ଦେଖାଗଲା ସବାରୀ ଭିତରେ ଜଣେ କ୍ଷୁଦ୍ରାକୃତି କର୍ମୀଙ୍କ ବ୍ୟତୀତ ଅବଶିଷ୍ଟ ସ୍ଥାନ କେବଳ ଫୁଲରେ ଭର୍ତ୍ତି ।

ଦିନ ଦୁଇଟା ହେଲାଣି । ଗ୍ରେଟିଆ ଘରଟିର ପିଣ୍ଡାରେ ସମସ୍ତଙ୍କ ସାଙ୍ଗରେ ବସି କଦଳୀ ପତରେ ମହତାବ ମଧ୍ୟାହ୍ନ ଭୋଜନ କଲେ । ଅପରାହ୍ନ ଚାରିଟା ବେଳେ ସଭା । ଭୋଗରାଇ ହାଟ ଉପରେ ସେତେବେଳକୁ ଲୋକେ ଲୋକାରଣ୍ୟ । ଦୂର ଦୂରାନ୍ତ ସ୍ଥାନରୁ ହଜାର ହଜାର ଲୋକ ଆସିଛନ୍ତି ତାଙ୍କୁ ଦେଖିବା ପାଇଁ ଏବଂ ଶୁଣିବାପାଇଁ । ସ୍ୱାଧୀନତାର ଅବ୍ୟବହିତ ପୂର୍ବକାଳର ଦେଶରେ ବରେଣ୍ୟ ନେତାମାନଙ୍କ ପ୍ରତି ସେତେବେଳର ଜନତାର ଯେଉଁ ଆନ୍ତରିକ ସମ୍ମାନ ଓ ଭକ୍ତିଥାଏ ତାହା ବାସ୍ତବିକ ହୃଦୟସ୍ପର୍ଶୀ । ସମବେତ କଣ୍ଠରୁ ମହତାବଙ୍କ ଜୟଧ୍ୱନିରେ ସଭାସ୍ଥଳ ପ୍ରକମ୍ପିତ ହୋଇ ଉଠୁଥାଏ ।

ସଭା ଶେଷ ହେଲା । ଅନେକ ରାତି ପର୍ଯ୍ୟନ୍ତ ଅନେକ ପ୍ରକାର ଲୋକଙ୍କ ସହିତ କଥାବାର୍ତ୍ତା ଓ ଦେଶର ଭବିଷ୍ୟତ ବିଷୟ ଆଲୋଚନା ଚାଲିଲା । ମହତାବଙ୍କୁ ସେପରି କଥାବାର୍ତ୍ତା ଭଲ ଲାଗୁଥାଏ । ନିଜର ରହିବା, ଖାଇବା ଓ ଶୋଇବାପାଇଁ ଚିନ୍ତା ନଥାଏ । ଯେତେବେଳେ ଆଲୋଚନା ବନ୍ଦ କରିବାକୁ ଅନୁରୋଧ କଲି ସେ ଅନିଚ୍ଛାରେ ଉଠିଲେ । ଅନ୍ୟ କଂଗ୍ରେସ କର୍ମୀଙ୍କ ସହିତ ଅତି ସାଧାରଣ ଭାବରେ ତାଙ୍କର ରାତି କଟିଲା ।

କିନ୍ତୁ ଶେଷ ରାତି ବେଳକୁ ପୁଣି ପ୍ରବଳ ବର୍ଷା । ପ୍ରଭାତ ଆଗରୁ ମହତାବ ଉଠି ଭୋଗରାଇରୁ ବିଦାୟ ନେବାପାଇଁ ପ୍ରସ୍ତୁତ ହୋଇଗଲେଣି । କିନ୍ତୁ ସେ ଜଳେଶ୍ୱର ଫେରିବେ କିପରି ! ବାଟଗ୍ରାମ ଠାରୁ ଟ୍ରକ ଯିବାର ଆଉ କୌଣସି ସମ୍ଭାବନା ନଥିଲା । ମୁଁ ଭୟରେ ଆତ୍ମ ଗୋପନ କରି ରହିଛି । ସବାରି ଏବଂ ସବାରି ବାହକମାନଙ୍କ ଦେଖାନାହିଁ । ପୁଣି ବର୍ଷା ଆସିଗଲାଣି । ଓଡ଼ିଶାର ସେହି ଦୁର୍ଗମ ଅଞ୍ଚଳରୁ ରାଜଧାନୀକୁ ଫେରିବାପାଇଁ କ'ଣ କରାଯାଇ ପାରିବ ଅନ୍ୟ କର୍ମୀମାନଙ୍କ ପକ୍ଷରେ ତାହାହିଁ ଆଲୋଚ୍ୟ ବିଷୟ ଏବଂ ସେଥିସଙ୍ଗେ ମୋ ପ୍ରତି କଟାକ୍ଷପାତ , ବୁଦ୍ଧି ବିଚାର କାମ ନକରି ମହତାବଙ୍କ ପରି ବ୍ୟକ୍ତିଙ୍କୁ କିପରି ଏପରି ବିପଦରେ ପକାଇ ଦେଲି ତାହାହିଁ ମୋର ଅପରାଧ ।

କିନ୍ତୁ ମହତାବ ବାବୁ ଏହି ସମସ୍ୟା ସମାଧାନ କରିଦେଲେ। ଟିଖେଗରାଇ ପାଖରୁ ଦହମୁଣ୍ଡା ଓ ସେଠାରୁ ଜଳେଶ୍ୱର ଚାଲି ଚାଲି ୨୨ ମାଇଲ ରାସ୍ତା ଅତିକ୍ରମ କରି ସେ ସନ୍ଧ୍ୟା ସୁଦ୍ଧା ଜଳେଶ୍ୱରରେ ପହଞ୍ଚି ପାରିବେ ଏବଂ ରାତି ଗାଡ଼ିରେ କଟକ ଫେରିବେ। ତାଙ୍କ ଯୋଜନା ଶୁଣି ସେଦିନ ମୁଁ ଅତିଶୟ ଆଶ୍ଚର୍ଯ୍ୟ ହୋଇଛି। ବିଲ, ହିଡ଼ ଓ ଚଷ ଜମି ଭିତର ଦେଇ ପାଣି, କାଦୁଅର ରାସ୍ତା। ତା ଉପରେ ପୁଣି ମେଘ ଓ ବର୍ଷା। କିନ୍ତୁ ଆଉ ତ ଅନ୍ୟ ଉପାୟ ନାହିଁ। ସୂର୍ଯ୍ୟୋଦୟ ପରେ ପରେ ମହତାବ ଲୁଗା ଭିଡ଼ି ବାହାରି ପଡ଼ିଲେଣି। ପଛରେ ଅନ୍ୟମାନେ। ସବା ପଛରେ ମୁଁ। ପ୍ରାୟ ଦୁଇ ମାଇଲ ପର୍ଯ୍ୟନ୍ତ ଗାଁ ଗଣ୍ଡାର ସଙ୍କୀର୍ଣ୍ଣ କନ୍ଧ'ମାକ୍ର ରାସ୍ତା ଚାଲିଲା ପରେ ସେ ମୋତେ ଡାକିଲେ। "ତୁମେ ଅକାରଣ ଜଳେଶ୍ୱର ପର୍ଯ୍ୟନ୍ତ ଆମକୁ ଛାଡ଼ିବା ପାଇଁ ଯିବ କାହିଁକି? ଆମର ଯିବାର କଥା, ଆମକୁ ଯିବାକୁ ପଡ଼ିବ। ତୁମେ ଅଯଥା କଷ୍ଟ ନ କରି ଘରକୁ ଫେରିଯାଅ।" ସେ କହିଲେ।

ତାଙ୍କ ମୁଖରେ କୌଣସି ପ୍ରକାର ବିରକ୍ତି ଭାବର ସୂଚନା ବି ନଥିଲା। ସାରା ଦିନ କଷ୍ଟ କରି ଚାଲିବାକୁ ପଡ଼ିବ ସେପାଇଁ ତିଳେ ମାତ୍ର ଦୁଃଖ ମଧ୍ୟ ନଥିଲା। ଘଟଣା ଚକ୍ରରେ ଏପରି ଶାରୀରିକ ପରିଶ୍ରମ ପାଇଁ କାତରତା ପ୍ରକାଶ କରିବା ସଂତ ଯେପରି ତାଙ୍କ ଜାତକରେ ନଥିଲା। ମୁଁ ତାଙ୍କ କଥା ନ ମାନି ପଛେ ପଛେ ଚାଲିଲି। କିଛି ସମୟ ପରେ ପୁଣି ସେ କହିଲେ: "ଆମ କଷ୍ଟ କଥା ଭାବି ମନଦୁଃଖ କରୁଛ? ଆନ୍ଦୋଳନ ବେଳେ ଏହିପରି ରାସ୍ତାରେ ଏପରି ଚାଲିବା ପାଇଁ ଅଭ୍ୟାସ ଥିଲା। ସେତେ-ବେଳେ ଚାଲିବାକୁ ହେଉଥିଲା, ଆଜି ବି ଚାଲିବାକୁ ହେବ। ଏସବୁ ଆମର କର୍ତ୍ତବ୍ୟ। ତୁମେ ପିଲା ଲୋକ, ଅନେକ କଷ୍ଟ କଲଣି, ଯାଇ ବିଶ୍ରାମ ନିଅ।"

ମୁଁ ନମସ୍କାର କରି ସେହିଠାରେ ରହିଲି। କାରଣ, ସେତେବେଳକୁ ମୋ ଦେହରେ ଉତ୍ତାପ। ଚାଲିବା ପାଇଁ ଶକ୍ତି ନ ଥିଲା। ଛିଡ଼ା ହୋଇ କିଛି ସମୟ ଚାହିଁ ରହିଲି। ଅନ୍ୟମାନଙ୍କ ସାଙ୍ଗରେ ମହତାବ ପ୍ରକାଣ୍ଡ ବିଲ ଉପରେ ଆଣ୍ଠୁଏ ପାଣି ଭିତରେ ଆଗେଇ ଚାଲିଥାନ୍ତି।

ମହତାବଙ୍କ ସାରା କର୍ମମୟ ଜୀବନରେ ଏ ଥିଲା ଏକ ଅସାଧାରଣ ବିଶେଷତ୍ୱ । ଶାରୀରିକ ପରିଶ୍ରମରେ ସେ କେବେ ହେଲେ ଅବସନ୍ନ ହେବାକୁ ଇଚ୍ଛା କରି ନାହାନ୍ତି । ନିଜର ମାନସିକ ପରିଶ୍ରମ ପାଇଁ ସେ ଯେପରି ତତ୍ପର, ଶାରୀରିକ ପରିଶ୍ରମ ପାଇଁ ମଧ୍ୟ ସେହିପରି ଆଗ୍ରହୀ । ନିଜର ପଞ୍ଚାଶ ବର୍ଷ ବୟସ ପୂରଣ ହେଲାପରେ ସେ ଥରେ ଗୋଟିଏ ସାଧାରଣ ସଭାରେ କୌତୁକ ଛଳରେ କହିଥିଲେ : 'ସମସ୍ତେ ମୋତେ କହୁଛନ୍ତି ମୋ ବୟସ ବର୍ତ୍ତମାନ ପଞ୍ଚାଶ । କିନ୍ତୁ ନିଜ ଜାତକ ଦେଖି ମୁଁ ନିଜେ ଜାଣିଲି ମୋର ବୟସ ମାତ୍ର ପଚିଶ ।" ସମସ୍ତେ ଆନନ୍ଦରେ ହସିଲେ । ଏକଥା କହିବାର ତାତ୍ପର୍ଯ୍ୟ ମହତାବ ଜାଣିଥିଲେ ଏବଂ ସେହି ପ୍ରକାର ମନୋଭାବ ତାଙ୍କୁ ଚିରଦିନ କର୍ମପାଇଁ ପ୍ରେରଣା ଦେଇଛି । ଜାତିର ଜୀବନରେ ଯେଉଁମାନେ ଉଚ୍ଚ ସ୍ଥାନରେ ଅଧିଷ୍ଠିତ ହୋଇଥାଆନ୍ତି ସେମାନଙ୍କର ଏହିପ୍ରକାର କଷ୍ଟମୟ କର୍ମତତ୍ପରତା ହିଁ ଅନ୍ୟମାନଙ୍କୁ ସେମାନଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ଉପରେ ଆସ୍ଥା ଆଣିଦିଏ । ମହତାବଙ୍କ ସୁଦୀର୍ଘ ଜୀବନ ଉପରେ ଯେଉଁମାନେ ଆଲୋକପାତ କରିବାକୁ ଇଚ୍ଛା କରିବେ ସେମାନେ ଏକ ଅବସାଦହୀନ ବିଶ୍ରାମବିହୀନ ଚିରତତ୍ପର କର୍ମବୀର ରୂପେ ତାଙ୍କୁ ଦେଖିବାକୁ ପାଇବେ, ଏଥିରେ ସନ୍ଦେହ ନାହିଁ ।

ମୁଁ ଅଳ୍ପଦିନ ପରେ ଏଲ୍ଲାହାବାଦ ଚାଲିଗଲି ଏମ୍ ଏ. ପଢ଼ିବା ପାଇଁ । ସେଠାରେ ଯୁବ କଂଗ୍ରେସର ପ୍ରେରଣାରେ ଖଣ୍ଡିଏ କ୍ଷୁଦ୍ର ବହି ଲେଖିଲି "ପ୍ରାଚ୍ୟରେ ପାଶ୍ଚାତ୍ୟ ବାସୀ" । ବହିଟି ଉତ୍ସର୍ଗ କଲି ମହତାବଙ୍କୁ ।

ସେହି ଦିନରୁ ଆଜି ପର୍ଯ୍ୟନ୍ତ ତାଙ୍କ ସହିତ ମୋର ଭାବଗତ ସମ୍ପର୍କ ଅବିଚ୍ଛିନ୍ନ ରହିଛି । ଦିନେ ହୁଏତ ସୁଯୋଗ ହେଲେ କିମ୍ବା ସମୟ ପାଇଲେ ଆଧୁନିକ ଓଡ଼ିଶାର ଏହି ତୁଙ୍ଗ ବ୍ୟକ୍ତିଙ୍କ ଜୀବନୀ ଉପରେ ବିଭିନ୍ନ ଦିଗରୁ ଆଲୋକ ପାତ କରିବାକୁ ଚେଷ୍ଟା କରିବି ॥

# ମୋ ଜୀବନରେ ମହତାବ

**ପ୍ରହ୍ଲାଦ ପ୍ରଧାନ**

ମୁଁ ଅନେକ ଦିନ ଶାନ୍ତିନିକେତନରେ ଥିଲି । ସେଠାରେ ଥିଲା-ବେଳେ ପଣ୍ଡିତ ହଜାରୀ ପ୍ରସାଦ ଦ୍ୱିବେଦୀଜୀଙ୍କ ସଂପର୍କରେ ଆସି ତାଙ୍କ ପ୍ରେରଣାରେ ହିନ୍ଦୀରେ କେତୋଟି ପ୍ରବନ୍ଧ ଲେଖି ପ୍ରକାଶିତ କରିଥିଲି । ମୋର ଲେଖକ ଜୀବନ ହିନ୍ଦୀ ଲେଖକ ହିସାବରେ ଆରମ୍ଭ । ସେହି ଅବସ୍ଥାରେ ମୁଁ ବିଚାରିଲି ଯେ— ସେହି ପ୍ରବନ୍ଧଗୁଡ଼ିକ ଓଡ଼ିଆରେ ମଧ୍ୟ ପ୍ରକାଶ କରାଯାଇପାରେ; କାରଣ—ମୋ ମତରେ ସେହିପରି ପ୍ରବନ୍ଧ ଓଡ଼ିଆରେ ଲେଖାହେଉ ନଥିଲା । ମୋର ଅନୁମାନ ଠିକ ହେଲା । ମୋର ସେହିପରି ପ୍ରବନ୍ଧଗୁଡ଼ିକ ଓଡ଼ିଆରେ ମଧ୍ୟ ପ୍ରକାଶିତ ହେଲା ଏବଂ ସଂପାଦକ-ମାନେ ଆହୁରି ଲେଖିବାକୁ ଅନୁରୋଧ କଲେ । କେତୋଟି ପ୍ରବନ୍ଧ ଝଙ୍କାରରେ ମଧ୍ୟ ବାହାରିଲା । ସେଗୁଡ଼ିକ ମହତାବଙ୍କ ଦୃଷ୍ଟିକୁ ମଧ୍ୟ ବୋଧହୁଏ ଆସିଲା । ପ୍ରଜାତନ୍ତ୍ରର ବିଷୁବ ମିଳନୀରେ ମୁଁ ପ୍ରବନ୍ଧ ପାଇଁ ସମ୍ମାନିତ ହେଲି । ଓଡ଼ିଆ ଲେଖକ ହିସାବରେ ଏପରି ସମ୍ମାନିତ ହେବା ମୋର ପ୍ରାଥମିକ ଲେଖକ ଜୀବନରେ ମୋ ପକ୍ଷରେ କମ ଗୌରବର କଥା ନଥିଲା । ଅନ୍ତତଃ ମୁଁ ଏହିପରି ଅନୁଭବ କରୁଥିଲି ।

ଏହିପରି ଭାବରେ ମୁଁ ଝଙ୍କାର ସହିତ ସଂପୃକ୍ତ ହୋଇ ଗଲି । ଝଙ୍କାର ପାଇଁ ଅନେକ ପ୍ରବନ୍ଧ ଲେଖିଲି ମଧ୍ୟ । ରାତି ରାତି ଉନିଦ୍ର ହୋଇ ବିଷୁବ ମିଳନୀର ପରିଚାଳନାରେ ମୁଖ୍ୟ ଅଂଶ ଗ୍ରହଣ କରି ସହଯୋଗିତା କରିବାର ଅବକାଶ ମିଳିଛି । ଏସବୁ ହୋଇଛି ମୋ ଜାଣିବାରେ ଡ଼ା. ମହତାବଙ୍କ ଜୀବନରେ ଯେ ପର୍ଯ୍ୟନ୍ତ ସବୁଠାରୁ ଦୁର୍ବିପାକ ସମୟ; ଅର୍ଥାତ୍ ସେ ବମ୍ବେର ରାଜ୍ୟପାଳ ଥିବା ସମୟ, ଓଡ଼ିଶାର କୌଣସି କ୍ଷେତ୍ରରେ ତାଙ୍କର ସ୍ଥାନ ନଥିଲା କହିଲେ ଚଳେ । କିନ୍ତୁ ଆମେ କେତେ-

ଜଣେ ତାଙ୍କ ବ୍ୟକ୍ତିତ୍ୱ ଦ୍ୱାରା ଆକୃଷ୍ଟ ହୋଇ ମନରେ କୌଣସି ପ୍ରକାର ପ୍ରାପ୍ତିର ଆଶା ନରଖି ବିନା ଦ୍ୱିଧାରେ ନିଜ ଜୀବନରେ ତାର କୌଣସି ପ୍ରକାର କୁଫଳ ଫଳିବାର ମଧ୍ୟ ଚିନ୍ତାକୁ ମନକୁ ନଆଣି ତାଙ୍କ ପ୍ରତିଷ୍ଠିତସାହିତ୍ୟିକ ଓ ଓ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକୁ ବଞ୍ଚାଇ ରଖିବାକୁ ସହଯୋଗ କରୁଥାଉ । ଏହାର କୌଣସି ରାଜନୈତିକ କୁପ୍ରଭାବ ପଡ଼ିପାରେ ଏବଂ ବିପରୀତ ଫଳ ମିଳିପାରେ ସେପରି ଚିନ୍ତା ମଧ୍ୟ କେବେ ମନକୁ ଆସୁ ନଥାଏ । ଝଙ୍କାର ବଞ୍ଚିବ, ତା'ର ମାନବଢ଼ିବ ବିଷୁବ ମିଳନୀ ସଫଳ ହେବ, ଏତିକି ମାତ୍ର ଧ୍ୟେୟ । ପ୍ରଜାତନ୍ତ୍ର ପ୍ରଚାର ସମିତି ଏବଂ ମହତାବଙ୍କ ଠାରୁ ସମ୍ମାନ ମିଳୁଛି ଏହାହିଁ ଯଥେଷ୍ଟ । ଝଙ୍କାର ସହିତ ଏପରି ଭାବରେ ଜଡ଼ିତ ହୋଇ ଯିବାରୁ ଏବଂ ଓଡ଼ିଶାରେ ପ୍ରାବନ୍ଧିକ ହିସାବରେ ପ୍ରତିଷ୍ଠିତ ହୋଇଯିବାରୁ ମୋତେ ଝଙ୍କାରର ସମ୍ପାଦକ ମଣ୍ଡଳୀରେ ମଧ୍ୟ ସ୍ଥାନ ଦିଆ ଯାଇଥିଲା । ମୋର ମନେ ପଡୁଛି ସେତେବେଳେ ମୁଁ ଫକୀରମୋହନ କଲେଜର ପ୍ରିନ୍ସିପାଲ ଥାଏଁ । ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ନିଜେ ବାଲେଶ୍ୱର ଯାଇ ମୋଠାରୁ ମୌଖିକ ସ୍ୱୀକୃତି ଆଣିଥିଲେ ।

ତା'ପରେ ଡ. ମହତାବଙ୍କ ଜୀବନରେ ପୁଣି ପରିବର୍ତ୍ତନ ଆସିଲା । ସେ ବମ୍ବେର ରାଜ୍ୟପାଳ ପଦରୁ ଓଡ଼ିଶାକୁ ମୁଖ୍ୟମନ୍ତ୍ରୀ ହୋଇ ଆସିଲେ । ଫକୀରମୋହନ କଲେଜର ଛାତ୍ର ସଂସଦର ବାର୍ଷିକ ଦିବସରେ ପ୍ରଧାନ ଅତିଥି ହେବାକୁ ନିମନ୍ତ୍ରଣ କଲି । ସେ ମୋ ନିମନ୍ତ୍ରଣ ରକ୍ଷା କରି ବମ୍ବେରୁ ଆସିବା ବାଟରେ ବାଲେଶ୍ୱରରେ ଓହ୍ଲାଇ ଫକୀରମୋହନ କଲେଜକୁ ଆସିଲେ । ସେତେବେଳେ ହଲକୁ ଯେପରି ଦରବାରୀ ଢଙ୍ଗରେ ସଜା ହୋଇ-ଥିଲା ଏବଂ ଡା. ମହତାବଙ୍କୁ ଯେପରି ଭବ୍ୟ ସମ୍ବର୍ଦ୍ଧନା ଦିଆ ଯାଇଥିଲା, ଆଜି ପର୍ଯ୍ୟନ୍ତ ବାଲେଶ୍ୱରର ପୁରୁଣା ଲୋକଙ୍କର ତା' ମନେ ରହିଯାଇଛି ।

ସେତେବେଳେ ଡା. ମହତାବଙ୍କ ପ୍ରତି ମୋର ସମ୍ମାନ ଥିବାରୁ ଏବଂ ଏହିପରି ସବୁ କାମ କରିଥିବାରୁ ମୋର ପରବର୍ତ୍ତୀ ଚାକିରି ଜୀବନରେ ମୋ ଅଜାଣତରେ ଏହା ମୋର କାମରେ ଆସିଥିଲା । ବାଲେଶ୍ୱରରୁ

ସମ୍ବଲପୁର ଗଙ୍ଗାଧର ମେହେର କଲେଜକୁ ପ୍ରିନ୍‌ସିପାଲ ହୋଇ ମୁଁ ବଦଳି ହୋଇ ବାହାରିଗଲି । ସେହି ସମୟରେ ନମସ୍ୟ ଡା. ପରିଜାଙ୍କ ପ୍ରଚେଷ୍ଟାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅନ୍ୟାନ୍ୟ ବିଷୟ ସହିତ ସଂସ୍କୃତ ଓ ଦର୍ଶନରେ ଉପାଧ୍ୟୁତ୍ତର ଶିକ୍ଷା ଦେବା ପାଇଁ ବ୍ୟବସ୍ଥା କରାହେଲା । ସମ୍ବଲପୁରରେ ଥାଇ ମୁଁ ପ୍ରୋଫେସର ପଦ ପାଇଁ ଦରଖାସ୍ତ କଲି । ଡା. କରୁଣାକର କର ମଧ୍ୟ ଓଡ଼ିଆ ବିଭାଗରୁ ଅବସର ନେଇ ଏହି ପଦ ପାଇଁ ଦରଖାସ୍ତ କରିଥାନ୍ତି, କବିରାଜ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା ମଧ୍ୟ ଦରଖାସ୍ତ କରିଥାନ୍ତି । ଶ୍ରୀ ଗୋଲକ ବିହାରୀ ଧଳ ପ୍ରଫେସର ଓ ରିଡର ଉଭୟ ପଦ ପାଇଁ ଦରଖାସ୍ତ କରିଥାନ୍ତି । ସାକ୍ଷାତ୍‌କାର ହେଲା, Expert-ମାନେ ମୋତେହିଁ ନିର୍ବାଚନ କଲେ ।

ଏହାପରେ ଆରମ୍ଭ ହେଲା ପ୍ରବଳ ବିରୋଧ, ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍‌ରେ ଏବଂ ମୁଁ ସରକାରୀ ଚାକିରିଆ ହୋଇଥିବାରୁ ଓଡ଼ିଶା ସରକାରରେ । ଡା. ପରିଜା ଥିବାରୁ ପ୍ରବଳ ବିରୋଧ ସତ୍ତ୍ୱେ ସିଣ୍ଡିକେଟରେ ମୋ ନିର୍ବାଚନକୁ ପାସ୍ କରାଇଦେଲେ ଏବଂ ମୋ ପାଖକୁ ପ୍ରୋଫେସର ପାଇଁ ନିଯୁକ୍ତି ପତ୍ର ଚାଲିଗଲା, କିନ୍ତୁ ଡି. ପି. ଆଇ. ମୋତେ ଛାଡ଼ିଲେ ନାହିଁ, ମୋତେ ଛାଡ଼ିବାକୁ ନାନା ପ୍ରକାର ସର୍ତ୍ତ ଯୋଡ଼ିଲେ, ଡା. ପରିଜାଙ୍କ ଚେଷ୍ଟା ସତ୍ତ୍ୱେ ମୋତେ Releive କରିହେଲା ନାହିଁ । ମୋହର ପାଇଁ ବିଶ୍ୱବିଦ୍ୟାଳୟ ଓ ସରକାରଙ୍କ ବଡ଼ ବଡ଼ ପଦସ୍ଥ ବ୍ୟକ୍ତିଙ୍କୁ ନେଇ ଗୋଟିଏ କମିଟି ଗଢାହେଲା । ବିଶ୍ୱବିଦ୍ୟାଳୟ ତରଫରୁ ସେହି କମିଟିରେ ଭାଇସ୍ ଚାନ୍‌ସେଲର ଓ ରେଜିଷ୍ଟ୍ରାର ରହିଲେ ଏବଂ ସରକାରଙ୍କ ତରଫରୁ ଡି. ପି. ଆଇ. ଓ ଶିକ୍ଷାମନ୍ତ୍ରୀ ରହିଲେ । ଏହି କମିଟିରେ ଅଧ୍ୟକ୍ଷତା କଲେ ଡା. ମହତାବ, ମୁଖ୍ୟମନ୍ତ୍ରୀ ହିସାବରେ । ସେଠାରେ ନିଷ୍ପତ୍ତି କରାହେଲା ଯେ— ପ୍ରଥମରେ ମୋତେ ବର୍ଷକପାଇଁ ପ୍ରୋଫେସର କରି ଅଣା ହେଉ ଏବଂ ସଙ୍ଗେ ସଙ୍ଗେ ମୋତେ ସରକାରରୁ Releive କରାଯାଉ । ତା'ପରେ ମୋତେ Releive କରା ହେଲା, ଆସିଲି ଯେ ଆସିଲି, ଆଉ ଫେରି ନାହିଁ, ବିଶ୍ୱବିଦ୍ୟାଳୟରୁହିଁ ଅବସର ନେଲି । ଏହି କାମରେ

ଡା. ମହତାବ ମୋତେ ସାହାଯ୍ୟ କରିଥିଲେ । ମୁଁ ଯେ ଏତେ ବାଟ ଆସିଲି, ତାଙ୍କର ଏହି ସାହାଯ୍ୟରୁ । ଏକଥା ମୋ ଜୀବନରେ କେବେ ଭୁଲି ଭୁଲି ପାରିବି ନାହିଁ । ନିଃସ୍ୱାର୍ଥଭାବରେ ଡା. ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ଝଙ୍କାରର ସେବା କରିଥିବାରୁ ତାହା ମୋର ଜୀବନରେ କାମରେ ଆସିଲା । ଏହା ମୋ ଜୀବନର ଗୋଟିଏ ବଡ଼ ଘଟଣା ।

ଏହାର ଅନ୍ୟ ଗୋଟିଏ ଦିଗ ଅଛି । ସେତେବେଳର ଝଙ୍କାର ଓ ପ୍ରଜାତନ୍ତ୍ର ପ୍ରଚାରର ସହିତ ସକ୍ରିୟ ସମ୍ପୃକ୍ତ ଥିବା ଅନେକ ଲୋକ ମରିଗଲେଣି, ଅନେକ ମଧ୍ୟ ଛାଡ଼ିଚାଲି ଆସିଛନ୍ତି ।



# ଡକ୍ଟର ମହତାବଙ୍କର ଜୟନ୍ତୀରେ କେତେକ ସ୍ମୃତି

ବୈଦ୍ୟନାଥ ମିଶ୍ର

ଆଜକୁ ୪୦/୪୨ ବର୍ଷ ହେଲା ଡ଼କ୍ଟର ମହତାବଙ୍କ ସହିତ ମୋର ସମ୍ପର୍କ ଅଛି । ମୁଁ ଯେତେବେଳେ ତାଙ୍କ ସମ୍ପର୍କରେ ଆସେ, ସେତେବେଳେ ସେ ଓଡ଼ିଶାର ଜଣେ ତୁଙ୍ଗ କଂଗ୍ରେସ ନେତା ଥିଲେ । ତା ପରେ ତାଙ୍କର ବହୁତ ଉନ୍ନତି ହୋଇଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଛନ୍ତି, କେନ୍ଦ୍ରର ଶିଳ୍ପମନ୍ତ୍ରୀ ହୋଇଛନ୍ତି, ମହାରାଷ୍ଟ୍ରର ରାଜ୍ୟପାଳ ହୋଇଛନ୍ତି । କିନ୍ତୁ କୌଣସି ସମୟରେ ସେ ନିଜକୁ ଭୁଲି ଯାଇ ନାହାନ୍ତି । ଓଡ଼ିଶାରେ ଏପରି ଏକ ସମୟ ଆସିଛି, ଯେତେବେଳେ ଗାଁ ଗହଳରେ ଗାନ୍ଧୀ, ଜବାହାରଲାଲଙ୍କ ସହିତ ମହତାବଙ୍କର ଜୟଗାନ ହୋଇଛି, ସେତେବେଳେ ମହତାବ ବୋଇଲେ ଓଡ଼ିଶା ବୁଝେଇଛି । ତାପରେ ବି ଏପରି ସମୟ ଆସିଛି, ଯେତେବେଳେ ତାଙ୍କୁ ଲାଞ୍ଛିତ କରିବା ପାଇଁ ସରକାରୀସ୍ତରରେ ସଙ୍ଗଠିତ ଉଦ୍ୟମ ହୋଇଛି । କ୍ଷମତାରେ ଥିଲାବେଳେ ସେ ଯେପରି ଆତ୍ମହରା ହୋଇ ନାହାନ୍ତି, କ୍ଷମତାରୁ ଗଲାପରେ ମଧ୍ୟ ସେ ଦବି ଯାଇ ନାହାନ୍ତି । ତାଙ୍କର ମନୋବଳ କେତେବେଳେ ଭାଙ୍ଗି ନାହିଁ । ଆଜି ଶୁଣିଲେ ସମସ୍ତେ ଆଶ୍ଚର୍ଯ୍ୟ ହେବେ ଯେ ମହତାବଙ୍କ ଦର୍ଶନ ପାଇଁ ଏକସମୟରେ ପ୍ରଜା-ତନ୍ତ୍ରରେ ଏତେ ଭିଡ଼ ହେଉଥିଲା ଯେ ଶାନ୍ତିଶୃଙ୍ଖଳା ରକ୍ଷା କରିବା ପାଇଁ ଉଦ୍ୟମ କରିବା ଦରକାର ପଡୁଥିଲା ପୁଲିସ ସାହାଯ୍ୟରେ ନୁହେଁ, କର୍ମୀମାନଙ୍କ ସାହାଯ୍ୟରେ, କିନ୍ତୁ ତା ପରେ ସମୟ ଆସିଲା ଯେତେବେଳେ ଅନେକ ଲୋକ ମହତାବବାବୁଙ୍କୁ ଦେଖା କରିବାକୁ ଡ଼ରିଲେ । ସି. ଆଇ. ଡି ନେ ଜଗି ରହିଲେ ଦେଖିବା ପାଇଁ ମହତାବଙ୍କ ପାଖକୁ କିଏ ଯାଉଛି ।

ଯେଉଁମାନେ ପୂର୍ବରୁ ମହତାବଙ୍କ ଦର୍ଶନ ପାଇଁ ଭିଡ଼ ଲଗାଉଥିଲେ, ସେମାନେ ପୁଣି ଲୁଚିଲେ । ମହତାବଙ୍କ ସହିତ ସମ୍ପର୍କ ନାହିଁ ବୋଲି ପ୍ରଚାର କରିବାକୁ ଆରମ୍ଭ କଲେ, ଏପରିକି ତାଙ୍କ ବିରୁଦ୍ଧରେ ମଧ୍ୟ ଷଡ଼ଯନ୍ତ୍ର କଲେ । କିନ୍ତୁ ଉଭୟ ଅବସ୍ଥାରେ ମହତାବ ସ୍ଥିର ହୋଇ ରହିଲେ ନିଜର ଅସ୍ଥିରତା ହରାଇଲେ ନାହିଁ । ଏହି ହେଉଛି ମହତାବଙ୍କର ବିଶେଷତ୍ୱ, ଯାହାକି ମୁଁ ନିଜେ ଦେଖିଛି, ଅନେକ ଜାଣିଛନ୍ତି, ଅନେକ ଶୁଣିଛନ୍ତି ବୋଲି କହୁଛି କାହିଁକି ନା ମୁଁ ଜଣେ ମହତାବଙ୍କର ଲୋକ ବୋଲି ଏକସମୟରେ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର ହୋଇଛି । ମୁଁ ରାଜନୀତିରେ ନାହିଁ । ଜଣେ ସାମାନ୍ୟ ନାଗରିକ । ତଥାପି ସେମାନେ ମତେ ମଧ୍ୟ ହଇରାଣ ହରକତ କରିବାକୁ ଚେଷ୍ଟା କରୁଛନ୍ତି । ଏଥିରୁ ମହତାବଙ୍କ ବିରୁଦ୍ଧରେ କେତେ ପ୍ରବଳ ଉଦ୍ୟମ ହୋଇଥିବ, ତାହା ସହଜରେ ଅବସାନ କରିହେବ । ତେବେ ମହତାବ ନିଜର ଧୈର୍ଯ୍ୟ, ସାହସ ଓ ମନୋବଳ ଜରିଆରେ ଏ ସବୁ ଅସୁବିଧାରୁ ଖୁବ୍ ସହଜରେ ଉତ୍ତୀର୍ଣ୍ଣ ହୋଇ ପାରିଛନ୍ତି ।

ଅନେକ ଲୋକ କହନ୍ତି ଯେ ମହତାବ ଜଣେ ବଡ଼ କୁଟନୀତିଜ୍ଞ । ସେ ଜଣେ ବିଶିଷ୍ଟ ରାଜନୀତିଜ୍ଞ ନିଶ୍ଚୟ । ସେଥିପାଇଁ ସାରା ଭାରତରେ ତାଙ୍କର ସମ୍ମାନ ଅଛି, ଖ୍ୟାତି ଅଛି । କିନ୍ତୁ କୁଟନୀତିଜ୍ଞ ବୋଲି ମୁଁ ବିଚାର କରି ପାରୁ ନାହିଁ । ମୋର ଧାରଣା ସେ ଜଣେ ଅତି ସରଳ ବିଶ୍ୱାସୀ, ମଣିଷକୁ ଚିହ୍ନିବାରେ ତାଙ୍କର ଶକ୍ତି ନାହିଁ । ଯେ ତାଙ୍କ ବିରୁଦ୍ଧରେ ଯେତେ ଚକ୍ରାନ୍ତ କରୁଥାନ୍ତୁ ପଛେ, ତାଙ୍କ ପାଖକୁ ଯାଇ ଥରେ ଦୁଇଥର ଦେଖାକରି ଆସିଲେ ମହତାବ ଭାବନ୍ତି ସେ ତାଙ୍କର ଲୋକ । ସେ ଯେତେ ଲୋକଙ୍କୁ ଓଡ଼ିଶାରେ ମଣିଷ କରିଛନ୍ତି, ସେମାନଙ୍କ ସଂଖ୍ୟା ଅନେକ । ସେମାନଙ୍କ ଭିତରୁ କେତେକ ଲୋକ ପରେ ଓଡ଼ିଶାରେ ତୁଙ୍ଗ ଆସନ ଅଧିକାର କରିଛନ୍ତି । କିନ୍ତୁ ସେମାନେ ପୂର୍ବକଥା ଭୁଲିଯାଇ ମହତାବଙ୍କ ବିରୁଦ୍ଧରେ ଚକ୍ରାନ୍ତ କରିଛନ୍ତି । ରାଜନୀତିରେ ଅବଶ୍ୟ କୃତଜ୍ଞତା ଶବ୍ଦ ନିଷିଦ୍ଧ ବୋଲି କୁହାଯିବ । ତେବେ ଏଥିରୁ ମହତାବ ଜଣେ ବଡ଼ କୁଟନୀତିଜ୍ଞ ବୋଲି କିପରି କୁହାଯିବ, ମୁଁ ଜାଣି ପାରୁ ନାହିଁ । କୁଟନୀତିଜ୍ଞଙ୍କର ଅନ୍ୟ ଏକ

ଗୁଣ ହେଉଛି ଯେ ତାଙ୍କର ମନୋଭାବ ସହଜରେ କେହି ଜାଣି ପାରନ୍ତି ନାହିଁ । ସେ ଯାହା କହନ୍ତି, ସେଥିରେ ବିଶ୍ୱାସ କରନ୍ତି ନାହିଁ, ଯାହା ବିଶ୍ୱାସ କରନ୍ତି, ତାହା କହନ୍ତି ନାହିଁ । ମହତାବବାବୁ ଠିକ୍ ଓଲଟା । ସେ କୌଣସି କଥା ଲୁଚେଇ ରଖି ପାରନ୍ତି ନାହିଁ । ତାଙ୍କୁ ଆପଣ ଯାହା ବିଶ୍ୱାସରେ କହିବେ, ସେ ସବୁ ପଦାରେ ପ୍ରକାଶ କରି ଦେବେ । ବିହାରବାଗଠାରେ ମହତାବଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସନ୍ଧ୍ୟାବେଳେ ଅନେକ ସମୟରେ ଦରବାର ବସେ ଅନେକ ଲୋକ ସେଠାକୁ ଆସନ୍ତି, ଖୁବ ଭିଡ ହୁଏ, ଖୁବ୍ ଆଲୋଚନା ହୁଏ । କୌଣସି କଥା କିନ୍ତୁ ବିଶ୍ୱାସରେ ରହି ପାରେ ନାହିଁ । ଆଲୋଚନା ହେଲେ ତ ଅନେକ ଲୋକଙ୍କ ବିଷୟରେ କଥା ଉଠିବ । ସମସ୍ତେ ନିଜ ନିଜ ମତ ପ୍ରକାଶ କରନ୍ତି । କିନ୍ତୁ ପରଦିନ ଦେଖିଲି ବେଳକୁ ମହତାବବାବୁଙ୍କ ଲାଉଡ୍ସ୍ପିକରରେ ସେଗୁଡ଼ିକ ସବୁ ଚାରିଆଡେ ପ୍ରଚାରିତ ହୋଇଯାଏ । ଏଥିରେ ଅନେକ ଲୋକ ଅପଦସ୍ତ ହୁଅନ୍ତି । ସେ ନିଜେ ମଧ୍ୟ ନିଜ କହିଥିବା କଥା କହି ପକାନ୍ତି । ଏ କଥା ମୁଁ ଅନେକ ଥର ଦେଖିଛି ଏବଂ ଆଶ୍ଚର୍ଯ୍ୟ ମଧ୍ୟ ହୋଇଛି । ଏହାକୁ କି ପ୍ରକାର କୁଟନୀତି କୁହାଯିବ, ମୁଁ ଜାଣି ପାରୁନାହିଁ ।

ଡକ୍ଟର ମହତାବଙ୍କର ଦୁଇଟିକୋଟି ଗୁଣହେତୁ ମୁଁ ଅଭିଭୂତ ହୋଇଛି । ତାଙ୍କର ଅଧ୍ୟବସାୟ ଅସୀମ । ପ୍ରତ୍ୟେକ ଦିନ ସେ ୧୬।୧୭ ଘଣ୍ଟା କାମ କରି ପାରନ୍ତି । ରାତି ଗୋଟେ ଦୁଇଟା ପର୍ଯ୍ୟନ୍ତ ବସି ଗପି ପାରନ୍ତି । ଅନେକ ଯୁବକ ଲୋକ ତାଙ୍କ ସହିତ ତାଳ ଦେଇ କାମ କରି ପାରନ୍ତି ନାହିଁ । ରାତି ଗୋଟେ ଦୁଇଟାରେ ମଧ୍ୟ ତାଙ୍କର ଯେଉଁ ଉତ୍ସାହ ତାହା ଦେଖିଲେ ଯେ କୌଣସି ଲୋକ ଆଶ୍ଚର୍ଯ୍ୟ ହୋଇଯିବ । ରାତି ଗୋଟେ ଦୁଇଟା ପର୍ଯ୍ୟନ୍ତ ଗପି ମଧ୍ୟ ତାପର ଦିନ ସକାଳୁ ସେ ପୁଣି ପୂର୍ବପରି କାମ କରନ୍ତି । ଯେଉଁମାନେ ରାଜନୀତିରେ କାମକରନ୍ତି, ସେମାନଙ୍କର ସମୟ ଉପରେ ନିଜର କର୍ତ୍ତୃତ୍ୱ ନ ଥାଏ । କିନ୍ତୁ ଡକ୍ଟର ମହତାବ ପ୍ରତ୍ୟେକ କାମକୁ ଠିକ୍ ସମୟରେ କରିବାକୁ ଚାହାନ୍ତି । ସେ ପ୍ରତ୍ୟେକ ସଭା ଓ ସମିତିକୁ ୫।୧୦

ମିନଟ୍ ଆଗରୁ ଯିବାର ଦେଖିଛୁ । ଖୁବ କମ ରାଜନୀତିଜ୍ଞ ସଭା ସମିତିରେ ସମୟ ରଖି ପାରନ୍ତି । ଉତ୍କଳର ମହତାବ ଏହାର ଏକ ବ୍ୟତିକ୍ରମ ।

ଉତ୍କଳର ମହତାବ ଯାହା ଠିକ୍ ବୋଲି ଭାବନ୍ତି, ତାହା ନିର୍ଦ୍ୱିଧାରେ ପ୍ରକାଶ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ରାଜନୀତିରେ ଏହି ନିର୍ଭୀକତା ଖୁବ କମ ଲୋକଙ୍କର ଅଛି । ଅଧିକାଂଶ ରାଜନୀତିଜ୍ଞ ଗଡ୍ଡାଳିକା ପ୍ରବାହରେ ପ୍ରବାହିତ ହେବାକୁ ଭଲ ପାଆନ୍ତି । ସାଧାରଣ ଲୋକମାନେ ଯାହା ଶୁଣିବେ, ତାହା ମାନିନେବା ହେଉଛି ରାଜନୀତିଜ୍ଞମାନଙ୍କ ଧରାବନ୍ଧା ନୀତି । କିନ୍ତୁ ଏହାକୁ ନେତୃତ୍ୱ କୁହାଯାଇ ପାରିବ ନାହିଁ । ନେତୃତ୍ୱର ଅର୍ଥ ହେଉଛି ଜନମତକୁ ଉପଯୁକ୍ତ ପନ୍ଥାରେ ପରିଚାଳିତ କରିବା । ଅନେକ ସଭା ସମିତିରେ ଆମେ ଦେଖିଛୁ ଯେ ମହତାବ ବିରୋଧରେ ଡରି ଯାଆନ୍ତି ନାହିଁ । ବରଂ ବିରୋଧ ହେଲେ ତାଙ୍କର ସାହସ ବଢ଼ିଯାଏ । ଆସେମ୍ବ୍ଲିର କେତେଜଣ ସଭ୍ୟ କହିବାର ଆମେ ଶୁଣିଛୁ ଯେ ମହତାବଙ୍କୁ ବିରୋଧ କଲେ ବିଧାନସଭା ଆଲୋଚନା ଚିତ୍ତାକର୍ଷକ ହୁଏ । ତେଣୁ ସେମାନେ ଜାଣିଶୁଣି ତାଙ୍କୁ ବିରୋଧ କରନ୍ତି । କେତେକ ମଧ୍ୟ କହିବାର ଆମେ ଶୁଣିଛୁ ଯେ ମହତାବ କଣ୍ଟ୍ରୋଭର୍ସିକୁ ଭଲ ପାଆନ୍ତି । କଣ୍ଟ୍ରୋଭର୍ସି ଭିତରେ ତାଙ୍କର ନିପୁଣତା ପ୍ରକାଶ ପାଏ । କୌଣସି ସଭା ସମିତିରେ ବିରୋଧ ହେଲେ ସେ ଯେପରି କୌଶଳର ସହିତ ବିରୋଧକୁ ଆୟତ୍ତ କରନ୍ତି, ତାହା ଖୁବ୍ କମ ଲୋକ କହିପାରିବେ । ତାଙ୍କର ନିଜ ଉପରେ ବହୁତ ବିଶ୍ୱାସ । ତେଣୁ ସେ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ଭୟ କରନ୍ତି ନାହିଁ ।

ସବୁଠାରୁ ବଡ଼ ଗୁଣ ହେଉଛି ତାଙ୍କର ବ୍ୟବହାର ଜ୍ଞାନ ବା କମନସେନ୍ସ । ଦେଶରେ ଅନେକ ଲୋକ ବହି ପଢ଼ୁଛନ୍ତି, ଖବର କାଗଜ ପଢ଼ୁଛନ୍ତି, ଜନସାଧାରଣଙ୍କ ସହିତ ମିଶୁଛନ୍ତି, ଗାଁ ଗହଳରେ କାମ କରୁଛନ୍ତି । କିନ୍ତୁ ସେମାନଙ୍କ ସମସ୍ୟାକୁ ମହତାବବାବୁ ଯେପରି ସରଳ ଓ ସହଜ ଭାଷାରେ ଗାଁ ମଜଲିସରେ ପ୍ରକାଶ କରୁଛନ୍ତି ଖୁବ୍ କମ ଲୋକ ସେପରି କରି ପାରିବେ । ଓଡ଼ିଶାରେ ଯେଉଁମାନେ ପ୍ରଜାତନ୍ତ୍ର କିଣନ୍ତି, ସେମାନେ ପ୍ରଥମେ ଏଇ 'ଗାଁ ମଜଲିସ' ପଢନ୍ତି । ଆମେ ଜାଣିଛୁ ଏବଂ

ଶୁଣିଛୁ ଯେ ଅତି ଶିକ୍ଷିତ ଲୋକଙ୍କଠାରୁ ଆରମ୍ଭ କରି ସାଧାରଣ ଲୋକଙ୍କ ପର୍ଯ୍ୟନ୍ତ ସେହାକୁ ପଢ଼ନ୍ତି ଓ ଆଲୋଚନା କରନ୍ତି । କଥା ପ୍ରସଙ୍ଗରେ ମହା-ତାବବାବୁ ଏକଥା ଗାଁ ମଜଲିସରେ ଲେଖିଛନ୍ତି ବୋଲି କହନ୍ତି । ସମସ୍ତେ ଯେ ମହତାବବାବୁଙ୍କ ମତ ସହିତ ସବୁବେଳେ ଏକମତ ହୁଅନ୍ତି, ତାହା ନୁହେଁ । ଏକମତ ହେଲେ ତ ରାଜ୍ୟ ଚିନ୍ତାଶୂନ୍ୟ ହୋଇଗଲା ବୋଲି ବୁଝାଯିବ । କିନ୍ତୁ ସମସ୍ତେ ତାଙ୍କ ମତକୁ ଖାତିର କରନ୍ତି, ମତର ଯୁକ୍ତି-ଯୁକ୍ତତାକୁ ସମ୍ମାନ ଦିଅନ୍ତି, ତାଙ୍କର ବିଚକ୍ଷଣ ମାନସିକ ସଜାଗତାକୁ ପ୍ରଶଂସା କରନ୍ତି ।

ଆଜି ତାଙ୍କର ଜନ୍ମଦିବସରେ ମୁଁ ତାଙ୍କୁ ସମ୍ବର୍ଦ୍ଧନା ଜଣାଉଛି । ବ୍ୟକ୍ତିଗତ ଭାବରେ ମୁଁ ତାଙ୍କ ପାଖରେ ବହୁଭାବରେ ଋଣୀ । ମୁଁ ତାଙ୍କୁ ମୋର ଜଣେ ଶୁଭାକାଂକ୍ଷୀ ବୋଲି ମନେ କରେ । ମୋର ଆଶା ଓ ବିଶ୍ୱାସ ସେ ଆହୁରି ବହୁ ବର୍ଷ ବଞ୍ଚି, ସମାଜର ମଙ୍ଗଳ ପାଇଁ ନିଜର ଶକ୍ତି ଓ ସାମର୍ଥ୍ୟ ବିନିଯୋଗ କରି ପାରିବେ ।



# ଐତିହାସିକ ଡକ୍ଟର ମହତାବ

ଡକ୍ଟର ନବୀନ କୁମାର ସାହୁ

ଇତିହାସ ଏକ ସାଧନାର ମାର୍ଗ । ଜାତିର ଇତିହାସ ଗଠନ କରିବା ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ଟଏନ୍‌ବିଙ୍କ ପରେ ମାନବ ଇତିହାସ ରାଜନୈତିକ ସୀମାରେଖା ଲଙ୍ଘନ କରି ସମଗ୍ର ବିଶ୍ୱର ଆଧାର ଉପରେ ପ୍ରତିଷ୍ଠିତ ହୋଇଅଛି । ତାହେଲେ ମଧ୍ୟ ପୃଥିବୀର ବହୁ ଜାତି ଓ ବହୁବିଧ ଜାତିସ୍ଥ ସଂସ୍କୃତିର ଐତିହାସିକ ଆଲୋଚନା ଯେ ଏ ପର୍ଯ୍ୟନ୍ତ ଉପଯୁକ୍ତ ରୂପେ ହୋଇପାରିନାହିଁ ତାହା କୁହାଯାଇ ପାରେ । ସେହି ଦୃଷ୍ଟିକୋଣରୁ ଆଞ୍ଚଳିକ ଇତିହାସ ସଂକଳନ ଉପରେ ବହୁ ଐତିହାସିକ ଗୁରୁତ୍ୱ ଆରୋପ କରି ଆସୁଅଛନ୍ତି । ଭାରତବର୍ଷର ଇତିହାସ ଗଠନ କରିବା ନିମନ୍ତେ ପ୍ରାୟ ଦୁଇ ଶତାବ୍ଦୀ ଧରି ଅନେକ ପ୍ରଖ୍ୟାତ ଐତିହାସିକ ଚେଷ୍ଟା କରିଆସି ଅଛନ୍ତି । ମାତ୍ର ଏ ଦେଶର ଇତିହାସ ଓ ସଂସ୍କୃତି ଉପରେ ଏ ପର୍ଯ୍ୟନ୍ତ ଯଥେଷ୍ଟ ଆଲୋକପାତ କରାଯାଇ ପାରିନାହିଁ । ଭାରତୀୟ ସଂସ୍କୃତି ଓ ଇତିହାସ ନାନା ଜାତି ଓ ଗୋଷ୍ଠୀର କ୍ରିୟାକଳାପ ଏବଂ କୃତିର ଏକ ସମନ୍ୱୟ । ତେଣୁ ସେସବୁ ଜାତି ଓ ଗୋଷ୍ଠୀର ଇତିହାସ ଯେତେ ପରିମାଣରେ ସଂକଳିତ ହୋଇପାରେ, ଭାରତୀୟ ଇତିହାସ ସେହି ପରିମାଣରେ ସମୃଦ୍ଧ ହେବ । ଏହି ଆଦର୍ଶବାଦ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଓଡ଼ିଶା ଇତିହାସ ସଂକଳନ ଦିଗରେ ପ୍ରେରଣା ଯୋଗାଇଅଛି । କହିବା ବାହୁଲ୍ୟ ଯେ, ଡକ୍ଟର ମହତାବ ହେଉଛନ୍ତି ପ୍ରଧାନତଃ ଜଣେ ରାଜନୀତିଜ୍ଞ । ଓଡ଼ିଶା ରାଜନୀତି କ୍ଷେତ୍ରରେ ସେ ଯେଉଁ ନେତୃତ୍ୱ ପ୍ରଦାନ କରି ଆସି ଅଛନ୍ତି ତାହା ଅବିସ୍ମରଣୀୟ । ଗତ ପ୍ରାୟ ୭୦ ବର୍ଷ ଧରି ତାଙ୍କର ରାଜନୈତିକ ଭୂମିକା ଓଡ଼ିଶାକୁ ବହୁଭାବରେ ଗୌରବାନ୍ୱିତ କରିଅଛି । ଓଡ଼ିଶା ଇତିହାସ ସଂକଳନ ରାଜନୀତିଜ୍ଞ ମହତାବଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ଅବଦାନ ।

ଓଡ଼ିଶାକୁ ଇଂରେଜମାନେ ଅଧିକାର କରିବା ପରେ ଓଡ଼ିଆ ଜାତିର ଇତିହାସ ସଂକଳନ ନିମନ୍ତେ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା । ଏଥିରେ ଆଣ୍ଡ୍ରୁ ଷ୍ଟରଲିଙ୍ଗ୍, ଜ. ବେପୁଟନ୍ଦ୍ର, କଟୋ, ହାଣ୍ଟର, ରାଜେନ୍ଦ୍ରଲାଲ ମିତ୍ର, ପ୍ୟାରୀମୋହନ ଆଚାର୍ଯ୍ୟ, ଫ୍ଲିଟ୍, ମନମୋହନ ଚକ୍ରବର୍ତ୍ତୀ, କୃପାସିନ୍ଧୁ ମିଶ୍ର, ରମା ପ୍ରସାଦ ଚନ୍ଦ, ରାଖାଲ ଦାସ ବାନାର୍ଜି ଓ ପଣ୍ଡିତ ବିନାୟକ ମିଶ୍ର ପ୍ରମୁଖ ଐତିହାସିକ ଏବଂ ପୁରାତତ୍ତ୍ୱବିଦ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶା ଇତିହାସ ଗବେଷଣା ପ୍ରସଙ୍ଗରେ ଯେଉଁ ସବୁ ପତ୍ରପତ୍ରିକା ଆଲୋକ ପାତ କରିଥିଲେ ସେଗୁଡ଼ିକ ମଧ୍ୟରେ ବିହାର ଓଡ଼ିଶା ରିସର୍ଚ୍ଚ ଜର୍ଣ୍ଣାଲ, ଆନ୍ଧ୍ର ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ ଏବଂ ଜର୍ଣ୍ଣାଲ ଅଫ୍ ମହାକୋଶଳ ରିସର୍ଚ୍ଚ ସୋସାଇଟି ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ କାଳରେ ପାଟନା ଏବଂ କଳାହାଣ୍ଡି ଦରବାର ପୃଷ୍ଠପୋଷକତାରେ କଳିଙ୍ଗ ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲର ଅଭ୍ୟୁଦୟ ହୋଇଥିଲା । ତାହାର ମାଧ୍ୟମରେ ସତ୍ୟନାରାୟଣ ରାଜଗୁରୁ, ପରମାନନ୍ଦ ଆଚାର୍ଯ୍ୟ, ପୂର୍ଣ୍ଣଚନ୍ଦ୍ର ରଥ ଓ କେଦାରନାଥ ମହାପାତ୍ର ପ୍ରମୁଖ ଐତିହାସିକଙ୍କର ପ୍ରତିଭା ପ୍ରକାଶିତ ହୋଇଥିଲା । ଏହି ପ୍ରସଙ୍ଗରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର ଅବଦାନ ମଧ୍ୟ ଓଡ଼ିଶା ଇତିହାସ ଗବେଷଣାକୁ ପରିପୁଷ୍ଟ କରିଥିଲା ।

ସେତେବେଳେ ସ୍ୱାଧୀନତା ସଂଗ୍ରାମ ଭାରତବର୍ଷର ରାଜନୈତିକ ବାତାବରଣର ପ୍ରଧାନ ଆଭିମୁଖ୍ୟ ଥିଲା । ଡକ୍ଟର ମହତାବ ୧୯୨୦ ସାଲରୁ ଏହି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ଏବଂ ଓଡ଼ିଶାର ରାଜନୈତିକ ଜୀବନକୁ ବହୁଭାବରେ ପ୍ରଭାବିତ କରିଥିଲେ । ୧୯୪୨ ସାଲର ଭାରତଛାଡ଼ ଆନ୍ଦୋଳନରେ ସେ ବନ୍ଦୀ ହୋଇ ଆସିରଗଡ଼ ଦୁର୍ଗରେ ପଣ୍ଡିତ ଜବାହରଲାଲ ନେହେରୁ ଆଦି ତୁଙ୍ଗ ନେତାମାନଙ୍କ ସହିତ ରହିଥିଲେ । ସେହି କାରାରୁଦ୍ଧ ଅବସ୍ଥାରେ ଓଡ଼ିଶା ଇତିହାସ ସଂକଳନ ପାଇଁ ତାଙ୍କର ସାଧନା ବିକାଶପ୍ରାପ୍ତ ହୋଇଥିଲା । ସେଠାରେ ସେ ଓଡ଼ିଆ ଭାଷାରେ ଓଡ଼ିଶାର ଧାରାବାହିକ ପୂର୍ଣ୍ଣାଙ୍ଗ ଇତିହାସ ପ୍ରଥମେ ରଚନା କରିଥିଲେ । ଷ୍ଟରଲିଙ୍ଗ୍ ଏବଂ ହାଣ୍ଟର ପ୍ରମୁଖ ଇଂରେଜ ଐତିହାସିକମାନେ ସାମ୍ରାଜ୍ୟବାଦ ମନୋବୃତ୍ତି ନେଇ ଯେଉଁ ଇତିହାସ ପ୍ରକାଶ କରିଥିଲେ,

ମହତାବଙ୍କର ଇତିହାସ ଜାତୀୟତା ଦୃଷ୍ଟିକୋଣରୁ ତାହାର ଏକ ସ୍ୱାଗତ-ଯୋଗ୍ୟ ବ୍ୟତିକ୍ରମ ଥିଲା । ଓଡ଼ିଆ ଜାତିର ସମୃଦ୍ଧ ଇତିହାସ ଓ ସଂସ୍କୃତିର ପ୍ରକୃତ ମୂଲ୍ୟାୟନ ଇଉରୋପୀୟ ଐତିହାସିକମାନେ ଉପଯୁକ୍ତ ରୂପେ କରିପାରି ନଥିଲେ । ତାହା ପ୍ରଥମଥର ପାଇଁ ମହତାବଙ୍କ ଲେଖନୀ ଦ୍ୱାରା ପରିବେଷିତ ହୋଇପାରିଲା । ସେହି ଦୃଷ୍ଟିକୋଣ ପରବର୍ତ୍ତୀ କାଳରେ ଓଡ଼ିଶାର ଐତିହାସିକମାନଙ୍କୁ ଉଦ୍‌ବୁଦ୍ଧ କରି ଆସିଅଛି । ସ୍ୱାଧୀନତା ପ୍ରାପ୍ତି ପରେ ଡକ୍ଟର ମହତାବ ଇଂରେଜୀ ଭାଷାରେ ଓଡ଼ିଶାର ଇତିହାସ ଦୁଇଖଣ୍ଡରେ ପ୍ରକାଶ କରି ଦେଶ ବିଦେଶରେ ଓଡ଼ିଆ ଜାତିର ଗୌରବମୟ ଅତୀତକୁ ସୁବିଦିତ କରିଥିଲେ ।

୧୯୪୯ ସାଲରେ ଡକ୍ଟର ମହତାବଙ୍କ ପ୍ରଚେଷ୍ଟା ଯୋଗୁଁ କଟକ-ଠାରେ ଭାରତୀୟ ଇତିହାସ କଂଗ୍ରେସର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ଏବଂ ତାହାର ସୁଦୂର ପ୍ରସାରିତ ପ୍ରେରଣା ରୂପେ ରେଭେନ୍‌ସା କଲେଜରେ ଇତିହାସରେ ଏମ୍. ଏ. ଶ୍ରେଣୀ, ମ୍ୟୁଜିୟମ୍ ଗବେଷଣା ବିଭାଗ ଓ ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ୍‌ର ଅଭ୍ୟୁଦୟ ହେଲା । ତା ସହିତ ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଇତିହାସ ମଧ୍ୟ ସଂକଳିତ ହେଲା । ଜାତି ଗଠନମୂଳକ ଏହିସବୁ ଉଦ୍ୟମ ଡକ୍ଟର ମହତାବଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁଁ ସମ୍ଭବ ହୋଇଥିଲା ।

ଓଡ଼ିଶାର ସାଂସ୍କୃତିକ ବିକାଶ ନିମନ୍ତେ ଡକ୍ଟର ମହତାବ ପ୍ରଜାତନ୍ତ୍ର ପ୍ରଚାର ସମିତି, ସାହିତ୍ୟିକ ମାସିକ ପତ୍ରିକା 'ଝଙ୍କାର' ଓଡ଼ିଶା ସାହିତ୍ୟ ଏକାଡେମି ଏବଂ ଓଡ଼ିଶା ସଙ୍ଗୀତ ଓ ନାଟକ ଏକାଡେମି ଆଦି ପ୍ରତିଷ୍ଠା କରିଥିଲେ । ତାଙ୍କ ଦ୍ୱାରା ପ୍ରଜାତନ୍ତ୍ର ସମ୍ବାଦପତ୍ର ୧୯୨୩ ସାଲଠାରୁ ପ୍ରକାଶିତ ହୋଇ ଓଡ଼ିଶାର ରାଜନୈତିକ ଓ ସାହିତ୍ୟିକ ଜୀବନକୁ ନାନା ଭାବରେ ପ୍ରଭାବିତ କରୁଅଛି । ଏହିଁରେ ଧାରାବାହିକ ଭାବେ ପ୍ରକାଶ ପାଉଥିବା "ଗାଁ ମଜଲିସ" ରୁ ସମୟୋପଯୋଗୀ ସମସ୍ୟାମାନଙ୍କର ଅନୁ-ଶୀଳନ ଡକ୍ଟର ମହତାବଙ୍କ ଦୂରଦୃଷ୍ଟିର ପରିଚୟ ପ୍ରଦାନ କରେ ।

ଆଧୁନିକ ଓଡ଼ିଶା ଗଠନ କ୍ଷେତ୍ରରେ ଡକ୍ଟର ମହତାବଙ୍କର ଅବଦାନ ଅତୁଳନୀୟ । ପ୍ରଜାମଣ୍ଡଳ ଆନ୍ଦୋଳନ, କଂଗ୍ରେସ ଆନ୍ଦୋଳନ, ଗଡ଼ଜାତ ରାଜ୍ୟ ମିଶ୍ରଣ ଓ ଜମିଦାରୀ ପ୍ରଥା ଉଚ୍ଛେଦ ଦିଗରେ ତାଙ୍କର କୃତିତ୍ୱ ଓଡ଼ିଶାରେ ରାଜନୈତିକ ଓ ସାମାଜିକ ବିପ୍ଳବ ଆନୟନ କରିଥିଲା । ହୀରାକୁଦ ବନ୍ଧ ଯୋଜନା ଏବଂ ଭୁବନେଶ୍ୱରଠାରେ ନୂତନ ରାଜଧାନୀ ନିର୍ମାଣ ମଧ୍ୟ ତାଙ୍କର ଅନ୍ୟତମ କୃତି ।

ଡକ୍ଟର ମହତାବଙ୍କ ଅନ୍ୟାନ୍ୟ ଐତିହାସିକ ଅବଦାନମଧ୍ୟରେ ନିମ୍ନୋକ୍ତ କେତୋଟି ଗ୍ରନ୍ଥ ଉଲ୍ଲେଖ କରାଯାଇପାରେ, ସାଧନାର ପଥେ (ଆତ୍ମଜୀବନୀ), ଦଶବର୍ଷର ଓଡ଼ିଶା(୧୯୨୧-୩୧), ଏବଂ **Begining of the End** । ସେ ଉତ୍କଳ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ବହୁ ଖଣ୍ଡରେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ପାଇଁ ୧୯୫୮-୫୯ ସାଲରୁ ଏକ ନୂତନ ଉଦ୍ୟମ ଆରମ୍ଭ କରିଥିଲେ । ତାହା ଏପର୍ଯ୍ୟନ୍ତ ଅପୂର୍ଣ୍ଣ ରହିଅଛି । ତାଙ୍କ ଜୀବନକାଳ ମଧ୍ୟରେ ଏହି ବିରାଟ ସୁଚିନ୍ତିତ ଯୋଜନା ଯଦି ସମ୍ପୂର୍ଣ୍ଣ ହୋଇପାରନ୍ତା, ତାହା ଡକ୍ଟର ମହତାବଙ୍କର ବହୁବିଧ କୃତି ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଲାଭ କରନ୍ତା ।



# ତୃତୀୟ ପର୍ବ : ଏକ ସଫଳ ରାଜନୈତିକ ଉପନ୍ୟାସ

ଦୁର୍ଗାଚରଣ କୁଅଁର

'ତୃତୀୟ ପର୍ବ' ଉପନ୍ୟାସ ପ୍ରତିଷ୍ଠିତ ଜନନାୟକ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ବନ୍ଦୀଶାଳାରେ ଲିଖିତ ଓ ୧୯୭୬ ସାଲରେ ପ୍ରକାଶିତ । ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ଡଃ ମହତାବଙ୍କର ଅବଦାନ ଅବିସ୍ମରଣୀୟ, କିନ୍ତୁ ତାଙ୍କର ରାଜନୈତିକ ପ୍ରତିଷ୍ଠା ଐତିହାସିକ ମହତାବ ବା ସାହିତ୍ୟିକ ମହତାବଙ୍କୁ ଆଚ୍ଛନ୍ନ କରି ପ୍ରାୟ ନେପଥ୍ୟକୁ ନେଇ-ଯାଇଥାଏ । ସ୍ୱାଧୀନତା ସଂଗ୍ରାମ ତଥା ରାଜନୀତି କ୍ଷେତ୍ରରେ ଦେଶକୁ ନେତୃତ୍ୱ ଦେବା ସଙ୍ଗେ ସଙ୍ଗେ ଭାରତୀୟ ସଂସ୍କୃତି, ଆଧ୍ୟାତ୍ମିକତା ଓ ସାହିତ୍ୟକୁ ପୁଷ୍ଟ କରିଥିବା ନେତୃବର୍ଗ : ମହାତ୍ମାଗାନ୍ଧୀ, ଗୋପାଳକୃଷ୍ଣ ଗୋଖଲେ, ଜବାହାରଲାଲ ନେହେରୁ, ରାଜଗୋପାଳାଚାରୀ, କେ. ଏମ. ମୁନସୀ ପ୍ରଭୃତି ପ୍ରତିଭାବାନ ବ୍ୟକ୍ତିମାନଙ୍କ ମଧ୍ୟରେ ଡଃ ମହତାବ ଅନ୍ୟତମ ।

ଡଃ ମହତାବ କବିତା, ଗଳ୍ପ, ଉପନ୍ୟାସ, ନାଟକ, ଆତ୍ମଜୀବନୀ, ସାମ୍ବାଦିକତା ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଅଛନ୍ତି । ତାଙ୍କର ପ୍ରତିଭା 'ତୃତୀୟ ପର୍ବ' ଉଣେଇଶ ଚଉସ୍ତରୀ ପ୍ରଭୃତି ଉପନ୍ୟାସ ମୁଖ୍ୟତଃ ଦେଶର ସାମାଜିକ ତଥା ରାଜନୈତିକ ଘଟଣା ପ୍ରବାହ ଉପରେ ଆଧାରିତ ଏକ ଏକ ସଫଳ ସାହିତ୍ୟିକ ସୃଷ୍ଟି ।

ଗତାନୁଗତିକ ଉପନ୍ୟାସ କହିଲେ ଆମେ ଯାହା ବୁଝୁ 'ତୃତୀୟ ପର୍ବ' ତା ଠାରୁ ଭିନ୍ନ । ଏପରିକି ସ୍ୱାଧୀନତା ସଂଗ୍ରାମ ପୃଷ୍ଠଭୂମିରେ ଲିଖିତ

'ପ୍ରତିଭା' ଉପନ୍ୟାସର ଘଟଣା ବିନ୍ୟାସ, ଚରିତ୍ର ଚିତ୍ରଣ, ଭାବାବେଗ ବା ଚମତ୍କାରିତା ସ୍ୱାଧୀନୋତ୍ତର ଭାରତର ସମସ୍ୟା ବହୁଳ ବିଷୟବସ୍ତୁକୁ କେନ୍ଦ୍ରକରି ଲିଖିତ 'ତୃତୀୟ ପର୍ବ' ଉପନ୍ୟାସରେ ନାହିଁ । ଦେଶର ସ୍ୱାଧୀନତା ସଂଗ୍ରାମ କାଳରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତବାସୀଙ୍କ ଭିତରେ ସ୍ୱାଭିମାନ ଓ ଦେଶପ୍ରୀତିର ଯେଉଁ ପ୍ରଚଣ୍ଡ ଉନ୍ମାଦନା ସୃଷ୍ଟି ହୋଇଥିଲା ସ୍ୱାଧୀନତା ଲାଭପରେ ତା'ର ଯେ କେବଳ ଭଙ୍ଗା ପଡ଼ିଯାଇଥିଲା ତାହା ନୁହେଁ, ଭାରତର ଜାତୀୟ ଜୀବନରେ ବରଂ କ୍ରମ ଅଧୋଗତି ଆରମ୍ଭ ହୋଇଯାଇଥିଲା । ଡଃ ମହତାବ ଭାରତର ସ୍ୱାଧୀନତା ସଂଗ୍ରାମ ଠାରୁ ଆରମ୍ଭ କରି ଏ ଯାବତ ଦେଶର ରାଜନୈତିକ ଘଟଣା ପ୍ରବାହକୁ ତିନୋଟି ମୁଖ୍ୟ ପର୍ବ ବା ପର୍ଯ୍ୟାୟରେ ବିଭକ୍ତ କରିଅଛନ୍ତି । ୧୯୨୧ରୁ ୧୯୪୭ ପର୍ଯ୍ୟନ୍ତ ପଚିଶ ବର୍ଷ ପର୍ଯ୍ୟନ୍ତ ଏକ ପର୍ବ । ସ୍ୱାଧୀନତା ସଂଗ୍ରାମ ଓ ସତ୍ୟାଗ୍ରହ ହେଲା ଏ ପର୍ବର ମୁଖ୍ୟ ବିଷୟ । ୧୯୪୬ରୁ ୧୯୭୧ ଏ ପଚିଶ ବର୍ଷ ହେଉଛି ଦ୍ୱିତୀୟ ପର୍ବ, ଯାହାର ବିଷୟବସ୍ତୁ ହେଉଛି ସ୍ୱାଧୀନତା ସଂଗ୍ରାମୀମାନଙ୍କ ହାତରେ ଶାସନର ପରିଚାଳନା । ତୃତୀୟ ପର୍ବ ହେଉଛି ସେ ଶାସନର ପରିଣତି ।

ଦେଶ ସ୍ୱାଧୀନ ହେବା ପରେ ଯେଉଁ ସ୍ୱାଧୀନତା ସଂଗ୍ରାମୀ ବା ଅନ୍ୟ-ମାନେ ଏ ଦେଶର ସର୍ବମୟ କର୍ତ୍ତା ହୋଇ ଶାସନ ପରିଚାଳନା କଲେ ସେମାନଙ୍କ ହାତରେ ଦେଶର ଅବସ୍ଥା କେଉଁ ସ୍ତରରେ ଯାଇ ପହଞ୍ଚିଛି, ଏହି ବିଷୟବସ୍ତୁକୁ କେନ୍ଦ୍ରକରି 'ତୃତୀୟ ପର୍ବ' ଉପନ୍ୟାସର ପରିକଳ୍ପନା । "ସ୍ୱାଧୀନତା ଆନ୍ଦୋଳନ ଗାନ୍ଧି ମତବାଦରେ ପରିଚାଳିତ ହେଉଥିଲା । ସେ ମତବାଦର ମୂଳତତ୍ତ୍ୱ ହେଉଛି ଭାରତର ରାଜନୀତି ଓ ଅର୍ଥନୀତି ଗ୍ରାମଭିତ୍ତିକ ହେବ ।" କିନ୍ତୁ ଗାନ୍ଧିଙ୍କ ପରେ ଜବାହରଲାଲଙ୍କ ନେତୃତ୍ୱରେ ଧନତାନ୍ତ୍ରିକ ଆମେରିକା ଓ ସାମ୍ୟବାଦୀ ସୋଭିଏଟ୍ ରୁଷର ପ୍ରଭାବ ଭାରତର ରାଷ୍ଟ୍ରନୀତିକୁ ବହୁଭାବେ ପ୍ରଭାବିତ କଲା ଯାହା ଫଳରେ କି ଦେଶ ଗାନ୍ଧିନୀତିଠାରୁ ଦୂରେଇ ଗଲା । ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ଦେଶ ସ୍ୱାଧୀନ ହେବାପରେ ଦେଶର ଶାସନ ଦାୟିତ୍ୱରେ ରହିଲେ ସେମାନେ କ୍ରମେ ତ୍ୟାଗ ଓ ଜନ-ସେବା ଆଦର୍ଶରୁ ବିଚ୍ୟୁତ ହୋଇ ଆତ୍ମସ୍ୱାର୍ଥକୁହିଁ ପରମ ଧ୍ୟେୟମନେ

କଲେ । ଫଳରେ ଦରିଦ୍ର ଜନସାଧାରଣ, ବିଶେଷତଃ ଗ୍ରାମାଞ୍ଚଳରେ ଅବହେଳିତ ଶ୍ରେଣୀଙ୍କ ପକ୍ଷରେ ସ୍ୱାଧୀନତା ନିରର୍ଥକ ହୋଇଗଲା । ସେମାନେ ଯେଉଁ ତିମିରକୁ ସେହି ତିମିରରେ ରହିଗଲେ । ଡ଼ଃ ମହତାବଙ୍କ ଭାଷାରେ "ପ୍ରତ୍ୟେକ ଅଗଣତାନ୍ତ୍ରିକ ଶାସନରେ କାଳକ୍ରମେ ଦୁଇ ଶ୍ରେଣୀ ହୋଇ ଯାନ୍ତି, ଗୋଟିଏ ହେଉଛି ଶାସନ ଦ୍ୱାରା ଉପକୃତ ଶ୍ରେଣୀ, ଅନ୍ୟଟି ହେଉଛି ଅନୁପକୃତ ବା ଅବହେଳିତ ଶ୍ରେଣୀ ।" ଏହି ଆତ୍ମସ୍ୱାର୍ଥନ୍ୱେଷୀ ଉପକୃତ ଶ୍ରେଣୀକୁ 'ଭୃଗୁସୂ ପଦ' ଉପନ୍ୟାସରେ ଉଚ୍ଚବର୍ଣ୍ଣୀ ଆଖ୍ୟା ଦିଆଯାଇଛି । ଏହି 'ଉଚ୍ଚବର୍ଣ୍ଣୀ' ହିଁ ଦେଶର ସମସ୍ତ ଅଧୋଗତି ପାଇଁ ଦାୟୀ । ତାକୁ ଦୂର ନକଲେ ଦେଶର ଅବହେଳିତ ଜନସାଧାରଣଙ୍କ ଭାଗ୍ୟର କୌଣସି ପରିବର୍ତ୍ତନ ହେବ ନାହିଁ । ପାଶ୍ଚାତ୍ୟ ଜଗତରେ ଶିଳ୍ପ ବିପ୍ଳବ ଘଟିବା ପରେ 'ଫରାସୀ ବିପ୍ଳବ' ଯୋଗୁଁ ପୁରୁଣା ସମାଜ ଭାଙ୍ଗି ଚୁରମାର ହୋଇ ଜାତି ସ୍ୱାର୍ଥ ଉପରେ ପର୍ଯ୍ୟବେସିତ ନୂଆ ସମାଜ ଗଢି ଉଠିଲା । ରୁଷିଆରେ ରକ୍ତାକ୍ତ ବିପ୍ଳବ ଦ୍ୱାରା ମାଟିତଳୁ 'ଉଚ୍ଚବର୍ଣ୍ଣୀ'କୁ ବାହାର କରି ଦିଆଗଲା । କିନ୍ତୁ ଭାରତରେ ଏହା ସମ୍ଭବ ହୋଇନାହିଁ । ଯେଉଁ କମ୍ୟୁନିଷ୍ଟମାନେ ଦେଶର ଅବହେଳିତ ଜନତା ପାଇଁ ସ୍ୱର ଉଠାଇଥିଲେ ସେମାନେ ନିର୍ବାଚନ ରାଜନୀତିରେ ପଶି ସେମାନଙ୍କ ଦାନ୍ତ ଘସରି ହୋଇଗଲାଣି ।

ଏକ ନୂତନ ଗଣବିପ୍ଳବ ଦ୍ୱାରାହିଁ ଦରିଦ୍ର, ନିଷ୍ପେଷିତ ଜନସାଧାରଣଙ୍କର ଭାଗ୍ୟ ପରିବର୍ତ୍ତନ ହୋଇପାରିବ, ଅନ୍ୟଥା ନୁହେଁ । ଏଥିପାଇଁ ଏହି ମୂକ ଜନତାକୁ ସଚେତନ କରି ସେମାନଙ୍କ ମୁହଁରେ ବିପ୍ଳବର ଭାଷା ଦେବାକୁ ପଡ଼ିବ । ଏ ପ୍ରକାର ଏକ ଗଣବିପ୍ଳବର ପ୍ରସ୍ତାବନାରେହିଁ 'ଭୃଗୁସୂ ପଦ' ଉପନ୍ୟାସର ଆରମ୍ଭ । ଏଥିପାଇଁ ଓଡ଼ିଶାର ବିଭିନ୍ନାଞ୍ଚଳର କେତେକ ଯୁବନେତା ଗାନ୍ଧିବାଦୀ ପ୍ରବୀଣ ନେତା ରାମଶଙ୍କରଙ୍କ ଆଶ୍ରମରେ ପରାମର୍ଶ ଓ ସହଯୋଗ ପାଇଁ ଏକତ୍ରିତ ହୋଇଅଛନ୍ତି । ଏହି ସଂଗ୍ରାମ ଯୁବ ପରିଷଦର ଆବାହକ ହେଉଛନ୍ତି ବିପ୍ଳବୀ ଯୁବନେତା ବୀରକିଶୋର, କିନ୍ତୁ ପ୍ରକୃତ ଉଦ୍ୟୋକ୍ତା ଓ ସୂତ୍ରଧର ରାମଶଙ୍କର । ପ୍ରଥମେ ଓଡ଼ିଶାର ବିଭିନ୍ନ ଅପେକ୍ଷାକୃତ ଅନୁନ୍ନତ ଅଞ୍ଚଳରେ ଭ୍ରମଣ କରି ଗ୍ରାମାଞ୍ଚଳର ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖି ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିବାପାଇଁ ରାମଶଙ୍କର ଓ ବୀର

କିଶୋର ସମ୍ବଲପୁରର ପଦ୍ମପୁର ଅଞ୍ଚଳକୁ ଯାଇ ପୁରାତନ ସ୍ୱାଧୀନତା ସଂଗ୍ରାମୀ ଧନଞ୍ଜୟଙ୍କର ଅତିଥି ହୋଇ ଅଛନ୍ତି । ପରେ ରାମଶଙ୍କର ଓ ଯୁବ-ପରିଷଦର ଅନ୍ୟାନ୍ୟ ନେତା ମିଳିତଭାବେ କୋରାପୁଟ ଜିଲ୍ଲା ଗସ୍ତରେ ଯାଇଛନ୍ତି । ସ୍ୱାଧୀନତା ସଂଗ୍ରାମୀ ବୟୋଜ୍ୟେଷ୍ଠ ନେତା ରାମଶଙ୍କର ଓ ତାଙ୍କର ଯୁବ ସହକର୍ମୀମାନଙ୍କ ମଧ୍ୟରେ ପ୍ରାୟ ଦୁଇପୁରୁଷର ବ୍ୟବଧାନ । ତେଣୁ ରାମଶଙ୍କର ଓ ତାଙ୍କର ଯୁବ ସହକର୍ମୀମାନଙ୍କ ମଧ୍ୟରେ ବୁଝାମଣା ଏତେ ସହଜ ହୋଇନାହିଁ । ରାମଶଙ୍କର ଗାନ୍ଧିବାଦୀ ନେତା ଓ ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସମାର୍ଗରେ ବିପ୍ଳବ ପରିଚାଳନା କରିବାକୁ ତାଙ୍କର ଦୃଢ଼ ମତ । ସେ ତାଙ୍କର ଯୁବ ସହକର୍ମୀ ବୀରକିଶୋର, ହୃଷୀକେଶ, ବିନୟ, ତାରିଣୀ, ମାନସ ଓ ଦୋଳଗୋବିନ୍ଦ ପ୍ରଭୃତିଙ୍କୁ ଗାନ୍ଧି ନୀତି ଓ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ କରିବା ପାଇଁ ସତତ ଚେଷ୍ଟିତ । ଏହି ଅବସରରେ ଲେଖକ ଏ ଯୁଗର ଯୁବନେତାମାନଙ୍କର ଚିନ୍ତାଧାରା ଓ ଚଳଣିର ଅତି ବାସ୍ତବ ଓ ସୂକ୍ଷ୍ମ ବିଶ୍ଳେଷଣ କରିଅଛନ୍ତି । ରାମଶଙ୍କର ଆଶ୍ରମକୁ ଯାଆସ କରୁଥିବ ମନ୍ତ୍ରୀ ଜଗଦାନନ୍ଦଙ୍କୁ ଆତ୍ମସ୍ୱାର୍ଥାନ୍ୱେଷୀ ଓ ସୁବିଧାବାଦୀ କ୍ଷମତାସୀନ ଶ୍ରେଣୀର ଏକ ପ୍ରତୀକ ରୂପେ ଗ୍ରହଣ କରାଯାଇ ପାରେ ।

ରାମଶଙ୍କରଙ୍କର ସଂଗ୍ରାମୀ ଯୁବପରିଷଦର ନେତାମାନଙ୍କୁ ସାଙ୍ଗରେ ନେଇ କୋରାପୁଟ ଜିଲ୍ଲା ଗସ୍ତ କରିବା ଉପନ୍ୟାସର ଏକ ମୁଖ୍ୟ ଘଟଣା । ଦରିଦ୍ର ଆଦିବାସୀ ଅଧ୍ୟୁଷିତ ଓଡ଼ିଶାର ଏହି ଅନୁନ୍ନତ ଅଞ୍ଚଳର ସମସ୍ୟା ଚିତ୍ରଣ ଯେଉଁପରି ବାସ୍ତବଧର୍ମୀ, ସେହିପରି ହୃଦୟସ୍ପର୍ଶୀ । ଏ ଅଞ୍ଚଳରେ ବହୁ ପ୍ରକଳ୍ପିତ ସର୍ବୋଦୟ କାର୍ଯ୍ୟକ୍ରମର ବିଫଳତା, ପ୍ରଶାସନିକ ଅବ୍ୟବସ୍ଥା, ରାଜକର୍ମଚାରୀମାନଙ୍କର ଲୋକଙ୍କର ପ୍ରକୃତ ଅବସ୍ଥା ବୁଝି ସେମାନଙ୍କୁ ସାହାଯ୍ୟ କରିବାରେ ଆନ୍ତରିକତାର ଅଭାବ ଇତ୍ୟାଦି ବହୁ ସମସ୍ୟା ଆଲୋଚନାର ପରିସରଭୁକ୍ତ କରାଯାଇଛି । ପରିଣତି ସ୍ୱରୂପ ଅବହେଳିତ, ନିପୀଡ଼ିତ ମୂକ ଜନସାଧାରଣ, ବିଶେଷତଃ ଦରିଦ୍ର ଆଦିବାସୀମାନଙ୍କର ଦୁଃଖ ଲାଘବ କରିବାପାଇଁ ଏହି ପାର୍ବତ୍ୟ ଅଞ୍ଚଳରେ ହିଂସ୍ର ନକ୍ସଲ୍‌ବାଦୀ ବିପ୍ଳବର ସୂତ୍ରପାତ ହୋଇଛି । ଆନ୍ଧ୍ର, ଓଡ଼ିଶା ଓ ବଙ୍ଗଳାର ବହୁ ଉଚ୍ଚଶିକ୍ଷିତ ଯୁବକ ନିଜ ଜୀବନକୁ ବିପନ୍ନ କରି ଏହି ବିପ୍ଳବରେ ଝାସ ଦେଇଅଛନ୍ତି । ଗାନ୍ଧିବାଦୀ

ରାମଶଙ୍କର ନକ୍ସଲ୍‌ବାଦୀଙ୍କର ହିଂସାମାର୍ଗକୁ ପସନ୍ଦ କରିପାରି ନାହାନ୍ତି କିନ୍ତୁ ସେମାନଙ୍କର ଦେଶପ୍ରୀତି ଓ ତ୍ୟାଗ ନିକଟରେ ମୁଣ୍ଡ ନୁଆଁଇ ଅଛନ୍ତି ।

ଯୁବ ପରିଷଦର କର୍ମୀମାନଙ୍କ ସହ ନକ୍ସଲ୍‌ବାଦୀ କର୍ମୀ କମଳା କାନ୍ତର ଗୁଣପୁର ଠାରେ ନିଭୃତ ଆଲୋଚନା, ମଧ୍ୟ ରାତ୍ରରେ କମଳାକାନ୍ତ ଫେରିଯାଉଥିବା ସମୟରେ ପୁଲିସ ଗୁଳିରେ ତା'ର ମୃତ୍ୟୁ, ବିନୟ ସହିତ କମଳାକାନ୍ତର ବନ୍ଧୁତା ଓ କମଳାକାନ୍ତର ମୃତ୍ୟୁ ପରେ ତା'ର ବିଧବା ପତ୍ନୀ ଉର୍ବଶୀ ସହିତ ବିନୟର ବିବାହ ପ୍ରଭୃତି ଘଟଣାର ସମାବେଶ ଉପନ୍ୟାସର ଘଟଣା ପ୍ରବାହ ଓ ଚରିତ୍ର ଚିତ୍ରଣରେ କିଛିଟା ଚମତ୍କାରିତା ସୃଷ୍ଟି କରିବାରେ ସମର୍ଥ ହୋଇଛି ।

ପଦ୍ମପୁରର ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧିବାଦୀ କର୍ମୀ ଧନଞ୍ଜୟ ଓ ବ୍ରହ୍ମପୁରର ସୀତାରାମାୟା ଉପନ୍ୟାସର ଦୁଇଟି ଅନ୍ୟତମ ବଳିଷ୍ଠ ଚରିତ୍ର । ପୁରୁଣା ଯୁଦ୍ଧଘୋଡ଼ା ଯୁଦ୍ଧ ନାଁ ରେ ଗୋଡ଼ ଉଠାଇବା ପରି ସ୍ୱାଧୀନତା ସଂଗ୍ରାମୀମାନେ ରାମଶଙ୍କରଙ୍କ ନେତୃତ୍ୱରେ ପରିଚାଳିତ ଏହି ନବ ଯୁବ-ଆନ୍ଦୋଳନ ପ୍ରତି ନୈତିକ ସମର୍ଥନ ଜଣାଇଲେ ବି ପ୍ରକୃତ ଯୁଦ୍ଧ କ୍ଷେତ୍ରକୁ ବାହାରି ଆସିବାକୁ ସେମାନେ ପରାଙ୍ମୁଖ । ଦେଶର ବର୍ତ୍ତମାନର ଅଧୋଗତିରେ ସେମାନେ କିଂକର୍ତ୍ତବ୍ୟମୂଢ଼ ଓ ନିଜ ନିଜର ଛୋଟବଡ଼ ସମସ୍ୟା ନେଇ ବ୍ୟସ୍ତ । ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ସମ୍ମିଳନୀରେ ଏହି ମନୋଭାବଟି ପ୍ରତିଫଳିତ ହୋଇଛି ଏବଂ ରାମଶଙ୍କରଙ୍କ ଉଦ୍‌ବୋଧନ ନୂତନ ବିପ୍ଳବ ପାଇଁ ସେମାନଙ୍କ ଉପରେ ବିଶେଷ କିଛି ପ୍ରଭାବ ପକାଇ ପାରି ନାହିଁ । ସଂଗ୍ରାମୀ ଯୁବପରିଷଦର ଯୁବନେତା ଯେଉଁମାନେ କି ବିପ୍ଳବ ପାଇଁ ବାହାରିଛନ୍ତି ସେମାନଙ୍କ ଗତିବିଧି ବିଶେଷ ଆଶାପ୍ରଦ ନୁହେଁ । ଏମାନଙ୍କ ଭିତରୁ ଅନେକ କୌଣସି ଉଚ୍ଚ ବୃତ୍ତିଗତ ବା ଜୀବିକାର୍ଜ୍ଜନର ପନ୍ଥା ନପାଇ ବିପ୍ଳବ ଦିଗକୁ ମୁହାଁଇଛନ୍ତି । କୌଣସି ମତ ବା ଆଦର୍ଶଗତ ପ୍ରେରଣା ଏମାନଙ୍କର ନାହିଁ । "ଆଧ୍ୟାତ୍ମିକ ବିଶ୍ୱାସ ନଥିଲେ କେବଳ ମାନସିକ ଉତ୍ସାହରେ ଯେ କୌଣସି କାର୍ଯ୍ୟ ସାଧିତ ହୁଏ ନାହିଁ ।" ଲେଖକ ଏହାର

ଗୁରୁତ୍ୱ ଉପନ୍ୟାସର ଏକାଧିକ ପ୍ରସଙ୍ଗରେ ଉଲ୍ଲେଖ କରି ଅଛନ୍ତି । ସଂଗ୍ରାମୀ ଯୁବ ପରିଷଦର ଅଧିକାଂଶ ସଭ୍ୟଙ୍କର ବିପ୍ଳବ ପାଇଁ ମାନସିକ ପ୍ରସ୍ତୁତି ଓ ଆନ୍ତରିକତା ନଥିବା କ୍ରମେ ପରିସ୍ଫୁଟ ହୋଇଛି । ସମ୍ବଲପୁରର ଯୁବନେତା ହୃଷୀକେଶ ବିବାହ ଓ ଘରସଂସାର କରି ନିର୍ବାଚନ ରାଜନୀତି ଆଡ଼କୁ ଚାଲିଛି । ବାଲେଶ୍ୱର ଅଞ୍ଚଳର ପ୍ରଦ୍ୟୋତ ପାରିବାରିକ କାରଣରୁ ପ୍ରତ୍ୟକ୍ଷ ରାଜନୀତିରୁ ଓହରି ଯାଇଛି । ବ୍ରହ୍ମପୁରର ବନସ୍ପତି ଉର୍ବଶୀକୁ ବିବାହ କଲା-ପରେ ଶାସକ ଦଳର ଗୋଡ଼ାଣିଆ ହୋଇ ନିଜର ଅନ୍ନସଂସ୍ଥାନ କରିବାରେ ବ୍ୟସ୍ତ । ବର୍ତ୍ତମାନର ଦୁର୍ନୀତିଗ୍ରସ୍ତ ଶାସନର ଆଭିମୁଖ୍ୟ ବଦଳାଇବା ଦିଗରେ ଦେଶର ଯୁବଗୋଷ୍ଠୀ; ବୁଦ୍ଧିଜୀବୀ ଓକିଲ, ଅଧ୍ୟାପକ; ସ୍ୱାଧୀନତା ସଂଗ୍ରାମୀ କାହାରି ଆନ୍ତରିକତା ନଥିବା ଲକ୍ଷ କରି ବିପ୍ଳବୀ ରାମଶଙ୍କର ଓ ସଂଗ୍ରାମୀ ଯୁବ ପରିଷଦର ଆବାହକ ବୀରକିଶୋର ଏକ ପ୍ରକାର ହତୋତ୍ସାହିତ ହୋଇପଡ଼ିଛନ୍ତି; କିନ୍ତୁ ରାମଶଙ୍କର ଆଶା ହରାଇ ନାହାନ୍ତି । ଏହି ସମୟରେ ଆପଦ କାଳୀନ ବ୍ୟବସ୍ଥା ଅନୁସାରେ ରାମଶଙ୍କରଙ୍କୁ ଗ୍ରେପ୍ତାର କରି ଜେଲକୁ ପଠାଇ ଦିଆଯାଇଛି । ଯୁବ ପରିଷଦର ସମସ୍ତ ସଭ୍ୟଙ୍କ ସମେତ ଶତ ଶତ ଦେଶପ୍ରେମୀଙ୍କୁ ବନ୍ଦୀ କରାଯାଇଛି । ସ୍ୱାଧୀନତା ସଂଗ୍ରାମ କାଳରେ ମହାତ୍ମା ଗାନ୍ଧିଙ୍କ 'ଜେଲ ଭରୋ' ଆହ୍ୱାନରେ ବହୁ ଦେଶପ୍ରେମୀ କାରାବରଣ କରିଥିଲେ । ଲେଖକ ବ୍ୟଙ୍ଗ କରି କହି ଅଛନ୍ତି ଯେ ଦେଶର ଏହି ତ୍ରିଶଙ୍କୁ ପର୍ବରେ ସ୍ୱାଧୀନ ଭାରତର ସ୍ୱଦେଶୀ ସରକାର ବର୍ତ୍ତମାନ 'ଜେଲ ଭରୋ' କାର୍ଯ୍ୟକ୍ରମକୁ ନିଜ ହାତକୁ ନେଇଛନ୍ତି ।

ରାମଶଙ୍କରଙ୍କ ମନରେ ଅସନ୍ତୋଷ ତଥାପି ରହିଗଲା । ଜୀବନ ସନ୍ଧ୍ୟାରେ ଦୁର୍ନୀତିଗ୍ରସ୍ତ ଶାସନର ଆଭିମୁଖ୍ୟ ପରିବର୍ତ୍ତନ ପାଇଁ ସେ ଯେଉଁ ଜନଜାଗରଣରେ ପ୍ରସ୍ତୁତି କରୁଥିଲେ ତାହା ବିଫଳତାରେ ପର୍ଯ୍ୟବସିତ ହେବାକୁ ଯାଉଛି । ଗ୍ରୀକ୍ ବିୟୋଗାନ୍ତ ନାଟକଠାରୁ ତାଙ୍କ ଜୀବନର ଏ ବିଫଳତା ଯେ ଆହୁରି ଦୁଃଖଦାୟକ ତାହା ସେ ମର୍ମେ ମର୍ମେ ଅନୁଭବ କଲେ । କିନ୍ତୁ ସେ ଆଶାବାଦୀ । ଦେଶର ଏ ତ୍ରିଶଙ୍କୁ ପର୍ବର ଅବସାନ ଯେ ଶୀଘ୍ର ହେବ ଏଥିରେ ତାଙ୍କର ସନ୍ଦେହ ନାହିଁ । "କେତେ ଯିବେ ମେଘ, ନବୀନ ଗରିମା ଭାତିବେ ଆବର ଲଲାଟେ ତୋର ।" କବିଗୁରୁ

ରବୀନ୍ଦ୍ର ନାଥଙ୍କର ଏହି ଆପ୍ତ ବାଣୀରେହିଁ ଉପନ୍ୟାସର ଉପସଂହାର ହୋଇଛି ।

ତ୍ରିଶଙ୍କୁ ପର୍ବ ଏକ ରାଜନୈତିକ ଉପନ୍ୟାସ ଏବଂ ଏଥିରେ ଦେଶର ରାଜନୈତିକ ଘଟଣା ପ୍ରବାହ ତଥା ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତିର ଯେଉଁ ସୂକ୍ଷ୍ମ ତାତ୍ତ୍ୱିକ ଓ ବାସ୍ତବ ଧର୍ମୀ ବିଶ୍ଳେଷଣ କରିଯାଇଛି । ତାହା ଡଃ ମହତାବଙ୍କ ପରି ପୁରୁଣା ରାଜନୀତିଜ୍ଞ ଓ ତତ୍ତ୍ୱଦର୍ଶିଙ୍କ ପକ୍ଷରେହିଁ ସମ୍ଭବ ।

ସେ ଏ ଦେଶର ରାଜନୈତିକ ଓ ଅର୍ଥନୈତିକ ଘଟଣା ପ୍ରବାହର ଜଣେ ଦ୍ରଷ୍ଟା କେବଳ ନୁହନ୍ତି, ବହୁ ପ୍ରଶାସନିକ ଓ ସାଙ୍ଗଠନିକ ପଦପଦବୀରେ ରହି ଏଥି ସହ ଓତଃପ୍ରୋତ ଭାବେ ଜଡ଼ିତ ମଧ୍ୟ । ଏଣ୍ଟାବ୍ଲିସମେଣ୍ଟ ବିରୁ-ଦ୍ଧରେ ଯେଉଁ ବିପ୍ଳବର ସ୍ୱର ସେ ଏହି ଉପନ୍ୟାସ ତଥା ତାଙ୍କର ଅନ୍ୟାନ୍ୟ ଲେଖାରେ ପ୍ରକାଶ କରିଅଛନ୍ତି ତାହା ତାଙ୍କ ପରି ଜଣେ ନିର୍ଭୀକ ଆଜନ୍ମ ବିପ୍ଳବୀ ପକ୍ଷରେହିଁ ସମ୍ଭବ ।

ବହୁ ଜଟିଳ ସମସ୍ୟା ଉପରେ ଡଃ ମହତାବଙ୍କର ଚିନ୍ତାଧାରା ଓ ବିଚାର ଅତି ସ୍ପଷ୍ଟ ଏବଂ ତାଙ୍କର ଭାଷା ଓ ପ୍ରକାଶ ଭଙ୍ଗୀ ମଧ୍ୟ ଅନୁରୂପ ସରଳ ଓ ଶକ୍ତିଶାଳୀ । ଦେଶର ବହୁଜଟିଳ ରାଜନୈତିକ ଓ ଅର୍ଥନୈତିକ ସମସ୍ୟାକୁ କେତେକ ଘଟଣା ଓ ଚରିତ୍ର ମାଧ୍ୟମରେ ଅତି ଚମତ୍କାର ଭାବରେ ସେ 'ତ୍ରିଶଙ୍କୁ ପର୍ବ' ଉପନ୍ୟାସରେ ଉପସ୍ଥାପିତ କରି ଅଛନ୍ତି ଯାହା ପାଠକକୁ ଆମୋଦ ଦେବା ସଙ୍ଗେ ସଙ୍ଗେ ଗଭୀର ଚିନ୍ତାର ଉଦ୍ରେକ କରି-ଥାଏ । ଏହାହିଁ ହେଉଛି ଏକ ରାଜନୈତିକ ଉପନ୍ୟାସ ହିସାବରେ 'ତ୍ରିଶଙ୍କୁ ପର୍ବ'ର ସଫଳତା ।

o

# ଡକ୍ଟର ମହତାବ ଏକ ବହୁସ୍ୱରୀ ବାଦ୍ୟ

ଗୋରଚନ୍ଦ୍ର ମିଶ୍ର

ମନରେ ଭୀଷଣ ଗର୍ବ ଯେ ଡକ୍ଟର ମହତାବଙ୍କ ସମ୍ପର୍କରେ ମୁଁ ବହୁତ କିଛି ଜାଣେ ..... କିନ୍ତୁ କ'ଣ ଲେଖିବି ଭାବିପାରୁନି ।

ପାଖରେ କୂଅ ଅଛି, ପୋଖରୀ ଅଛି, ପାଣି ଅଛି ବହୁତ । ଅଥଚ ଘରେ ନିଆଁ ଲାଗିଗଲେ ମଣିଷ ଯେପରି ବାଲଟି, ମାଠିଆ କିଛି ପାଇ ପାରେନା, ହଡ଼ବଡ଼େଇ ଯାଏ, ଠିକ୍ ସେହିଭଳି ମୋ ଅବସ୍ଥା ।

ଗତ ୨୫ ବର୍ଷ ଧରି ଯାହା ସହିତ ଏତେ ଘନିଷ୍ଠତା— ତାଙ୍କ ସମ୍ପର୍କରେ କିଛି ଲେଖିପାରୁନି କହିଲେ କେହି ବିଶ୍ୱାସ କରି ପାରିବେନି, କହିବେ ଲୋକଟା ଜାଣିଶୁଣି ଏଡ଼େଇ ଯାଉଛି ।

ଡକ୍ଟର ମହତାବଙ୍କ ସମ୍ପର୍କରେ କ'ଣ ଲେଖିବି, କଣ ଲେଖିବି ଭାବି ଆତଙ୍କିତ ହୋଇଗଲିଣି । ଏହି ଆତଙ୍କ ଭିତରେ ବୋଧହୁଏ ତାଙ୍କ ସହିତ ଶହେଥର କଥାବାର୍ତ୍ତା କରି ସାରିଲିଣି, ଅଥଚ........

ଏହି 'ଅଥଚ'ର ଗୋଟାଏ ମାନେ ଅଛି । 'ମାନେ'ଟି ହେଉଛି ଏକ ଇଲେକ୍ଟ୍ରିକ ଅର୍ଗାନ ଅର୍ଥାତ୍ ବହୁସ୍ୱରୀ ବାଜା ଭଳି ଡକ୍ଟର ମହତାବ ଏକ ବହୁମୁଖୀ ବ୍ୟକ୍ତିତ୍ୱ । ବହୁସ୍ୱରୀ ବାଦ୍ୟରୁ ବାହାରେ ବଂଶୀ, ସେତାର, ବେହେଲା, ହାରମୋନିୟମ ଆଦି ନାନା ବାଦ୍ୟର ସୁମଧୁର ସ୍ୱର । ଏହି ସ୍ୱରରେ ଶ୍ରୋତା ହୁଏ ବିମୋହିତ । ବିଷଧର ସର୍ପ ଫଣାଟେକି ଖେଳେ । ମାଙ୍କଡ଼ ନାଚେ । ଆଧ୍ୟାତ୍ମିକ ଭାଷାରେ ଏହାର ନାମ ନାଦ । ନାଦବ୍ରହ୍ମ । ଏହି ନାଦବ୍ରହ୍ମର ମୂର୍ଚ୍ଛନାରେ ମନୁଷ୍ୟ ଦେହରେ ସୃଷ୍ଟି ହୁଏ ଅଷ୍ଟସାତ୍ତ୍ୱିକ ଭାବ । କିଏ ହସେ, କାନ୍ଦେ । କିଏ ବା ଉନ୍ମତ୍ତ ଭାବରେ ନାଚେ । ଅତି ପରାକ୍ରମଶାଳୀ ଏହି ସ୍ୱରର ମାଦକତା ।

ଡକ୍ଟର ମହତାବ ସେହିଭଳି ଏକ ବହୁମୁଖୀ ବ୍ୟକ୍ତି । ଏହାଙ୍କ ମସ୍ତିଷ୍କରୁ କ'ଣ ଯେ ବାହାରେ ନାହିଁ କହିହେବନାହିଁ । ଏଥିରୁ ବାହାରେ ରାଜନୀତି, ଅର୍ଥନୀତି, କୂଟନୀତି, ଇତିହାସ, ଗଳ୍ପ, କବିତା, ଉପନ୍ୟାସ, ନାଟକ, ଶିଶୁଲେଖା, ଅଭିନୟ କୌଶଳ, ଧର୍ମୋପଦେଶ, ଜଣେ ପରିପୂର୍ଣ୍ଣ ମାନବଠାରୁ ଯାହା ଯାହା ସମ୍ଭବ ସେ ସବୁ ।

ଡକ୍ଟର ମହତାବ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, କିଶୋର ଅବସ୍ଥାରେ ସେ ଭାବିଥିଲେ ଭବିଷ୍ୟତରେ ସେ ହେବେ ଜଣେ ସୁବାଦକ । ତାଙ୍କ ପିତା ଥିଲେ ଜଣେ ସଙ୍ଗୀତସାଧକ । ତେଣୁ ପିଲାଙ୍କ ସଙ୍ଗୀତ ସାଧନା ପାଇଁ ଉପଯୁକ୍ତ ଗୁରୁ ଓ ବାଦ୍ୟଯନ୍ତ୍ରର ବ୍ୟବସ୍ଥା କରାଇଥିଲେ । ମହତାବଙ୍କ ସଙ୍ଗୀତ ସାଧନାରେ ନିଜକୁ ଏପରି ବୁଡ଼େଇ ରଖିଥିଲେ ଯେ ଭାବିଥିଲେ ତାଙ୍କ ଭବିଷ୍ୟତ ଜୀବନ ହୋଇଉଠିବ ସଙ୍ଗୀତମୟ । ସେ ବଂଶୀ ବଜାଉଥିଲେ, ହାରମୋନିୟମ ବଜାଉଥିଲେ । କିନ୍ତୁ ଘଟଣାକ୍ରମେ ସେ ହୋଇ ଉଠିଲେ ସ୍ୱାଧୀନତା ସଂଗ୍ରାମୀ । ସେହି ସଂଗ୍ରାମ ଭିତରୁ ଉତ୍ତୀର୍ଣ୍ଣ ହୋଇ ସେ ହେଲେ ଜଣେ ପ୍ରବୀଣ ରାଜନୀତିଜ୍ଞ ତଥା ରାଷ୍ଟ୍ରନୀତିଜ୍ଞ ।

ପରବର୍ତ୍ତୀ ଜୀବନରେ ଆକ୍ଷରିକ ଭାବରେ ଜଣେ ସଂଗୀତ ସାଧକ-ବାଦକ ହୋଇ ପାରିନଥିଲେ ମଧ୍ୟ ରାଜନୀତିକ କ୍ଷେତ୍ରରେ ସେ ଜଣେ ଯୋଗ୍ୟତ ବାଦକ ଭାବରେ ସୁପ୍ରତିଷ୍ଠିତ । ବାଦକର ଭୂମିକା ଯାହା ତାହାହିଁ ସେ ପ୍ରତିପାଦନ କରି ଆସିଛନ୍ତି ଏପର୍ଯ୍ୟନ୍ତ । ବାଦକ ବାଦ୍ୟ ବଜାଏ, ଅନ୍ୟମାନେ ଗାଆନ୍ତି, ନାଚନ୍ତି । ବିନା ବାଦ୍ୟରେ ନୃତ୍ୟ, ନୃତ୍ୟ ନୁହେଁ; ଗୀତ ଗୀତ ନୁହେଁ । ଡକ୍ଟର ମହତାବ କେବଳ ଯେ ବାଦ୍ୟ ବଜାଇ ଆସିଛନ୍ତି, ତାହା ନୁହେଁ, ନିଜେ ଗାଇଛନ୍ତି, ନାଚିଛନ୍ତି । ସ୍ୱାଧୀନତା ସଂଗ୍ରାମର ବିରାଟ ମଞ୍ଚ ଉପରେ ଦୀର୍ଘକାଳ ଧରି ତାଙ୍କର ଜୀବନ୍ତ ଅଭିନୟକୁ ଯିଏ ଦେଖିଛି, ତା ଆଖି ଝଲସି ଉଠିଛି । ଏପରି ଦୁଃସାହସିକ ପ୍ରାଣମୂର୍ଚ୍ଛା ସଂଗ୍ରାମ କେବଳ ଡକ୍ଟର ମହତାବଙ୍କ ପକ୍ଷରେହିଁ ସମ୍ଭବ ହୋଇପାରିଛି । ତାଙ୍କ ଜୀବନ ଭାରତର ଅଗ୍ନିଗର୍ଭ ଇତିହାସର ଜ୍ୱଳନ୍ତ ସାକ୍ଷୀ । ମନରେ ହିଂସାଭାବ ନରଖି ହିଂସାର ସମ୍ମୁଖୀନ ହେବାର ଅପାର ଶକ୍ତି ରହିଛି ତାଙ୍କଠାରେ ।

ବାସ୍ତବରେ ସେ ଜଣେ ବାଦକ । ଜୀବନରେ ତାଳ ଲୟର ସମନ୍ୱୟ ରକ୍ଷା କରି ସେ ଯେଉଁ ସଂଗୀତ ପରିବେଷଣ କରିବାରେ ଲାଗିଛନ୍ତି ତାହା ଦେଶର ଜନସାଧାରଣଙ୍କୁ ମନ୍ତ୍ରମୁଗ୍ଧ କରି ଆସିଛି ଏଯାଏଁ । ତାଙ୍କ ବାଦ୍ୟର ସ୍ୱର ଲହରୀରେ କେତେ ଯେ ଜୀବନ ଝଂକୃତ ହୋଇଛି ତାର ହିସାବ ନାହିଁ । ତାଙ୍କର ସ୍ୱରରେ ପ୍ରଶମିତ ହୋଇଛି ଲକ୍ଷ ଲକ୍ଷ ବିଦୀର୍ଣ୍ଣ ହୃଦୟର ବେଦନା ।

ତାଙ୍କର ଗୋଟିଏ କଥା ମତେ ସବୁବେଳେ ଅନୁପ୍ରାଣିତ କରି ଆସିଛି । ସେ କହନ୍ତି—ସେବାବ୍ରତ ହେଉଚି ସବୁଠାରୁ ବିପଦ ସଂକୁଳ । ପଦେ ପଦେ ବିଘ୍ନ, ଧିକ୍କାର ଓ ସମାଲୋଚନା । ହସ ହସ ମୁହଁରେ ସେ ସବୁକୁ ସହି ନେଇ ଲକ୍ଷ୍ୟ ପଥରେ ଆଗେଇ ଯିବାହିଁ ସବୁଠାରୁ ବଡ ବାହାଦୁରି । ତାହାହିଁ ପୌରୁଷ । ଯିଏ ଅଟକି ଯାଏ, ସେ ସ୍ୱର୍ଗି ପଡ଼େ । ଆନ୍ତରିକତା ଓ ନିଷ୍ଠାର ଅଭାବରୁହିଁ ଏପରି ଘଟେ । ମଣିଷ ଜୀବନରେ ଏହାହିଁ ଦାରୁଣ ଦୁର୍ଦ୍ଦଶା । ଏହାର ଅନ୍ୟନାମ 'ହତାଶା' । ଯିଏ ଏହାକୁ ଅତିକ୍ରମ କରିଯାଏ ସେ ଦୁଃଖ ଭିତରେ ସୁଖକୁ ଅନୁଭବ କରେ ।

ଉତ୍କଳର ମହତାବ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ହୀରାକୁଦ ବନ୍ଧଠାରୁ ଆରମ୍ଭ କରି ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ ଦିଗରେ ଦୁଃସାହସିକତା ଲାଗି ସେ କମ ସମାଲୋଚିତ ହୋଇନାହାନ୍ତି । ସେତେବେଳେ ସେ ଅଟକି ଯାଇଥିଲେ ଆଜି ଏ ରାଜ୍ୟର ଅବସ୍ଥା କ'ଣ ହୋଇଥାନ୍ତା ? ଏଭଳି ଦୂରଦୃଷ୍ଟିସଂପନ୍ନ ରାଜନୀତିଜ୍ଞ ଓଡ଼ିଶାରେ ସେ କେବଳ ଜଣେ ।

ତାଙ୍କ ପାଖକୁ ଆସନ୍ତି ସମସ୍ତେ—ସବୁ ଦଳ, ସବୁ ଧର୍ମ, ସବୁ ଶ୍ରେଣୀ ସବୁ ସଂପ୍ରଦାୟର ଲୋକ ନିଜର ମନକଥା ଜଣାଇବା ଲାଗି । କେବଳ ତାଙ୍କର ପଦେ କଥାରେ ବହୁଦୁଃଖର ଲାଘବ ହୁଏ କ୍ଷଣିକରେ । ବିରାଟ ବିରାଟ ସମସ୍ୟାର ସମାଧାନ ହୋଇଯାଏ ମାତ୍ର ଅଳ୍ପ କେତେ ସମୟ ଭିତରେ ।

ଗୋଟିଏ କଥା ମନେ ପଡ଼ୁଛି । ଦଶପଲ୍ଲା ଗଡ଼ଜାତ ଆନ୍ଦୋଳନର ନେତା ସ୍ୱର୍ଗତଃ ଗୋବିନ୍ଦଚନ୍ଦ୍ର ମିଶ୍ର ବଞ୍ଚିଥିବା ବେଳେ ତାଙ୍କଠାରୁ ଶୁଣି-ଥିଲି । ସ୍ୱାଧୀନତା ସଂଗ୍ରାମ ବେଳର କଥା । ବ୍ରିଟିଶ ସରକାରଙ୍କ ଅନୁଗତ କର୍ମଚାରୀମାନେ ଗୋଟିଏ ଗାଁରେ ଏପରି ବ୍ୟବସ୍ଥା କରି ଦେଇ ଥିଲେ ଯେ ସେ ଅଞ୍ଚଳରେ କଂଗ୍ରେସବାର୍ତ୍ତା ପହଞ୍ଚି ପାରୁ ନଥିଲା । କେତେକ ନିମକହାରାମ ଟାଉଟରଙ୍କ ଘେରରେ ରହିଥିଲା ଏ ବଡ଼ଗାଁଟି । କଂଗ୍ରେସ କର୍ମୀମାନେ ସେ ଗାଁକୁ ଯିବାଯାଏ ଲୋକେ ମାରି ଗୋଡ଼ାଉଥିଲେ । କର୍ମୀ-ମାନେ ମହତାବଙ୍କ ପାଖକୁ ଆସି ଏ ଖବର ଦେବାରେ ମହତାବଜୀ କହିଲେ ଠିକ୍ ଅଛି, ଏଣିକି ସେ ଗାଁ ଲୋକଙ୍କ ଦାୟିତ୍ୱ ମୁଁ ନେଲି । ମତେ ଆଠଦିନ ସମୟ ଦିଅ, ତାପରେ ଯିବ ।

ଆଠଦିନ ଭିତରେ ମହତାବଜୀ ସେ ଗାଁ ଲୋକଙ୍କ ଭିତରେ କିପରି ପଶିଲେ କେଜାଣି, ସେମାନଙ୍କ ମନକୁ ଏପରି ଭାବେ ବଦଳାଇ ଦେଲେ ଯେ ଲୋକେ ତାଙ୍କୁ ମୁହୂର୍ତ୍ତେ ସୁଦ୍ଧା ଛାଡ଼ି ରହିପାରିଲେ ନାହିଁ । ଶହ ଶହ ପରି-ବାରର ଅତି ଆପଣାର ଲୋକ ହୋଇ ରହିଲେ ସେ । ସେମାନଙ୍କ ଘରେ ରହିବା ଖାଇବା ଆଦି କାମ ଚାଲିଲା ତାଙ୍କର । କିନ୍ତୁ ମହତାବଜୀ ସେ ଗାଁକୁ ଯାଇଥିବା କଥା କଂଗ୍ରେସ କର୍ମୀମାନଙ୍କ ମଧ୍ୟରୁ କେହି ଜାଣି ପାରି ନଥିଲେ ।

ଆଠଦିନ ପରେ କଂଗ୍ରେସ କର୍ମୀମାନଙ୍କୁ ଲୋକେ ଆସି ନିମନ୍ତ୍ରଣ କରି-ଗଲେ ସେହି ଗାଁରେ ସଭା କରିବା ଲାଗି । କର୍ମୀମାନେ ପ୍ରଥମେ ପ୍ରଥମେ ଭୟ କରୁଥିଲେ ଯିବାପାଇଁ । କିନ୍ତୁ ଲୋକଙ୍କ ଆଦର, ଅଭ୍ୟର୍ଥନାକୁ ଲକ୍ଷ୍ୟ କରି କର୍ମୀମାନେ ଗଲେ ସେ ଗାଁକୁ ।

ଯାଇ ଦେଖିଲେ ଗାଁ ମୁଣ୍ଡ ପଡ଼ିଆରେ ଏକ ବିରାଟ ସଭାମଞ୍ଚ ତିଆରି ହୋଇଛି । କଂଗ୍ରେସ ପତାକା ଉଡ଼ୁଛି । ହଜାର ହଜାର ଲୋକ ରୁଣ୍ଡ ହୋଇଛନ୍ତି । ହୁଳହୁଳି ଧ୍ୱନିରେ ଗାଁ ଦାଣ୍ଡ ଓ ସଭାସ୍ଥଳ ମୁଖରିତ । କର୍ମୀ-ମାନେ ଭାବିଲେ ବ୍ରିଟିଶ ବୋଲକରାମାନଙ୍କ ଇଏ ଏକ ଚକ୍ରାନ୍ତ । କଂଗ୍ରେସ-କର୍ମୀମାନଙ୍କୁ ଘେରଉ ଭିତରେ ପକାଇ ଶେଷରେ ଉତ୍ତମ ମଧ୍ୟମ ଦେଇ ଛାଡ଼ିବେ ।

କିନ୍ତୁ କଂଗ୍ରେସ ପତାକାକୁ ଦେଖି ଏବଂ କଂଗ୍ରେସକୁ ଜୟ, ମହାତ୍ମା-ଗାନ୍ଧୀଙ୍କ ଜୟ ସ୍ଲୋଗାନ ଶୁଣି କର୍ମୀମାନେ ତାଙ୍କ ଉଦ୍‌ବୁଦ୍ଧ ହୋଇ ପଡ଼ିଲେ ଯେ ସେମାନଙ୍କ ପାଦ ଆପେ ଆପେ ଆଗେଇଗଲା ସଭାମଞ୍ଚ ଆଡ଼କୁ । ହଠାତ୍ ଲୋକଗହଳ ଭିତରୁ ଉପରକୁ ଉଠିଲେ ବୀର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ହରେକୃଷ୍ଣ ମହତାବ ।

ସେଦିନ ମୁଁ ଆଜି ମହେଶ୍ୱରର ମୂଳଆ ବସିଥାଇ ଗୋବିନ୍ଦ ମିଶ୍ରଙ୍କ କାକଟିଗଳି ଘରେ । କହୁ କହୁ ଗୋବିନ୍ଦ ବାବୁଙ୍କ ଆଖି ଛଳଛଳ ହୋଇ ଆସିଲା । କହିଲେ, "ମହତାବଙ୍କୁ ଦେଖି ସେଦିନ ଆମମାନଙ୍କ ମନ ଯେ କ'ଣ ହୋଇ ଉଠିଲା, କଥାରେ କହି ହେବନାହିଁ । ଆମେ ସମସ୍ତେ ଆନନ୍ଦରେ ଯେପରି ମୂକ ହୋଇ ପଡ଼ିଲୁ । ତାପରେ ମହତାବଙ୍କ ମୁହଁରୁ ଯେଉଁ ଉଦ୍‌ବୋଧନବାଣୀ ଶୁଣିଲୁ ସେପରି କେବେ ଶୁଣି ନଥିଲୁ ।"

ଏପରି କେତେ ଘଟଣା । ତାଙ୍କ ୮୨ବର୍ଷ ଜୀବନର ଘଟଣାମୟ ସଂଗ୍ରାମମୟ ଜୀବନର ଅତୀତ ଭିତରେ ରହି ଆସିଛି ଏପରି କେତେ ନା କେତେ ଅପ୍ରକାଶିତ ଘଟଣା···କେତେ କାହାଣୀ ।

ଜଣେ ସୁଦକ୍ଷ ପ୍ରଶାସକ ଭାବରେ ଯେତିକି କଠୋରତା ଆବଶ୍ୟକ ତାର ସେ ସୀମା ଅତିକ୍ରମ କରିନାହାଁନ୍ତି କେବେହେଲେ । ବାସ୍ତବରେ ତାଙ୍କ ହୃଦୟ ବଜ୍ରଠାରୁ କଠୋର, କୁସୁମଠାରୁ କୋମଳ । ଅନେକ କ୍ଷେତ୍ରରେ ମୁଁ ଲକ୍ଷ୍ୟ କରିଛି ତାଙ୍କର ଅକଥିତ କ୍ରୋଧହିଁ ହୋଇ ଉଠିଛି ପରବର୍ତ୍ତୀ କାଳରେ ଆଶୀର୍ବାଦ । ପ୍ରଶାସକ ଭାବରେ କର୍ତ୍ତବ୍ୟ ଦୃଷ୍ଟିରୁ ଯାହାକୁ ସେ ଦଣ୍ଡିତ କରିଛନ୍ତି, ମାନବିକତା ଦୃଷ୍ଟିରୁ ତାଙ୍କୁ ଦଣ୍ଡମୁକ୍ତ କରିବାକୁ ସେ ସାହାଯ୍ୟ କରି ଆସିଛନ୍ତି ନାନା ଭାବରେ ।

ଗୋଟିଏ ଘଟଣା ମନେ ପଡୁଛି । 'ପ୍ରଜାତନ୍ତ୍ର' ଅଫିସର ଜଣେ କର୍ମଚାରୀ ନିଜର କୁପ୍ରବୃତ୍ତି ବଶତଃ ହେଉ ବା ଦାରିଦ୍ର୍ୟତାଡ଼ନାରୁ ହେଉ, କ'ଣ ସବୁ ଚୋରି କରିଥିଲା । ମହତାବଙ୍କ କାନକୁ ଯିବାମାତ୍ରେ ସେ ତାଙ୍କୁ

ସଙ୍ଗେ ଜେନେରାଲ ମାନେଜରଙ୍କୁ ଡାକି କହିଲେ, କହୋ ତାଙ୍କୁ ପୁଲିସରେ ଦେଉନା କାହିଁକି ?

ବଡ଼ବିଲ ଥାନାକୁ ଭଡ଼ା ହୋଇଗଲା । ପୁଲିସ ତା ନାଁରେ ମକଦ୍ଦମା କଲେ । ନାନା ଭାବରେ ହଇରାଣ ହେଲା ସେ ।

ସେ ହଇରାଣ ହେଉଥିବା କଥା ମଧ୍ୟ ମହତାବଙ୍କ କାନକୁ ଗଲା । ତା ଆରଦିନ ମାନେଜରଙ୍କୁ ଡାକି କହିଲେ—କହୋ ଜାଣିଛ ନା, ଆମ ଲୋକଟାକୁ ପୁଲିସ କୁଆଡ଼େ ଭୀଷଣ ହଇରାଣ କରୁଛନ୍ତି । ଯାହା ହେବା ତ ହେଲା, ତାକୁ ମୁକୁଳେଇବା ପାଇଁ ବ୍ୟବସ୍ଥା କରୁନା କାହିଁକି ? ଯାହାସବୁ ଲେଖି କରି ଦେଇଥିବ, ସେତିକି ତ ମକଦ୍ଦମାରେ ସରିଯିବଣି । ଲୋକଟା ଚଳିବ କମିତି ? ତା ପିଲାଛୁଆ ଭାସିଯିବେ ଯେ......

ଏପରି ଉଦାର ହୃଦୟ ତାଙ୍କର । କଥାରେ ଅଛି—

"ଦଣ୍ଡିବା ଶକ୍ତି ଯାର ଥାଇ
ସେ ପୁଣି କ୍ଷମା ଆଚରଇ ।"

ପ୍ରଜାତନ୍ତ୍ର ଅଫିସ
କଟକ-୨



# ଜଣା ଲୋକର ଏତେ ଅଜଣା ସୀମା

ରାଜକିଶୋର ରାୟ

ଜଣେ କେହି ଲୋକର ଜୟନ୍ତୀ ଉଦ୍ଦେଶ୍ୟରେ ଲେଖନୀ ଧରିଲେ କିଛି ଲେଖିବାକୁ, ମନରେ ଆସେ କଅଣ ବା ଦରକାର ? ମଣିଷଟିଏ ଜନ୍ମ ହୋଇଛି, ଦେହ ଧରିଛି, କିଛି କାର୍ଯ୍ୟ କରିଛି, ଦେହ ଧର୍ମ ପାଇଁ ବା ନିଜ ସ୍ୱାର୍ଥ ପାଇଁ, ପୁଣି ସେ ହଜିଯିବ, କେଉଁଠି ପତ୍ତା ରହିବନି, ଖାଲି ତାର ପରିବାରବର୍ଗଙ୍କ ସ୍ମୃତିରେ କିଛିଦିନ ସେ ବଞ୍ଚିବ, ସେମାନେ ବି ଭୁଲିବେ ଶେଷରେ, ଗୋଟାଏ ଚିହ୍ନ ବା ଅତିବଡ଼ରେ ତାର ମୁରବିପଣିଆ ପିଲାଙ୍କ ପ୍ରତି ସ୍ନେହ ଅବା କାହାକୁ ଆଘାତ ଦେଇଥିବାର ଆଲୁଅ ଅନ୍ଧାର ମିଶା ସମୟର ମିଶ୍ରିମସ୍ତ କଳଙ୍କ ଓ କାମନାର ଗୋଟାଏ ଜୀବ ବିଶେଷ, କୃମି, କୀଟ ପତଙ୍ଗ ଭଳି ଜଡ଼ନ୍ତା ଅବା ଗଛ ପଥର, ମାଟି ଭଳି ସ୍ଥାବରତ୍ୱର ଗୋଟାଏ ପ୍ରତୀକ···ଫୁ ଫୁ କରି ଦୁଇଥର ବୁଦ୍‌ବୁଦ୍‌କୁ ଉଡ଼ାଇ ଦେବାଭଳି ଅସତ୍ୟ ଓ ଅବାନ୍ତରତାକୁ କଅଣ ଆମେ ଗୋଟାଏ ଜୟନ୍ତୀ ରୂପ ଦେଇ ଶାଶ୍ୱତ କରିବା ?

ଏ ଦେଶରେ ଲୋକ ଅଛନ୍ତି, ଆତ୍ମମ୍ଭରିତାର ପ୍ରଗୃଭକ, ପାଣି ସୁଅରେ ଗାର କାଟି, ଅନନ୍ତକୁ ଧରି ରଖିବାକୁ ଏମିତି ବାତୁଳ ଗୁଡ଼ାଏ ଅଛନ୍ତି, ଯିଏ ନିଜଅଣ୍ଟା ପଇସା ଖର୍ଚ୍ଚ କରି ଗୋଟିଏ ସମାରୋହପୂର୍ଣ୍ଣ ଜୟନ୍ତୀ କରନ୍ତି, ସ୍ତାବକତା ଯାହାକୁ ଭଡ଼ାଟିଆ ସୂତ୍ରରେ ମିଳିଯିବ ପ୍ରଚୁର ପରିମାଣରେ, ନିର୍ଲଜତାର ଚରମ ସୀମାରେ ଯାହାଙ୍କର ସବୁ ରଙ୍ଗରସର ଆୟୋଜନ, ସେଭଳି ଲୋକଙ୍କ ହେସ୍ତ ପ୍ରକାର ଜୟନ୍ତୀରେ ଯେ-ତେବେଳେ ଏ ରାଜ୍ୟ, ଏ ଦେଶ ଜର୍ଜରିତ, ସେଠାରେ ଅର୍ଥାତ୍ ସେଠାର ସ୍ୱାର୍ଥ ସେବା ମାନସ ବିଳାସରେ ଗୋଟିଏ ଗୋଟିଏ ମାଳଞ୍ଚ ଆଶ୍ରମ ବାଟିକା ଦେବାସୂତ୍ର ଜନ୍ମ ନୁହେଁ ପୌରୁଷର ଜୟଗାନରେ ଯେପରି ଦେବ ଦୁର୍ଲ୍ଲଭ ଆତ୍ମ ପରିଚ୍ଛନ୍ନ

ଉପରେ ଉପାଣିତ ହୋଇଯାଏ । ସେଇଭଳି ଗୋଟିଏ ଦୃଶ୍ୟକୁ ମୁଁ ଆଜି ଆଖି ଆଗରେ ରଖି ନିରବଧି ପ୍ରଣାମ ଜଣାଇ ଗୋଟିଏ ବନ୍ଦନାମାଳା ରଚନା କରିବାକୁ ଯାଉଛି, ଯାହା ସ୍ମୃତି ନୁହେଁ, ଉଦ୍ଭଟ କଳ୍ପନା ନୁହେଁ, ସତ୍ୟର ଗୁଞ୍ଜରଣ ଶୁଣାଇବାକୁ ।

ମୁଁ ନିଜେ ଜୀବନ୍ତ ଅନ୍ୟକେ ଜୀବନ୍ତ ପ୍ରତିଭାକୁ ନମସ୍କାର କରିବାକୁ ଗଲାବେଳେ ମୋର ଅପ୍ରାଂସିଶା ବଚନିକା ହୁଏତ ପ୍ରଚୁର ହୋଇଯିବ, ସେ ପ୍ରାଚୁର୍ଯ୍ୟରେ କେବେ କେଉଁ ସମୟରେ ଉକ୍ତ ପ୍ରତିଭା ମତେ ମୋର ସ୍ୱାର୍ଥାନୁକୂଳ ସହଯୋଗରେ କୃତାର୍ଥ କରି ଦେଇଥିବାର ସ୍ମୃତି ଆସିଯିବ, ଏ କଥାକୁ ବି ଈଶ୍ୱରଙ୍କୁ ଆସୁଛି ।

ଜୟନ୍ତୀର ଓଲଟା ଦିଗରେ ମୃତ୍ୟୁ ରହିଛି । ତାର ପାଦଧ୍ୱନି ଦୂରରୁ ଶୁଣାଯାଉଛି । ହେଲେ ଯିଏ ଜୀବନକୁ ଚିହ୍ନିଛି, ସେ ପରମ ମିତ୍ର ମୃତ୍ୟୁକୁ ବି ଚିହ୍ନିଛି । ଦେଖିଲାମାତ୍ରେ ହସିହସି ମେଲା ପସରାକୁ ନିମିଷେ ଗୋଠାଗୋଠି କରି କହିବେ—ଚାଲ୍ ଯିବା, ଆରେ ତୋ ଅପେକ୍ଷାରେ ତ ବସିଥିଲି, ଚାଲ !···

ଏ ଭୂମିକା ଦେବାର ଅର୍ଥ ଯେପରି ମୋର ଜୟନ୍ତୀ ହେଉଛି, କୋଟି କୋଟି ଲୋକଙ୍କର ଜୟନ୍ତୀରେ ସାନାଇ ବାଜି ଉଠୁଛି । ଗୋଟିଏ ଲୋକର ବହୁ ବ୍ୟାପ୍ତ, ବହୁ କର୍ମରତ, ବହୁ ନିଃଶ୍ୱାସ ଅନ୍ଦୋଳିତ, ବହୁ ବିଚିତ୍ର ଶୋଭା ଖଚିତ, ବହୁ ତୀକ୍ଷ୍ଣ କଣ୍ଟାରେ ପାଦ ରକ୍ତାକ୍ତ, ମଥା ଯାହାର କେଉଁଠି ବାଜୁଛି କହି ହେଉନି, ଗୋଡ଼ କେଉଁଠି ରହିଛି କହି ହେଉନି, ଦୁଇଟା ଭୁଜ କେଉଁଆଡ଼େ ଲମ୍ବି ରହିଛି କହି ହେଉନି, ଲୋଚନରେ କଅଣ ଦୃଶ୍ୟ ସବୁ ଆଲୋଚିତ ହେଉଛି, ଜଣାଯାଉନି, ଅଥଚ ସବୁ ଜଣାରେ ବି ଏତେ ଅଜଣା ସୀମା କେଉଁଠି ରହିଲା···ସେ ଲୋକ, ସେ ଯୁଗ ମାନବ, କିଏ ସେ, ଜନ୍ମ ତାର କାହିଁକି, ଶୀତଳ ମୃତ୍ୟୁ ବା ତାର ହେବ କାହିଁକି ? ସେ କିଏ ?

ସେ ହିଁ ହରେକୃଷ୍ଣ ମହତାବ, ଜନ୍ମିଲାବେଳେ କାନ୍ଦିଛି, ଦେହ ଧରି ମନକୁ ଠେକିଛି ଭୂମାଆଡ଼େ, କାନ୍ଧରେ ବୋହିଛି ନବ ନବ ସୃଷ୍ଟିର

ଗୁରୁଭର, ଆଖିରେ ଦେଖିଛି ଦେଶର ଉବ୍ରତବ୍ୟତା, କାନରେ ଶୁଣିଛି କୋଣାର୍କ ନର୍ତ୍ତକୀର ପାଦ ନୂପୁର ମୂର୍ଚ୍ଛନା, ଜାଣିପୁଛାର ଇତିହାସରେ ପ୍ରତ୍ୟେକ ସ୍ପନ୍ଦନରେ ସେ ଇନ୍ଧନ ଦେଇଛି ତାର ସବୁ ଶରୀର, ମନ ; ସୁଖ ଦୁଃଖ, ପୁଷ୍ପାଞ୍ଜଳିରେ ସେ ଜୀବନାବଧି ସଜେଇଛି ଦେବତା ପାଇଁ ଅର୍ଘ୍ୟ, ସେ ଦେବତା ଆଉ କଏ ନୁହେଁ, ନିରାକାର କି ସାକାର ଜାଣେନା, ସେ ବୁଦ୍ଧ, ସେ ଯୀଶୁ କି ଶଙ୍କର ଜାଣେନା, ସେ ଜାଣେନା କେଉଁଟା ଶାକ୍ତ ପୀଠ, କେଉଁଟା ବୈଷ୍ଣବ ପୀଠ···ସେ କେବଳ ଜାଣିଛି, ସଂଗ୍ରାମ, ଅଭିମାନ, ଚରୈବେତି···ଚିବାକୁ ପଡ଼ିବ, ଏକୁଟିଆ, କଣ୍ଟାଝଣ୍ଟା ବାଜଲେ, ରକ୍ତଧାର ବୋହିଲେ ବି ସେ ଚୂହିଁଦେଇ ହସିଦେବ, ଭାବିବ ରକ୍ତ ଶୁଖିଯିବ ଯେ···ମିଛ କୋଳ କଲେ ସେ ଭାବିବ ଏ କୋଳ କେତେ ଉଷୁମ, ଶତ୍ରୁ ଚୁମ୍ବନ କଲେ ସେ ଭାବିଛି ଏଥିରେ ବି ସ୍ପନ୍ଦନ ଅଛି । ମାତ୍ର ଶେଷରେ ଜାଣିବ, ନୀତି ଏଥିରେ ବିଷ—ଉଭୟ ଅମୃତ ଓ ବିଷର ସତ୍ୟକାର ଅନୁଭୂତିନଚୟ ପାଥେୟ ଧରି, ଏଇ ଲୋକ, ଏଇ ହରେକୃଷ୍ଣ ମହତାବ ଦିଗନ୍ତ ତଳତଳ ଅସ୍ତମିତ ତପନର ସମସ୍ତ କାନ୍ତି ନେଇ ଆଜ ଉଦ୍ଭାସିତ, ମାପି ହେବ କି ? କେଉଁ ମାନଦଣ୍ଡରେ ମାପିବା ?

କହି ରଖେ, ମୁଁ ଅକ୍ଷମ । ମୋର ବା କେତେ ବୁଦ୍ଧି ? ଏ ହେଉଛି ପ୍ରଜ୍ଞାର କଥା, ଏ ଅନ୍ତରର ମାପିବା ବଚକ୍ଷଣତାର କଥା, ମୁଁ ପାରିବ କି ? ଅଥଚ ଜୟନ୍ତୀରେ ମାପିବାକୁ ହେବ, କିଛି ଲେଖିବାକୁ ହେବ, ଯାହାକୁ ମାପିବା ତାର ଦୁର୍ବଳତାକୁ ଘୁଞ୍ଚ ତାକୁ ହଠାତ୍ ଦେବତା କରିଦେଇ ମାପିବାକୁ ପଡ଼ିବ, ଏକଥା ମୁଁ କରିପାରିବ ନାହିଁ ।

ମହତାବଙ୍କୁ ମାପିବାକୁ କଉଳ ଫିତା ଦରକାର, ସୁନା ବା ରୂପାରେ ଓଜନ କରିବା କି ? ଆଚ୍ଛା କରାଯାଉ···ଯଦିଓ ମନ ମୁହେଁ, ମାରିବ ରହିଯିବା ଭଲ···ଅଗଣିତ ତାରାକୁ ଗଣିବା ବା ଜଳଧିକୁ ମାପିବା·· ଏ କଅଣ ସମ୍ଭବ ?

ମାତ୍ର ମଣିଷ ଜୀବନ ତ ମାପିବା ଭଳି ସୀମାନ୍ତର୍ଗତ ଭୂମିଟିଏ, ମାପିବାନି କାଇଁ ?

**ସାହିତ୍ୟ**—ଏ ଲେଖକ ସତରେ ବଡ଼ କବି ନୁହେଁ, ବଡ଼ ଲେଖକ ନୁହେଁ, ସ୍ୱାର ସୃଷ୍ଟି ବି ଅପୂର୍ବ ନୁହେଁ, ମାତ୍ର ମାପିଲେ ଜଣାପଡ଼େ ଯାହା ଏ ଯାଏ ଲୁଚି ହୋଇ ଆସିଛି ସାହିତ୍ୟ ନାମଧେୟ ପସରାରେ, ବା ନାଗର ପଣତ ଗଣ୍ଠିରେ, ମାଲମସଲା ଯେତେ, ସେ ସବୁର ନିର୍ଯ୍ୟାସ ରହିଛି ତାଙ୍କର କଥାରେ ।

"କିନ୍ତୁ ଏଇଯେ ଅନ୍ଧକାର ଘଡ଼ିଟି ସମାଜ କଟାଇଲା, ସେଥିରେ ସାହିତ୍ୟିକର କଳ୍ପନାର ପରିସର କ୍ଷୁଣ୍ଣ ହୋଇଥିବ । ହୁଏତ ଅନେକଙ୍କ ଲେଖନୀ ହିଁ ଗୁହିଁ ବନ୍ଦ ହୋଇଯାଇଥିବ କିମ୍ବା ଭୟଗ୍ରସ୍ତ ହୋଇ ଲେଖନୀ ପ୍ରବର୍ତ୍ତିତ ଅନ୍ଧକାରକୁ ଏକ ସ୍ଥାୟୀ ଅବସ୍ଥା ବୋଲି ଗ୍ରହଣ କରି ନେଇଥିବ, କିମ୍ବା ମନକଥା ମନରେ ମାରି ଲେଖନୀ ଆଦୌ ବ୍ୟବହାରକୁ ନ ଆସିଥିବ । ଏ ମିଳନ ବିଗତ ବର୍ଷର ଦୁଃସ୍ୱପ୍ନକୁ ସମ୍ପୂର୍ଣ୍ଣ ଭାବରେ ଭୁଲିଯିବାକୁ ସହାୟ ହେଉ । ଐତିହାସିକ ଗବେଷଣା କରୁଥାନ୍ତୁ, କାହିଁକି ଏପରି ଅବସ୍ଥାର ସୃଷ୍ଟି ହେଲା । କିନ୍ତୁ ସାହିତ୍ୟ ପଛକୁ ନ ଅନାଇ, ମାଡ଼ିଚାଲୁ ଆଗକୁ, ଏପରି ବେଗରେ ସେ ଚାଲୁ ଯେପରି ଲୋକେ ଦୁଃସ୍ୱପ୍ନକୁ ସମ୍ପୂର୍ଣ୍ଣ ଭୁଲିଯାଇ ମନେ କରିବେ ଯେ ତାହା ଥିଲା ଏକ ପୁରାଣ ଯୁଗର ଅସୁର ରାଜ୍ୟର ବର୍ଣ୍ଣନା ବା ନୂଶବର୍ଷ ଯୀଶୁଙ୍କ ଯୁଗର ତତ୍କାଳୀନ ସମାଜର ବର୍ଣ୍ଣନା । ଜର୍ମାନୀ ଯେପରି ଅଳ୍ପକାଳରେ ଭୁଲିଗଲା, ନାଜି ଆସନର ବର୍ବରତା, ସେହିପରି ଭାରତ ମଧ୍ୟ ଭୁଲିଯାଉ ବିଂଶ ଶତାବ୍ଦୀର ଶେଷ ପାଦର ଆରମ୍ଭରେ ଘଟିଯାଇଥିବା ବର୍ବରତା ।

—ଶ୍ରୀ ହରେକୃଷ୍ଣ ମହତାବ
"ପ୍ରାରମ୍ଭିକ ସୂଚନା-୨୯ଶ ବର୍ଷ
ବିଷୁବ ସଂଖ୍ୟା ଝଙ୍କାର ।"

'ଭୁଲ ଓ ମାଡ଼ିଚାଲ"—ଏ ଯେ ଦର୍ଶନ, ଯେ ଗଢ଼ିଲା ଏ ଦର୍ଶନକୁ, ତା ର ଗୋଟାଏ ଜନ୍ମପତ୍ରୀ କଅଣ ? ତାର ଗୋଟାଏ ଜୀବନାରମ୍ଭ ଦୃଶ୍ୟ ବା ଜୀବନ ନାଟକର ଶେଷ ଯବନିକା ପାତ କଅଣ—ଏତ ନିତ୍ୟ ପ୍ରବାହିତ ଅନନ୍ତକାଳ ମହାଜୀବନ ସ୍ରୋତ · ଏଥିରେ ଭିନ୍ନ ଛନ୍ଦ ଥାଇପାରେ, କିନ୍ତୁ ଅବ୍ୟାହତ ଏ ଶବ୍ଦ ବ୍ରହ୍ମ !! ମୁଁ ମୁଗ୍ଧ ଓ ସ୍ତବ୍ଧ । ମୋର ମାପିବାଯନ୍ତ୍ର ହାତରୁ

ଖସୁଛି, ମନର ପଞ୍ଜମିତ ଜ୍ଞାନ ଲୁଆଡେ ଗଲଣି, ଗୋଟାଏ ବଡ଼ସ ବର୍ଣ୍ଣ, ବହୁ ଘାଟର ଭୁଠ ପଥର, ବହୁ ମାଳମ ବନ୍ଦ୍ର ଅନନ୍ତ ଆକାଶର ସ୍ୱରୂପକୁ ମୁଁ କେମିତ ମାପିବ ?

ଗୋଟାଏ ଶବ୍ଦ ଅଛି, ଯାହାକୁ ଆମେ ଖୁବ୍ ଭଲପାଉ, ତାକୁ କହୁଦେଉଁ ମୃତ୍ୟୁଞ୍ଜୟ୍... ମୃତ୍ୟୁ ତ ଅବାରିତ, ତେବେ ଜୟକାର କେଉଁଠୁ ଆସିଲା ? କର୍ମ ବନ୍ଧନର ନିଃସ୍ୱାର୍ଥ ଉପଯୋଗ ହିଁ ଏଇ ମୃତ୍ୟୁଞ୍ଜୟୀର ଶବ-ବଳାସ । ହରେକୃଷ୍ଣ ମହତାବ ଏଇ 'ବଳାସ'ର ସାକ୍ଷାତ ମୂର୍ତ୍ତି ପ୍ରତୀକ ।

**ରାଜନୀତ** : ଏଇ ଭୂମିଟା ମହତାବଙ୍କର ବଡ଼ ସନ୍ତସନ୍ତିଆ । ହୁଏତ ମଣା ମାଛି ସରୀସୃପ ବହୁଳ ଗୋଟାଏ ଜାଗା, ଯେତେ ଫିନାଇଲ ବା ସୁଗନ୍ଧ ଢ଼ାଳଲେ ଏ ଭୂମିଟା ପବିତ୍ର ହୋଇପାରିବନ, କେବଳ ଭାରତବର୍ଷରେ ନୁହେଁ, ସାର ବିଶ୍ୱରେ...ଅଥଚ ଏଇ ଭୂମି ଉପରେ ଦଣ୍ଡବୈଠକ କରୁଥିବା ଫୁଲକା ଉପରକୁ ଆମ ପୁଷ ପହ୍ଲମାମାଗିର କରୁଥିବା ମହତାବ ଆସିଥିଲେ କଂଗ୍ରେସର ସ୍ୱେଚ୍ଛାସେବୀ ଭାବରେ, ହଜ ହଜ ଉପରକୁ ଉଠିଲେ, ମାତିଲେ, ମତେଇଲେ, ମିଶ କଲେ, ଶହ୍ରୁ କଲେ, ଉଠି ଉଠି ଆକାଶଦୀପ ହେଲେ, ସେ ଦୀପ ଲଭିଲା ହେଲେ ତାଙ୍କ ନାଁ ଧରିଲେ, ମନକୁ ଆସେ, "ପ୍ରବୀଣ ରାଜନୀତଜ୍ଞ ।" ତେଲ୍ ଗୁମୁଣ୍ଡା ଧରି ତନ୍ତ୍ରସାଧି ତାନ୍ତ୍ରିକ ହେଲେ । ଗୁଗଳ ଓ ମହିଷ ବଳ ଦେଇ ରକ୍ତ ଦେଖିଲେ, ଜୀବନକୁ ରକ୍ତାକ୍ତ କଲେ । ଜବାପୁଷ୍ପର ଭୋଗ ଦେଇ ଦେଶକୁ ସ୍ୱାଧୀନ କରିବାରେ ମାତିଲେ । ଅବଶେଷରେ ଶାନ୍ତ ସମାହିତ ଜୀବନର ବର୍ଣ୍ଣାଳୀ ପଶ୍ଚିମ ଗଗନରେ ସେ ଦେଖୁଛନ୍ତି ଦେଶ ସ୍ୱାଧୀନ ହୋଇ ବ ରସାତଳକୁ ଗୃଲଗଲା । ମଣିଷ ମଣିଷରେ ରହିଲା, କିଏ ବ ଉଠିଲା ନାଇଁ, ଚେତନାର ପ୍ରସାର ଘଟିଲା ନାଇଁ । ବିଶ୍ୱ ରାଜନୀତ ଇତିହାସରେ "ମହତାବ" ଏକ ସାର୍ଥକ ନାମ । ସେ ହଜିଯିବେ, ଆମେ ଯେମିତ ସମସ୍ତେ, ମାତ୍ର ତାଙ୍କର ନାମ ଅମରତା ଲଭ କରିଛି ଏ ପାଠରେ, ଯଦିଓ ଏବେ ବ ଲୋକେ କହନ୍ତି ପୂର୍ବାପର ସଙ୍ଗତି ଘେନ ଯେ ମହତାବ ହେଉଛନ୍ତି "ପ୍ରଚ୍ଛନ୍ନ ବୌଦ୍ଧ" ।

**ସାମ୍ବାଦିକତା** : ଏ ଗୋଟିଏ ଦିଗ, ଗୋପବନ୍ଧୁଙ୍କ ପଛକୁ ଯାଙ୍କର ଆସନ । ରାଜନୀତି କରିବାକୁ ହେଲେ ସମ୍ବାଦପତ୍ର ଦରକାର । ସମ୍ବାଦପତ୍ର ଥିଲେ ଜନମତ ସୃଷ୍ଟି ହେବ । ସତ୍ୟ ନ୍ୟାୟ ଓ ନିରପେକ୍ଷତାର ଝଗୃର କରି ଆସିଛନ୍ତି ମହତାବ । ଦୁଇଟା ସମ୍ବାଦପତ୍ର ଗୋଟିଏ ଉଚ୍ଚକୋଟୀର ସାହିତ୍ୟ ପତ୍ରିକା, ଅର୍ଦ୍ଧଶତାବ୍ଦୀ ଉପରି ଧରି ଚାଲିଛି ଏହାର ମାଧ୍ୟମରେ ଉତ୍କଳ ଦୃଷ୍ଟିର ସାଧନା-ତନ୍ତ୍ର । ଗୋଟାଏ ଲୋକ, ଅଥଚ ପ୍ରସାରିତ ଚେତନା କେତେ ସୁଦୂର ?

**ପାନ୍ଥଶାଳା** : ମହତାବ ଏକାମ୍ର ନିବାସରେ ରହିଲେ ବି ଏକାନ୍ତ ନିବାସରେ ରହନ୍ତି ନାହିଁ । "ନାନା ଦିଗ୍‌ଦେଶାତ୍ ଆଗତ୍ୟ ପକ୍ଷିଣଃ ନିବସନ୍ତି" ଭଳି ବହୁ ପକ୍ଷୀ କୂଜନରେ ତାଙ୍କର ଜୀବନ ବଟବୃକ୍ଷ ସର୍ବଦା ଶବ୍ଦାୟିତ । ତାଆଁ ବେଳୁ କେତେ ପକ୍ଷୀଙ୍କୁ ସେ ଉଡେଇଛନ୍ତି, ଖଣ୍ଡି ଉଡାରୁ ତାଙ୍କ ବିଶାଳ ବକ୍ଷ ଉପରକୁ ଉଡ଼ିଆସି ତାଙ୍କର ବକ୍ଷ ଦଂଶନ କରି ରକ୍ତାକ୍ତ କରିବା କେତେ ଦୃଶ୍ୟ ଯେ ନ ଘଟିଛି, ନିଜେ ଅମୃତ ଖୁଆଇ, ଅନ୍ୟର ବିଷ ପାନକୁ ଆନନ୍ଦରେ ମୁହଁରେ ଧରିଥିବା ଏ ବ୍ୟକ୍ତିତ୍ୱକୁ ମାପି ହେବ କି ? ଗୋଟିଏ ରଙ୍ଗୀନ ଚଳଚ୍ଚିତ୍ରର ଦୃଶ୍ୟାବଳୀର ଶୋଭା, ସେଥିରେ ବ୍ୟାଘ୍ର ଗର୍ଜନଠାରୁ ମୀନାବଜାର ଶିଶୁକାକଳି ମଧ୍ୟ ଦେଇ ପ୍ରବୀଣ ରାଜନୈତିକ କର୍ମୀମାନଙ୍କର ମନ କଷାକଷିର କେତେ ଯେ ଜୀବନ୍ତ ରୁଗ୍‌ଣ ଅଧ୍ୟାୟ ରହିଗଲା, ଯେ ଏହାର ବିଧାୟକ, ତାକୁ ମାପି ହେବ କି ?

**ଇତିହାସ** : ଇତିହାସ ବିପରୀତରେ କଳଙ୍କ ଇତିହାସ ଯାଙ୍କୁ ଖୋଜିଚି, ଏ ହୁଏତ ଖୋଜି ନ ପାରିଥାନ୍ତି । ନୂତନ କଥନରେ ସେ ଆବିଷ୍କାର କଲେ ମନ୍ଦିରମାଳିନୀ ଜନ୍ମଭୂମିକୁ । ସେଥିରୁ ଉତ୍ପନ୍ନ ଜାତି ଅଭିମାନର ସର୍ବୋଚ୍ଚ ଶ୍ରିକାନ୍ତୁତା ମହତାବଙ୍କ ବ୍ୟତୀତ ଆଉ କାହା କୃତିରେ ଅଛି କି ?

**ମଣିଷପଣିଆ** : ଅନ୍ତରଟି ସ୍ନେହ, ପ୍ରେମ, ଆଶା ଓ ଆଶ୍ରୟର ତ୍ରିବେଣୀ ତଟ । ଦୁଃଖ ଏ ଜଗତରେ ଯେତେ ଓ ଯେତେ ପ୍ରକାର, ସବୁକୁ

ବୁଝିବା ପାଇଁ ତଥା ବ୍ୟଥିତର ବ୍ୟଥା ଉପଶମ ପାଇଁ ଯେତିକି ପ୍ରକାର ଆଶ୍ୱାସନା ମଧୁର ତାଙ୍କର ଅନ୍ତରରେ ରହିଛି । ବିପଦ ଆପଦ, ସଂଘର୍ଷ, ଘାତ ପ୍ରତିଘାତ, ସବୁକଥା ଆଗୁରୁ ବିନା ପଲକପାତରେ କହିପାରିବ ଯାଙ୍କୁ । ସ୍ମିତ ଅତି ଗମ୍ଭୀର, ଧର୍ମ ଚିନ୍ତା ଅତି ପବିତ୍ର ଓ ସାକାର ରୂପୀ । ନେତ୍ର ଯୁଗଳରେ ସୀମାହୀନ ମାନବିକ ଦୃଶ୍ୟର ପ୍ରତିଫଳନ ପ୍ରତି ମୁହୂର୍ତ୍ତରେ । ତଥାପି ଏ ଜଣେ ମହା ଖେଳୁଆଡ଼—ରହସ୍ୟ ଘେରା ଗୁମ୍ଫା ମୂର୍ତ୍ତିରେ ଯାଙ୍କର କଂସ ନିଧନର ଯେତିକି ଛଳ ଚାତୁର୍ଯ୍ୟ ରହିଛି, ନବଜାତ କୃଷ୍ଣଙ୍କୁ ମଥାରେ ନେଇ ଯମୁନା ପାରି ହୋଇଯିବାର ଯେତିକି ଶକ୍ତି ଅଛି, ଉଭୟ ଶକ୍ତିକୁ ଏ ଉପଯୋଜନ କରିଛନ୍ତି ରାଜନୀତିରେ ବିଶେଷ ପ୍ରକାରରେ ଦେଶକାଳପାତ୍ର ଅନୁଯାୟୀ । ହୁଏତ ରାଜନୀତିର ଏହାହିଁ କୌଟିଲ୍ୟ ସମର୍ଥିତ ଆପ୍ତ ରହସ୍ୟ ।

ମହତାବ ଜୟନ୍ତୀ ସ୍ୱତଃସ୍ଫୂର୍ତ୍ତ ପ୍ରଣାମ ଉଚ୍ଛ୍ୱାସର ପୀଠ । ଏ ପ୍ରଣାମ ଆଉ ବ୍ୟକ୍ତି ପ୍ରସାରିତ ନୁହେଁ, ଏହା ଭୂମା ପ୍ରସାରିତ କାରଣ ମହତାବ ଆଉ ବ୍ୟକ୍ତି ଆପଣରେ ପ୍ରତିଷ୍ଠିତ ନୁହନ୍ତି । ଭୂମି ଓ ଆକାଶର ମଧ୍ୟସ୍ଥଳ ଗୋଟିଏ ରୀତିଯୁକ୍ତ ଆସନର ସେ ଅଧିକାରୀ । ସେ ତଳକୁ ନିରୀକ୍ଷଣ କରି ଉପରକୁ ଚାହିଁ ଯାହା ଏବେ ଭାବୁଛନ୍ତି, ତାହା ତାଙ୍କର କଥାରେ "ଉତ୍ସାହ, ଆତ୍ମବିଶ୍ୱାସ ଓ ସୃଜନ ପ୍ରୟାସ, ସମସ୍ତଙ୍କ ମନରେ ମିଳନ ସୃଷ୍ଟି କରୁ, ଏହାହିଁ ଈଶ୍ୱରଙ୍କଠାରେ ପ୍ରାର୍ଥନା ।" ଆମର ବି ପ୍ରାର୍ଥନା ଆପଣ ଆମର ଗୋଟିଏ ପ୍ରଣାମ ନିଅନ୍ତୁ ଓ ସେ ପ୍ରଣାମଟିକୁ ନିଜ ପାଖରେ କିଛି ସମୟ ରଖି ଅଧର ଧରାଇ ତାହାକୁ ନିଜର ଜୀବନ ଆପୂରିତ ସୁଦୀର୍ଘତାରେ ମନ୍ତ୍ରପୂତ କରି ସୃଷ୍ଟିକର୍ତ୍ତାଙ୍କ ନିକଟକୁ ପଠାଇ ଦିଅନ୍ତୁ ଏତିକି କହି ଯେ ଏ ଦେଶକୁ ଯେ ଆଶୀର୍ବାଦ କରନ୍ତୁ···ପ୍ରଣାମ, ଏ ଜୟନ୍ତୀର ଦୀର୍ଘାୟିତ ହେଉ ଆପଣଙ୍କର କର୍ମ ପ୍ରବଣତା ।



# ସ୍ୱପ୍ନ ବାସ୍ତବ ହୋଇଓ

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର

ଜୀବନର ସ୍ୱପ୍ନ ଓ ଅଭିଳାଷକୁ ଆପଣାର ଜୀବିତାବସ୍ଥାରେ ରୂପାୟିତ ହେବାର ଆନନ୍ଦ ପାଇବାକୁ କେତେଜଣ ସୁଯୋଗ ପାଆନ୍ତି । ଉତ୍କଳ ଗୌରବ ମଧୁସୂଦନ ଦାସ ସାମ୍ବିଧାନିକ ପନ୍ଥାରେ ସ୍ୱତନ୍ତ୍ର ଉତ୍କଳ ଗଠନର ସ୍ୱପ୍ନ ଦେଖିଥିଲେ । ଜନସେବା କ୍ଷେତ୍ରରେ ପ୍ରବେଶ ଦିନରୁ ସେ ଏଥିପାଇଁ ଉଦ୍ୟମ ଚଳାଇଥିଲେ । ମାତ୍ର ତାହା ପୂରଣ ହେବାର ମାତ୍ର ଦୁଇବର୍ଷ ପୂର୍ବରୁ ତାଙ୍କର ପରଲୋକ ହୋଇଗଲା ।

ଜନ୍ମବେଳକୁ ଓଡ଼ିଶାକୁ ଯେପରି ଦେଖିଥିଲେ ମୃତ୍ୟୁବେଳକୁ ତାହା ଅପେକ୍ଷା ଉନ୍ନତ ଅବସ୍ଥାରେ ଦେଖିବା ପାଇଁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଶପଥ ନେଇଥିଲେ । ଏହି ଉଦ୍ଦେଶ୍ୟରେ ସେ ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନର ଓଡ଼ିଶାରେ ନେତୃତ୍ୱ ନେଇଥିଲେ । ମାତ୍ର ଦେଶର ମୁକ୍ତି ସୂର୍ଯ୍ୟ ସୁଦୂର ଦିଗ୍‌ବଳୟରେ ଦୃଷ୍ଟିଗୋଚର ହେବା ପୂର୍ବରୁ ତାଙ୍କର ପରଲୋକ ହୋଇଗଲା ।

ଡଃ ହରେକୃଷ୍ଣ ମହତାବ ଦେଶର ମୁକ୍ତି ସଂଗ୍ରାମରେ ଆଦ୍ୟରୁ ଯୋଗଦେଇ ଦେଶର ସ୍ୱାଧୀନତା ଦେଖିଲେ । ସ୍ୱାଧୀନ ଭାରତରେ ନୂତନ ଓ ଓ ସମୃଦ୍ଧ ଓଡ଼ିଶା ଗଠନ ପାଇଁ ନିଜେ ମଧ୍ୟ ନେତୃତ୍ୱ ନେବାର ସୁଯୋଗ ପାଇଲେ । ସ୍ୱାଧୀନତା ସଂଗ୍ରାମ ସମୟରେ ଓଡ଼ିଶାକୁ ସମୃଦ୍ଧ କରିବାକୁ ସେ ପ୍ରତିଶ୍ରୁତିବଦ୍ଧ ଥିଲେ । ଗଡ଼ଜାତ ଆନ୍ଦୋଳନ ସମୟରେ ଗଡ଼ଜାତଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣ କରିବାକୁ ହେବ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ସ୍ୱାଧୀନ ଭାରତର ସେ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ହେଲେ । ମୁଖ୍ୟମନ୍ତ୍ରୀ ଓ

କେନ୍ଦ୍ରର ଶିଳ୍ପ ବାଣିଜ୍ୟ ମନ୍ତ୍ରୀଭାବେ ସେ ସମୃଦ୍ଧ ଓଡ଼ିଶା ଗଠନ ପାଇଁ ଭିତ୍ତି ସ୍ଥାପନ କଲେ । ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ଓଡ଼ିଶାର ଚୌଦ୍ୱାର, ରାଜଗାଙ୍ଗପୁର, ବେଲପାହାଡ଼, ରାଉରକେଲା, ରାୟଗଡ଼ା ପ୍ରଭୃତିରେ ନୂଆ ନୂଆ ଶିଳ୍ପ ପ୍ରତିଷ୍ଠା ସମ୍ଭବ ହେଲା । ନୂତନ ଓଡ଼ିଶାର ନୂତନ ରାଜଧାନୀ ଭୁବନେଶ୍ୱରରେ ପ୍ରତିଷ୍ଠା କରାଗଲା । ବାଣୀବିହାରରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ବାରବାଟି ଷ୍ଟାଡ଼ିୟମ ପ୍ରତିଷ୍ଠା କରାଗଲା । ବହୁ ସଂଖ୍ୟାରେ ନୂତନ କଲେଜ ଖୋଲିଲା । ଓଡ଼ିଶାରେ ବହୁମୁଖୀ ବିକାଶ ପାଇଁ ପ୍ରବଳ ଉତ୍ସାହ ଓ କର୍ମ ମୁଖରତା ସୃଷ୍ଟି ହୋଇଥିଲା ।

ସେ ଓଡ଼ିଶାର ୩ ଥର ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ଦୀର୍ଘ ୧୦ ବର୍ଷକାଳ ମୁଖ୍ୟମନ୍ତ୍ରୀ ରହିଛନ୍ତି । ତାଙ୍କର ଅଦ୍ୱିତୀୟ ବ୍ୟକ୍ତିତ୍ୱ ଆଗରେ ଆଉ କେହି ଓଡ଼ିଶାରେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇପାରୁ ନ ଥିଲେ ।

୧୯୬୧ ମସିହାରୁ ସେ ଶାସନ ଦାୟିତ୍ୱରୁ ବିଦାୟ ନେଲେ । ୧୯୬୭ ପରେ ସକ୍ରିୟ ଦଳୀୟ ରାଜନୀତିରୁ ମଧ୍ୟ ବିଦାୟ ନେଲେ । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀମାନେ ମୁଖ୍ୟମନ୍ତ୍ରୀ ପଦରୁ ଯିବାପରେ ରାଜନୀତିରୁ ମଧ୍ୟ ଏକ ପ୍ରକାର ଅବସର ନେଇଛନ୍ତି । ସେ ଯେଉଁ ମାନଙ୍କୁ ରାଜନୀତି କ୍ଷେତ୍ରରେ ସମସ୍ତ ପ୍ରକାର ସାହାଯ୍ୟ କରି ପ୍ରତିଷ୍ଠା କରାଇଥିଲେ । ସେମାନେ ଜଣକେ ପରେ ଜଣେ ମୁଖ୍ୟମନ୍ତ୍ରୀ ହେଉଛନ୍ତି । ଏହା ଅପେକ୍ଷା ଅଧିକ ଆତ୍ମ ଅସନ୍ତୋଷର କାରଣ ଥାଇ ନ ପାରେ । ରାଜନୀତିରେ ସେ ଯେଉଁମାନଙ୍କୁ ପ୍ରତିଷ୍ଠା କରାଇଥିଲେ ସେମାନଙ୍କ ମଧ୍ୟରୁ ଏହା ମଧ୍ୟରେ ବୀରେନ୍ ମିତ୍ର, ଭୈରବ ଚନ୍ଦ୍ର ମହାନ୍ତି ଓ ବନମାଳୀ ପଟ୍ଟନାୟକଙ୍କର ଅକାଳରେ ପରଲୋକ ହୋଇଯାଇଛି । କେତେକ ନୂତନ ଲୋକ ମଧ୍ୟ ଯୋଗ ଦେଉଛନ୍ତି । ମାତ୍ର ତାଙ୍କର ଶକ୍ତି ଥିବାବେଳେ ସେ ଯେତେ ଯୁବକଙ୍କୁ 'ବର' ଦେଇଛନ୍ତି ଏବଂ ଯେତେ ପକ୍ଷପାତ କରୁଛନ୍ତି ଓଡ଼ିଶାରେ ତାଙ୍କ ପୂର୍ବରୁ ଆଉ କେହି ତାହା କରିବାକୁ ସମର୍ଥ ହୋଇ ନାହାନ୍ତି । ସେହିପରି କେତେକ ଲୋକଙ୍କୁ 'ବର' ଦେବାରେ ଆଉ କେତେକ ଲୋକ ଅସନ୍ତୁଷ୍ଟ ମଧ୍ୟ ହୋଇଛନ୍ତି । ତାଙ୍କୁ ଗ୍ରାଉଡ଼ ଭୁଲିପାରିଛନ୍ତି । ଏହିପରି ଯିବାଆସିବା ଚାଲିଛି ।

ଡଃ ମହତାବ୍ ୧୯୬୭ ମସିହା ନିର୍ବାଚନରେ ଓଡ଼ିଶାରେ ନେତୃତ୍ୱ ନେଇଥିଲେ । ସେହି ନିର୍ବାଚନରେ ଓଡ଼ିଶାରେ ବିରୋଧୀଦଳ ଗଠନ କରିବାକୁ ମଧ୍ୟ ଅନ୍ୟ କୌଣସି ଦଳ ନିର୍ବାଚିତ ହୋଇପାରି ନ ଥିଲେ, ତେଣୁ ବିରୋଧୀ ଦଳ ନ ଥିବାରୁ ଶାସନ ସ୍ୱେଚ୍ଛାଚାରୀ ହୋଇଯିବ ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ପାଇଁ ଦୃଷ୍ଟି ରହିବ ନାହିଁ ବୋଲି ସେ ଆଶଙ୍କା ପ୍ରକାଶ କରୁଥିଲେ । ଦୀର୍ଘ ୨୦ ବର୍ଷ ହେଲା ସେ ଶାସନରୁ ଦୂରେଇ ଯାଇଥିଲେ ହେଁ ଅବହେଳିତ ଜନସାଧାରଣଙ୍କ ପ୍ରତି ନ୍ୟାୟ ପାଇଁ ଏବଂ ଗଣତାନ୍ତ୍ରିକ ବ୍ୟବସ୍ଥାର ସୁରକ୍ଷା ପାଇଁ ସେ ଅବିଚଳିତ ସଂଗ୍ରାମ ଚଳାଇଛନ୍ତି । କର୍ମଯୋଗ ହିଁ ତାଙ୍କର ବ୍ରତ । ପରିଣାମ ବିଷୟରେ ସେ ବିଚଳିତ ନୁହନ୍ତି । ଓଡ଼ିଶାର ପୁରପଲ୍ଲୀକୁ ସେ ଜାଣନ୍ତି । ଓଡ଼ିଶାର ସମସ୍ତ ଅଞ୍ଚଳର ଲୋକ ପ୍ରତ୍ୟହ ଆସି ତାଙ୍କୁ ଆପତ୍ତି ଅଭିଯୋଗ ଜଣାନ୍ତି । ସମସ୍ତଙ୍କୁ କିଛିଟା ସାହାଯ୍ୟ କରିବାକୁ ଚେଷ୍ଟା କରନ୍ତି ।

※

# ଆମରି ଲୋକ

**ଶାନ୍ତନୁ କୁମାର ଆଚାର୍ଯ୍ୟ**

୧୯୫୭ ଡ଼ିସେମ୍ବର ମାସର ଏକ ସକାଳ । ସେଦିନ ସକାଳୁ ସନ୍ଧ୍ୟା ଯାଏଁ ଅଖିଆ ଅପିଆ ମତେ ବସି ରହିବାକୁ ପଡ଼ିଥିଲା ଡଃ ମହତାବଙ୍କ ଏକାମ୍ର ନିବାସ ବାସଭବନର ପିଣ୍ଡାରେ । ଡଃ ମହତାବ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ରାଜ୍ୟର ପ୍ରତି ଅଞ୍ଚଳର ପ୍ରତି ଅର୍ଥାର୍ଥୀ ଆର୍ତ୍ତ ଜିଜ୍ଞାସୁ ବା ଜ୍ଞାନୀ ଲୋକଙ୍କର ଅଳିଝଲି ଶୁଣିବା ଲାଗି ତାଙ୍କ ନିବାସର ସିଂହଦ୍ୱାର ସର୍ବଦା ଠିଆମେଲା ବୋଲି ମତେ କୁହାଯାଇଥିଲା । କିନ୍ତୁ ସେଦିନ ସକାଳ ନଟାରୁ ସନ୍ଧ୍ୟା ପାଞ୍ଚ ପର୍ଯ୍ୟନ୍ତ ମୁଁ ସେଠାରେ ବସି ବସି ମୋ'ପରି ଅସଂଖ୍ୟ ଆର୍ତ୍ତିଙ୍କର ପରିଚୟ ପାଇବା ବ୍ୟତୀତ ଅନ୍ୟ କୌଣସି ଫାଇଦା ନମିଳିବାର ଦେଖି ଘୋର ଦୁଃଖରେ ଘରମୁହାଁ ଫେରୁଥିଲା ବେଳେ ବାଟରେ, ଲିଙ୍ଗରାଜଙ୍କ ସିଂହଦ୍ୱାର ନିକଟରେ ଜଣେ ଅଚିହ୍ନା ବ୍ୟକ୍ତିଙ୍କ ମୁହଁରୁ ପଦେ ଆଧା ଶବ୍ଦ ଶୁଣି ଆଶ୍ଚର୍ଯ୍ୟ ଓ ସନ୍ଧିତ୍ସୁତା ବଶତଃ ମୁଁ ଉକ୍ତ ବ୍ୟକ୍ତିଙ୍କ ମୁହଁକୁ ଅନାଇ ଶୁଣିବାକୁ ପାଇଲି ।

"ଆପଣ କଥାଟାକୁ ଠିକ୍ କରି ଉପସ୍ଥାପିତ କରି ପାରିଲେ ନାହିଁ ଯେ— ସେଥିପାଇଁ ସେ ଆପଣଙ୍କୁ ବୁଝିଲେ ନାହିଁ । ତାଙ୍କ ସହିତ ଦେଖା କଲାବେଳେ ଟିକିଏ ସାହସ କରି ନିଜ ମନକଥା ଢାଳି ଦେବା ଉଚିତ । ସାହସୀ ଯୁବକମାନଙ୍କୁ ସେ ପସନ୍ଦ କରନ୍ତି । ତା ଛଡ଼ା ଅତି ସଂକ୍ଷେପରେ ନିଜର ଗୁହାରି ଚଟାପଟ୍ ଥୋଇ ଜାଣିବା ଦରକାର । ଆପଣ ଏକେତ ଡରିଗଲେ, ତାଛଡ଼ା ଏପରି କହୁଥିଲେ ଯାହା ଶୁଣିବାକୁ ତାଙ୍କର ଧୈର୍ଯ୍ୟ ରହୁନଥିଲା । ମୁଁ ବେଶ୍ ମାର୍କ କରିଛି······"

ଭଦ୍ରଲୋକ ଜଣେ ଖଦଡ଼ ପିନ୍ଧିଥିଲେ । ତା'ଛଡ଼ା ମୁଁ ମଧ୍ୟ ତାଙ୍କୁ ଖୁବ୍ ମାର୍କ କରିଥିଲି—ଏକାମ୍ର ନିବାସରେ ମୋର ସାତ ଆଠଘଣ୍ଟା କଣ୍ଠା-

ତ୍ରୀତ ଅବସ୍ଥାରେ, ଅଧିଆ ପଡ଼ିବା ସମସ୍ତ ଅନ୍ତରାଳରେ, ଏ ଭଦ୍ରଲୋକଙ୍କର ସ୍ୱଚ୍ଛନ୍ଦ ଆତଯାତକୁ । ସେତେବେଳେ ସେ ଭଦ୍ରଲୋକ ଯେଉଁଭଳି ନିରଙ୍କୁଶ ଭାବେ ଡ଼ଃ ମହତାବଙ୍କ ଚେମ୍ବର ଭିତରକୁ ଘନଘନ ଯା'ଆସ କରୁଥିଲେ ସେଥିନ୍ତୁ ମୋ'ପରି ୨ /୧୮ ବର୍ଷର ଟୋକା ସେତେବେଳେ ତାଙ୍କ ବିଷୟରେ ଯେଉଁଭଳି ଅସୂୟାମୂଳକ ଚିନ୍ତା ପୋଷଣ କରିଥାନ୍ତା ମୋ ମନରେ ତାଠୁଁ ଭିନ୍ନ ଭାବନା ବା ଆସନ୍ତା କୁଆଡ଼ୁ । ୧୯୪୭ ଅର୍ଥାତ୍ ଭାରତ ସ୍ୱାଧୀନ ହେବାର ମାତ୍ର ୧୪ଟି ବର୍ଷ ଭିତରେ ସେ ଦିନ ମଧ୍ୟ ଦେଶର ଯୁବସମାଜ ମନରେ ମହାତ୍ମାଗାନ୍ଧୀଙ୍କ ଏହି ଖଦଡ଼ଧାରୀ ଦାୟାଦବର୍ଗ ବିଶେଷତଃ ମୋ ସମ୍ମୁଖରେ ଠିଆ ହୋଇଥିବା ଏହି ପ୍ରୌଢ଼ ଭଦ୍ରଲୋକଙ୍କ ବୟସର ଦାୟାଦବର୍ଗଙ୍କ ପ୍ରତି କାହିଁ କାହିଁ ବିରକ୍ତି କ୍ରୋଧ ଏବଂ ଅସୂୟା ସଞ୍ଚିତହୋଇ ସାରିଥିଲା । ତେଣୁ, ଭଦ୍ରଲୋକଙ୍କ ଉପଦେଶ ଶୁଣିଲାବେଳେ ତାଙ୍କ ପ୍ରତି ମନଭିତରେ ଯେଉଁ ହେୟଭାବ ସ୍ୱଭାବତଃ ଜନ୍ମି ସାରିଥିଲା ସେସବୁକୁ ବହୁ କଷ୍ଟରେ ଭିତରେ ଚାପିରଖିଲେ ଉପର ମନରେ ମୋ ତୁଣ୍ଡରୁ ବାହାରିଗଲା "ଆଜ୍ଞା, ଆପଣଙ୍କୁ ମୁଁ ପୂର୍ବେ କୋଉଠି ଦେଖିଲା ଭଳି ଲାଗୁଛି, ବୋଧହୁଏ ଝାରସୁଗୁଡ଼ା ଷ୍ଟେସନ୍‌ରେ କି କଅଣ । ଆପଣଙ୍କର ଏଠି କି କାମ ଥିଲା କି ଆଜ୍ଞା, ମୁଖ୍ୟମନ୍ତ୍ରୀଙ୍କ ପାଖରେ ?"

ଭଦ୍ରଲୋକ ହସିଲେ ମୋ ପ୍ରଶ୍ନରେ । ପକେଟରୁ ବିଡ଼ି ଲାଏ ବିଡ଼ି ବାହାର କରି ସେଥିରୁ ଖଣ୍ଡିଏ ନିର୍ବାଚନ କରିପରି ଆଙ୍ଗୁଠି ଟିପ ଛୁଇଁ ଛୁଇଁ ଖୋଜି ବାହାର କରିନେବା ଭିତରେ ତାଙ୍କର ହସଲି ଧୂମାଳୁ ଧିଗୁଣିତ କରି କହିଲେ ସେ—,

"ମୁଁ ଜଣେ କେନ୍ଦୂପତ୍ର ବ୍ୟବସାୟୀ । ଓଡ଼ିଶାର ରାଜନୀତିକୁ ବର୍ତ୍ତମାନ କେନ୍ଦୂପତ୍ର ହିଁ ଚଳାଉଛି— ଜାଣନ୍ତି ନାହିଁ ?"

ସେଦିନ ଡ଼ଃ ହରେକୃଷ୍ଣ ମହତାବଙ୍କୁ ଯେଉଁମାନେ ଅହୋରାତ୍ର ଘେରି ରହିଥାନ୍ତି ତାଙ୍କ ଭିତରେ ଏହିପରି ଅସଂଖ୍ୟ ଖଦଡ଼ଧାରୀ ବ୍ୟବସାୟୀ ହିଁ ରହିଥିଲେ ଓ ଆଜି ମଧ୍ୟ ରହିଛନ୍ତି, ସନ୍ଦେହ ନାହିଁ ଏଥିରେ । ଡ଼ଃ

ମହତାବଙ୍କ ରାଜନୈତିକ ଜୀବନକୁ ଏହି ବ୍ୟବସାୟୀ ଗୋଷ୍ଠୀ ବା ପରବର୍ତ୍ତୀ କାଳରେ ଟାଉଟର ନାମଧାରୀ ଅନ୍ୟେକ ରାଜନୈତିକ ବ୍ୟବସାୟୀ ଗୋଷ୍ଠୀ ଯେ ସଦାସର୍ବଦା ସଂକ୍ରମିତ କରିଆସିଛନ୍ତି ଓ ଶେଷ ପର୍ଯ୍ୟନ୍ତ କରୁଥିବେ ଏଥିରେ ବ୍ୟସ୍ତ ହେବାର ବା ଦୁଃଖିତ ହେବାର ଅବକାଶ ଆଉ ନାହିଁ ବର୍ତ୍ତମାନ । ବର୍ତ୍ତମାନ ମୋର ସେହି ପୁରୁଣା ଦୁର୍ବିଷହ ଦିନଗୁଡ଼ିକୁ ଚିନ୍ତାକଲାବେଳେ, ୧୯୫୭ରେ ଲିଙ୍ଗରାଜ ମନ୍ଦିର ସମ୍ମୁଖରେ ମତେ ଉପଦେଶ ଛଳରେ ଡଃ ମହତାବଙ୍କ ସହିତ କପଟ ଇଣ୍ଟରଭିଉ ଫେସ୍ କରିବାକୁ ହୁଏ, ଏହି ସଦୁପଦେଶ ଦେଇଥିବା ଭଦ୍ର, ସହାନୁଭୂତିଶୀଳ, କେନ୍ଦୁପତ୍ର ବ୍ୟବସାୟୀଙ୍କ ପାଖରେ ମୁଁ କେତେକାଂଶରେ ଯେ ଋଣୀ ମତେ ଏହିପରି ମନେହୁଏ । କାରଣ ସେ ଘଟଣାର ପ୍ରାୟ ଦଶବର୍ଷ ପରେ, ୧୯୬୭ରେ ଥରେ ଓଡ଼ିଶାର ସମ୍ବାଦପତ୍ରମାନଙ୍କରେ ଡଃ ମହତାବଙ୍କ ସହିତ ମୋର ଏକ ଫଟୋଗ୍ରାଫ୍ ପ୍ରକାଶ ପାଇବା ଅବକାଶରେ ଉକ୍ତ ଅଜ୍ଞାତ ଭଦ୍ରବ୍ୟକ୍ତିଙ୍କ ଏକ ମନ୍ତବ୍ୟ ମୋର ଜଣେ ନିକଟତମ ଗୁରୁଜନଙ୍କ ଜରିଆରେ ମୋ କାନରେ ପଡ଼ିଥିଲା ଏହିପରି —

"ଆଶ୍ଚର୍ଯ୍ୟ ! ଏ ଟୋକାଟାକୁ ଦଶବର୍ଷ ତଳେ ମୁଁ ଦେଖିଥିଲି ହୋ ! ସେଦିନ ଦିନସାରା ଅଖିଆ ଅପିଆ ଏ ଟୋକା ବୁଲୁଥିଲା ସେଠି । ସେ ଟୋକାଟା ଆଜି ପୁଣି ଏଠି, ଏଭଳି ଅବସ୍ଥାରେ—ଏ ଫଟୋଗ୍ରାଫ୍‌ରେ ? ବିଶ୍ୱାସ କରି ହେଉନି । କଥା କ'ଣ ?"

ଅପରିଚିତ ଭଦ୍ରବ୍ୟକ୍ତିଙ୍କ ସ୍ମୃତିଶକ୍ତି ନିଶ୍ଚୟ ଖୁବ୍ ପ୍ରଖର । ୧୯୫୭ର ସେଇ ଅସହାୟ ଯୁବକଟିକୁ ଠିକ୍ ମନେରଖିଥିଲେ ସେ । ସେଦିନ ସେ ଯୁବକ ହାତରେ ଖଣ୍ଡିଏ ଟାଇପ୍‌କରା ମେମୋରାଣ୍ଡମ୍ ଧରି ଯେଉଁଭଳି ମୁହଁ ଫେଣଫେଣ ଆଉ ରାଗ ଜରଜର ଅବସ୍ଥାରେ ଏକାମ୍ର କାନନ ପିଣ୍ଡାରେ ଏକାକି ସକାଳ ନ'ଟାରୁ ଦିନ ପାଞ୍ଚ ପର୍ଯ୍ୟନ୍ତ ବସିରହି ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ଅପେକ୍ଷା କରିବା ଛଳରେ ରାଜ୍ୟର ରାଜନୀତି କାରଖାନାର ବାହ୍ୟରୂପକୁ ଏକ ଅବୋଧ ଶିଶୁପରି ଅନାଇ ବସିଥିଲା ସେଥିରେ ଗଲା ଆଇଲା ଯେ କେହି ଅନାଇଥାନ୍ତେ ନିଶ୍ଚୟ ଟୋକାଟାର ବସିରହିବାର ଢଙ୍ଗଢାଙ୍ଗକୁ ଓ

ବିଶେଷକରି ତାର ମୁଖ ଭଙ୍ଗୀକୁ । ମଝିରେ ମଝିରେ ସେ ଟୋକାଟି ମଧ୍ୟ କିଛି କିଛି ମୁଖବାଚ ପୂର୍ବକ ନିଜର ମନକଥା ବ୍ୟକ୍ତ କରିବାକୁ ଇଚ୍ଛାକରି ଯାହାସବୁ ଉଚ୍ଚାରଣ କରିପକାଉଥିଲା ସେଥିରେ ଅପରିଚିତ ଲୋକେ ମଧ୍ୟ ଆଶ୍ଚର୍ଯ୍ୟ ଓ ଶଙ୍କିତ ନ ହେବାର ସେ ନଥିଲା କିଛି ଏମନ୍ତ ନୁହେଁ ।

"ଦେଖନ୍ତୁ, ଦେଶ ସ୍ୱାଧୀନ ହେବାପରେ ପ୍ରାପ୍ତ ପ୍ରଥମ ପୁରୁଷ (ଫାଷ୍ଟ ଜେନରେସନ୍)ର ଯୁବକ ଆମେମାନେ । ଆମେ ଏ ରାଜ୍ୟର ବିଶ୍ୱବିଦ୍ୟାଳୟରୁ ଏମ୍. ଏସ୍‌ସି ପାଶ୍ କଲୁ । ବିଜ୍ଞାନ ଓ ବୈଷୟିକ ବିଦ୍ୟାରେ କୃତିତ୍ୱ ଅର୍ଜନ କରିଥିବା ପିଲାଙ୍କୁ ଏ ରାଜ୍ୟରେ ନିଯୁକ୍ତି ପାଇଁ ସୁଯୋଗ ନମିଳିବାରୁ ଆମେ ବାଧ୍ୟ ହୋଇ ଅନ୍ୟରାଜ୍ୟକୁ ଗଲୁ । ସେଠି ଅସୁବିଧାରେ ପଡ଼ି ଫେରିଲୁ ବାଧ୍ୟ ହୋଇ ନିଜ ମାତୃଭୂମିକୁ । କୌଣସି ପ୍ରକାରେ କଳ କାରଖାନାରେ ପଶିଯିବୁ ଭାବି, ବିଶ୍ୱବିଦ୍ୟାଳୟ ପ୍ରତି ଆକୃଷ୍ଟ ନହୋଇ ପଶିଗଲୁ ଗୋଟାଏ କାରଖାନାରେ । ଯଥାବିଧି କାରଖାନା ମାଲିକ ଆମକୁ ପରୀକ୍ଷା କଲେ, ମନୋନୀତ କଲେ ଏବଂ ଇଣ୍ଟରଭିଉରେ ପ୍ରଥମସ୍ଥାନ ଅଧିକାର କରିଛୁ ବୋଲି କହିଲେ । ଅଥଚ ଆପଏଣ୍ଟମେଣ୍ଟ ଦିଆଗଲା ଅନ୍ୟ ଲୋକଙ୍କୁ—ଯାହାଙ୍କ ନାଁ ପଛରେ ସାଙ୍ଗିଆ ଲାଗିଛି ଘୋଷ ଘୋଷାଲ କି ହଜାରିକା ମଜୁମଦାର, ଯେ କନ୍ୟା ନୁହେଁ ଏ ମାଟିରେ ଯାହା ମୁହଁରେ ଲାଗିଣ ପଶେନାହିଁ ଭୁଲରେ !"

ସେତେବେଳେ ମୋର ଏ ଗର୍ଜନ ଶୁଣି କିଏ କ'ଣ ମନେ କରିଥିବ କେଜାଣି । କିନ୍ତୁ ଘଟଣାଟି ବାସ୍ତବିକ ଥିଲା ମୋହପରି । ୧୯୫୬ରେ ଆସାମର ଶିବସାଗର ଜିଲ୍ଲାରେ ନବପ୍ରତିଷ୍ଠିତ ଏକ କଲେଜରେ ବିଜ୍ଞାନର ଅଧ୍ୟାପକ ଚାକିରି ପାଇ ସେଠି କାର୍ଯ୍ୟରେ ଯୋଗ ଦେବାର ମାତ୍ର କେତେ ମାସ ପରେ ନାଗାଉପଦ୍ରବର ପ୍ରକୋପ ବଢିବା ଯୋଗୁ ନିଜ ରାଜ୍ୟକୁ ଫେରି ଆସି ମୁଁ ସେତେବେଳେ ବ୍ରଜରାଜନଗରରେ କାଗଜ କଳରେ କେମିଷ୍ଟ ପୋଷ୍ଟଟିଏ ପାଇପାରିଥିଲି କୌଣସି ପ୍ରକାରେ । କିନ୍ତୁ ସେଠାରେ ମାସ କେତୋଟି ଚାକିରି କଲାପରେ ଓଡ଼ିଆ ଶ୍ରମିକ, ବିଶେଷତଃ ଅଫିସର ଶ୍ରେଣୀର କର୍ମଚାରୀଙ୍କ ଚାକିରି ଜୀବନର ଅନିଶ୍ଚୟତା ନିଜ ଆଖିରେ ଦେଖିଦେଖି

ଶେଷରେ ଟାଟା କମ୍ପାନୀ ଭଳି କୌଣସି ଏକ ନାମଜାଦା କମ୍ପାନୀରେ ପଶି-ଯିବା ଲାଗି ସ୍ଥିର କରନେଇଥିଲି ମନେମନେ । ସୌଭାଗ୍ୟ ବଶତଃ ସେତେ-ବେଳେ କେନ୍ଦୁଝରର ଯୋଡ଼ା ଫେରୋମାଙ୍ଗାନିଜ କାରଖାନା ସହିତ ସମ୍ପର୍କିତ ଏକ କାରଖାନା ନେଇ କେମିଷ୍ଟ ପୋଷ୍ଟଟିଏ ଟାଟା କମ୍ପାନୀ ପକ୍ଷରୁ ବିଜ୍ଞାପିତ ହୋଇଥିବା ଜାଣି ମୁଁ ଆବେଦନ ପେଶ୍ କରିଥିଲି ଯଥାସମୟରେ । ଏବଂ ଯଥା ସମୟରେ ଏକ ଇଣ୍ଟରଭ୍ୟୁ କରା ଯାଇଥିଲା ଆମର ଟାଟାରେ । ଏହାପରେ ଇଣ୍ଟରଭ୍ୟୁର ଫଳାଫଳ ଜଣା ପଡ଼ିଥିଲା ମଧ୍ୟ ଆମକୁ । ସେ ତାଲିକାରେ ମୋର ନାଁ ପ୍ରଥମରେ ଅଛି ଜାଣିବାକୁ ପାଇ ଫେରିଆସିଥିଲି ମୁଁ ବ୍ରଜରାଜ ନଗର । ସେଠାରେ ଟାଟା କମ୍ପାନୀର ନିଯୁକ୍ତି ପତ୍ରକୁ ଅପେକ୍ଷା ନକରି ଶୀଘ୍ର ବିରଳା କମ୍ପାନୀରୁ ଛାଡ଼ ପାଇବା ଉଦ୍ଦେଶ୍ୟରେ ମୁଁ ଅତ୍ୟନ୍ତ ବାଲ୍ୟୋଚିତ ଢଙ୍ଗରେ ଇସ୍ତଫା ପତ୍ରଟିଏ ମଧ୍ୟ ଦେଇଦେଲି କମ୍ପାନୀ ହାତକୁ । ଏହାପରେ ହଠାତ୍ ଟାଟାର ଗୁପ୍ତ ଖବରଟିଏ ମିଳିଲା ମତେ—"ସର୍ବନାଶ ! ତମ ତଳ ଲୋକ ମାରିନେଇଗଲା ।" ଆଜି, ତଳ ଲୋକଟି କିଏ ଜାଣିବାକୁ ଡେରି ଲାଗିଲା ନାହିଁ ମଧ୍ୟ । ସେତେବେଳକୁ ବିରଳା କମ୍ପାନୀ ଗ୍ରହଣ କରିନେଲେଣି ମୋ ଇସ୍ତଫା ।

ଏଇ ଦ୍ୱନ୍ଦ୍ୱ ଭିତରେ କେହି ଜଣେ ମତେ ଉପଦେଶ ଦେଇଥିଲେ—ଧାଁଅ ଭୁବନେଶ୍ୱର । ସେଠି ଭେଟ ଅମୁକ ଅମୁକ ଲୋକଙ୍କୁ । ଟାଟା କମ୍ପାନୀ ଓଡ଼ିଶାରୁ ଉଠେଇଛି ଯାବତ କଞ୍ଚା ମାଲ । ଓଡ଼ିଶାରେ ପୁଣି ବସେଇବ କାରଖାନା । ଏଥିରେ ଓଡ଼ିଆଙ୍କୁ ନନେଇ ଯିବ କୁଆଡେ କମ୍ପାନୀ ବାପୁଡ଼ା । ଯାଅ, ଶୀଘ୍ର ଭେଟ ଡଃ ମହତାବଙ୍କୁ— ।

କିନ୍ତୁ ଡଃ ମହତାବଙ୍କ ସହିତ ସେଥିର ଭେଟ ମୋର ଅପ୍ରମାଣିତ ମାତ୍ର । ସେ ଭେଟରେ ମୋର ପରଫରମାନ୍ସ ଯାହା ହେଲା ସେକଥା ଠିକେ ଠିକେ ବତେଇଥିଲେ ମୋର ଅଜ୍ଞାତ ପରିପ୍ରେକ୍ଷକ ସେଇ ବ୍ୟବ-ସାୟୀ ବନ୍ଧୁ ଯେ ମତେ ଚେତେଇ ଦେଇଥିଲେ କପରି ଡଃ ମହତାବଙ୍କ

ପର ବ୍ୟକ୍ତିଙ୍କ ନଜରକୁ ଆସିବାକୁ ହେଲେ ସାହସ ଓ ତା ସହିତ ସଂକ୍ଷିପ୍ତ ବକ୍ତବ୍ୟର କଳାରେ ପ୍ରଥମେ ସିଦ୍ଧହସ୍ତ ହେବା ଦରକାର ।'

'୧୯୫୭ରୁ ୧୯୬୭ ଏହି ଦଶନ୍ଧି ଭିତରେ ଏହି ଇଣ୍ଟରଭିଉ କଳାଟିକୁ ଆୟତ୍ତ କରିବାକୁ ଭାରି କଠିଣ ପରିଶ୍ରମ ଓ ବିପଜ୍ଜନକ ପଦକ୍ଷେପ ନେବାକୁ ପଡ଼ିନାହିଁ ମତେ । ମନେ ଅଛି, ୧୯୬୨ରେ ଭାରତ ଉପରେ ଚୀନ୍ ଆକ୍ରମଣ ସମୟର କଥା । ସେ ଦିନ ପ୍ରଜାତନ୍ତ୍ର ଅଫିସ ହତାରେ ଡଃ ମହତାବଙ୍କ କୋଠିରେ ଏକ ଆଲୋଚନା ଚକ୍ର ଚାଲିଥାଏ ଦେଶର ତତ୍କାଳୀନ ପରିସ୍ଥିତିକୁ ନେଇ । ସେତେବେଳେ ଝଙ୍କାର ସମ୍ପାଦକ ଶ୍ରୀ ଚମ୍ପତି ରାୟ ଅନୁରୋଧ କ୍ରମେ, ଝଙ୍କାରର ଲେଖକଭାବେ ମୁଁ ଉପସ୍ଥିତ ଥାଏ ସେ ଆଲୋଚନା ଚକ୍ରରେ । ଇତିମଧ୍ୟରେ ସରକାରୀ ଚାକିରୀରେ ମାତ୍ର ୩/୪ ବର୍ଷ ହେବ ମୋ ପ୍ରବେଶ । ସରକାରୀ ଚାକିରିଆ ଭାବେ ରାଜନୀତିକ ବ୍ୟାପାରରେ ମୁଣ୍ଡ ନପୂରେଇବା ପାଇଁ ସେତେବେଳେ ଯେଉଁ କଡ଼ାକଡ଼ି କଟକଣା, ବିଶେଷତଃ କମ୍ୟୁନିଷ୍ଟ ମତାମତ ଠାରୁ ଶହେହାତ ଦୂରରେ ରହି କଥା କହିବା ପାଇଁ ଚାକିରିଆଙ୍କର ଯେଉଁ ସ୍ୱେଚ୍ଛାପ୍ରଣୋଦିତ ଆତ୍ମସଂଯମ ତାହା ସେସମୟର ଚାକିରିଆଙ୍କୁ କେହି ବତାଇବାର ନଥିଲା ନିଶ୍ଚୟ ।

ଏଇ ପରିପ୍ରେକ୍ଷୀରେ, ହଠାତ୍ ଆଲୋଚନା ଚକ୍ର ଭିତରେ, ଚୀନର ଭାରତ ଆକ୍ରମଣ ପ୍ରସଙ୍ଗ କ୍ରମେ କେହି ଶତ୍ରୁପକ୍ଷର ସମର୍ଥନ କଲାଭଳି କୌଣସି ଯୁକ୍ତି କରିବ, ତାହା ପୁଣି ଡଃ ମହତାବଙ୍କ ସମକ୍ଷରେ— ଏହା ଅଚିନ୍ତନୀୟ । କିନ୍ତୁ, ଆଜନ୍ମ ଯୁକ୍ତିଖୋର, ଅମାନିଆ ଓ ମୁକ୍ତଚିନ୍ତା କରିବାକୁ ମଣିଷର ଏକ ଜନ୍ମଗତ ଅଧିକାର ବୋଲି ଶିକ୍ଷା କରିଥିବା ସେଇ ତରୁଣ ଲେଖକଟି ହଠାତ୍ ଡଃ ମହତାବଙ୍କୁ ଆହ୍ୱାନ କଲାପରି ଯେତେବେଳେ ସ୍ୱର ଉଠେଇ କହିଲା, "ପୃଥିବୀରେ କୌଣସି ଯୁଦ୍ଧ କେବେ ଉଦ୍ଦେଶ୍ୟ ବିହୀନ ଭାବେ ହୁଏ ନାହିଁ, ସାର୍ ! ଚୀନ୍ ଆମର ଶତ୍ରୁ ହୋଇପାରେ ଆଜି ହୁଏତ । କିନ୍ତୁ ଗଲା କାଳର ହିନ୍ଦି ଚିନି ଭାଇଭାଇ ଡାକ ପଡ଼ିଥିଲା । ହଠାତ୍ କଅଣ ଘଟିଲା ଯେ ଆମର ସେପଟର ଭାଇ ଆମ ଘର 'କାନ୍ଥକୁ

ଢିଅ ପକେଇ ଗର୍ଜିଦେଲା ଆମର ବିଶ୍ୱାସକୁ ? କଅଣ ପାଇଁ ଏ ଦେଶର ଗଣତନ୍ତ୍ରରେ ସାମ୍ୟବାଦକୁ ମୂଳମନ୍ତ୍ର ଆମେ କରିଥିଲୁ ବେଳେ କମ୍ୟୁନିଷ୍ଟଙ୍କ ସହିତ ଆମର ଅପଡ଼ି ହୋଇଗଲା ରାତାରାତି ? କମ୍ୟୁନିଷ୍ଟ ଦେଶ ଆମର ବନ୍ଧୁଦେଶ ବୋଲି ଆମେ କହୁଥିଲୁ ବେଳେ ନେହେରୁ ଚୁଏନ୍‌ଲାଇଙ୍କ ଭିତରେ କି କାରଣରୁ ଘଟିଗଲା ଏ ମନାନ୍ତର ? ଏ ସମସ୍ତ ବିଷୟ ଭଲକରି ନ ଜାଣିବା ପର୍ଯ୍ୟନ୍ତ ନବୁଝିବା ପର୍ଯ୍ୟନ୍ତ କେଉଁ ପକ୍ଷ ପ୍ରକୃତରେ ଦୋଷୀ, କିଏ ପ୍ରଥମେ ଆକ୍ରମଣ କଲା କାହାକୁ ସାଧାରଣ ଲୋକ ବୁଝିବେ ନାହିଁ ଏ ଯୁଦ୍ଧର ପ୍ରକୃତ ଉଦ୍ଦେଶ୍ୟ, ପ୍ରକୃତ ଲକ୍ଷ୍ୟ । ତେଣୁ ଚିନ୍ତାଶୀଳ ଲୋକେ ଏ ଯୁଦ୍ଧରେ କୌଣସି ପକ୍ଷରେ ସାମିଲ୍ ହେବା ପୂର୍ବରୁ ବହୁ ଡେରି ହେବା ସ୍ୱାଭାବିକ ।"

ସେତେବେଳକୁ ଡଃ ମହତାବଙ୍କ ମୁହଁର ରଙ୍ଗ ପରିବର୍ତ୍ତନ ଲକ୍ଷ୍ୟ କରିସାରିଥିଲି ମୁଁ । ସେ ମୁହଁ ଏବେକା ମୁହଁ ନୁହେଁ । ପ୍ରକୃତ ମହତାବ— ଯାହାଙ୍କୁ ସେତେବେଳେ ଉତ୍କଳ କେଶରୀ ବୋଲି କହୁଥିଲେ ତାଙ୍କ ସମସାମୟିକ ଲୋକେ ସେଇ କେଶରୀ ବା ସିଂହର ମୁହଁ ଉପରେ ପଢ଼ିସାରିଥିଲି ମୁଁ— ଜାଣି ନେଇ ସାରିଥିଲି ମୁଁ । ସିଂହ ସହିତ ମୁକାବିଲା ବେଳେ ସିଂହ-ଛୁଆ ପରି କପର ସାହସ ସଂଗ୍ରହ କରିବା ଦରକାର, ଆଉ, ସାହସ ନକଲେ ମହତାବଙ୍କ ଦୃଷ୍ଟି ଆକର୍ଷଣ ଅସମ୍ଭବ, ଏ ଲେସନ୍ ତ ମୁଁ ପାଇ-ସାରିଥିଲି ଅନ୍ତତଃ ପାଞ୍ଚବର୍ଷ ଆଗରୁ ।

ସେଦିନ ଆଲୋଚନା ଶେଷ ଉତ୍ତାରେ ବନ୍ଧୁ ଚମ୍ପତିରାୟ ମତେ ଗୁପ୍ତରେ ଯାହା କହିଥିଲେ ତାହା ମନେଅଛି ଅକ୍ଷରେ ଅକ୍ଷରେ ଏଯାବତ ।

"ତୁମ ବିଷୟରେ ମହତାବଜୀ ପଚାରୁଥିଲେ ମତେ । ପଚାରିଲେ ସେ ଠୋକାଠା କିଏ—କେଉଁ ପକ୍ଷର ? ମୁଁ କିନ୍ତୁ କହିଦେଇଛି, ତମେ ଆମ ପତ୍ରିକାରେ ଧାରାବାହିକ ଲେଖ—ଆମର ଲୋକ !"

ଆମର ଲୋକ— ଏ ପଦ ଯୋଡ଼ିକ ସେଦିନ ରକ୍ଷା କରିଥିଲା ମତେ ନିଶ୍ଚିତ । ଏ ପଦ ଦୁଇଟି କେବଳ ମତେ କାହିଁକି, ଅନେକ ଲୋକଙ୍କୁ

ରକ୍ଷା କରିବ ନିଶ୍ଚୟ । ଡଃ ମହତାବଙ୍କର ଏତିକ ଦୁର୍ବଳତାକୁ ଆଶ୍ରୟ କରି ତାଙ୍କର ବହୁ ମିତ୍ର ଓ ବହୁ ଶତ୍ରୁ ସିଂହ ମୁଖରୁ ବାରମ୍ବାର ରକ୍ଷା ପାଇଛନ୍ତି—ଏହା ସର୍ବଜନ ବିଦିତ ।

କିନ୍ତୁ, କି ଅଦ୍ଭୁତ ଏ ପଦ ଯୋଡ଼ିକ । ଆମର ଲୋକ;— ମୁଁ ମହତାବଙ୍କ ନିଜ ଲୋକ ଭାବେ ପରିଗଣିତ, କାରଣ ମୁଁ ତାଙ୍କ ପତ୍ରିକାରେ ଲେଖେ, ତାଙ୍କ ଦୃଷ୍ଟିରେ ମୁଁ ଜଣେ ସାହିତ୍ୟିକ ଏବଂ ସେହି କାରଣରୁ ତାଙ୍କ ସମ୍ମୁଖରେ ମୁକ୍ତ ଚିନ୍ତା କରିବାର ସ୍ୱାଧୀନତା ମୋର ଅଛି ଏବଂ ସେ ମୋପରି ଜଣେ ତରୁଣ ସାହିତ୍ୟିକକୁ ମଧ୍ୟ ନିଜର ମତାମତ ଲାଗି ସହ୍ୟ କରି ନେବାକୁ ପ୍ରଶ୍ରୟ ଦେବାକୁ ପ୍ରସ୍ତୁତ— ଏଇତିକ ପ୍ରତିଶ୍ରୁତିହିଁ ସେଦିନ ମୋ ପାଇଁ ଥିଲା ଯଥେଷ୍ଟ । ସତକୁସତ ସେଇ ଦିନଠାରୁ ହିଁ ମୁଁ ହୋଇଗଲି ତାଙ୍କର ଲୋକ, ତାଙ୍କର ପକ୍ଷର ଜଣେ ଲୋକ, ଆଉ ମୁହୂର୍ତ୍ତକ ମଧ୍ୟରେ ମୁଁ ବାଛି ନେଲି ନିଜର ମନଲାଖି ଜଣେ ନେତା ଯାହାକୁ ମାନି-ନେବାକୁ କୌଣସି ଆପତ୍ତି ନଥିଲା ମୋର ।

୧୯୬୨ ବିଷୁବ ମିଳନରେ ଏଇ ଆମର ଲୋକଟିହିଁ ମତେ ଦିଆଇ-ଥିଲେ ଅପୂର୍ବ ସ୍ୱୀକୃତି ଅପୂର୍ବ ସମ୍ମାନ । ସେଥର ବିଷୁବ ମିଳନର ପ୍ରଥମ ସନ୍ଧ୍ୟାର ସାହିତ୍ୟ ସଭାର ସଭାପତିତ୍ୱ କରିବା ପୂର୍ବରୁ ଡଃ ମହତାବଙ୍କ ସହିତ ମୋର ଫଟୋଗ୍ରାଫ୍ ସମ୍ବାଦ ପତ୍ରରେ ଦେଖି ମୋର ବନ୍ଧୁମାନେ କେବଳ ବିସ୍ମିତ ହୋଇନଥିଲେ । ସବୁଠାରୁ ଅଧିକ ବିସ୍ମିତ ହୋଇଥିଲି ମୁଁ ନିଜେ । କାରଣ ମତେ ସେତେବେଳେ ବୟସ ମାତ୍ର ଚଉତିରିଶ ଏବଂ ମୁଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ପର୍ଯ୍ୟନ୍ତ ଅପାଂକ୍ତେୟ । କାରଣ ମୋର ପୃଷ୍ଠଭୂମିରେ ଇଂରେଜୀ ବା ଓଡ଼ିଆ ସାହିତ୍ୟରେ ଏମ୍. ଏ. ପି. ଏଚ୍. ଡ଼ି. ଡ଼ିଗ୍ରୀ ପରିବର୍ତ୍ତେ ଥିଲା ରସାୟନ ବିଦ୍ୟାରେ ଏମ୍. ଏସ୍‌ସି ଡ଼ିଗ୍ରୀଟିଏ ମାତ୍ର, ଯେଉଁ କାରଣରୁ ବିରଜା ବା ଟାଟା କମ୍ପାନୀରେ ଚାକିରୀଟିଏ ହରାଇ ଦଶ-ବର୍ଷତଳେ ମୁଁ ହୋଇଥିଲି ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କର ଶରଣାଗତ ।

ଏହାପରେ ଅନେକ ବଡ଼ନେତା ଓ ମୁଖ୍ୟମନ୍ତ୍ରୀ ଦେଖିଲି ଏ ଦେଶ । କିନ୍ତୁ, ଜଣ ଅଧିକ ଗୁଡ଼ିଏ ଦେଲେ କାହାର ସମ୍ମୁଖରେ ସାହିତ୍ୟିକ ସୁଲଭ ମୁକ୍ତଚିନ୍ତା ପ୍ରଦର୍ଶନ କରି, ତାଙ୍କର ରାଜନୈତିକ ବିଶ୍ୱାସକୁ ପ୍ରଶ୍ନକରି ଶେଷରେ 'ଆମ ଲୋକ' ଉପାଧି ପାଇବାର ସାହସ କରିପାରିନାହିଁ ମୁଁ ଏଯାକେ । ଏ ସାହାସ କେବଳ ମୁଁ ନୁହେଁ, ମୋ ପରି ସେତେବେଳର ଅନେକ ଯୁବକ ସାହିତ୍ୟିକ ବା ରାଜନୈତିକ ଏପରି ସତ୍ସାହସ ପ୍ରଦର୍ଶନ କରି 'ଆମ ଲୋକ' ଉପାଧି ପାଇଥିବା ସମ୍ମାନ ବହୁଳଭାବେ ପାଇ ପାରିଛି ଆଧୁନିକ ଓଡ଼ିଶାର ଯୁବସମାଜ । ଏହି କାରଣରୁ ଡଃ ମହତାବ ଏ ଯାବତ୍ ମଧ୍ୟ ତରୁଣ ଗୋଷ୍ଠୀର ଏତେ ପ୍ରିୟ । ଏହି କାରଣରୁ ଅନେକ କୁତ୍ସା ମଧ୍ୟ ଶୁଣିବାକୁ ପଡ଼େ ତାଙ୍କୁ ଏ ବୟସରେ ଆଜି ପର୍ଯ୍ୟନ୍ତ । କିନ୍ତୁ କେଉଁ କାରଣରୁ ଯୁବସମାଜ ଆକୃଷ୍ଟ ହୁଏ ଏକ ଦେଶର ବା ରାଜ୍ୟର ପୁରୁଣା ରାଜନୈତିକଙ୍କ ପ୍ରତି, କେଉଁ କାରଣରୁ ନେତାର ବୟସ ସହୁଁ ସହୁଁ ବଢୁଥାଏ ତହୁଁ ତହୁଁ ନାତି ଅଣନାତି ସ୍ଥାନୀୟ ଟୋକାମାନେ ଗୃହାନ୍ତ ଆମର ଏଇ ଲୋକଟି ହେଉ ଆମର ନେତା, ଦେଶର କର୍ଣ୍ଣଧାର, ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ଯେ କୌଣସି ସରକାରର ବିବେକଧାରୀ··· ଏ ମର୍ମ ଆମର ସାଂପ୍ରତିକ ରାଜନୈତିକ ନେତୃବୃନ୍ଦ ଶିଖିପାରିଲେ ନାହିଁ ଏଯାବତ୍ ।

ଡଃ ମହତାବଙ୍କ ପ୍ରତି ମୋର ଅନ୍ୟ ଏକ ଆକର୍ଷଣ— ତାଙ୍କ ଚେହେରା ସହିତ ମୋ ବାପାଙ୍କର ଚେହେରାଗତ କେତେକ ସାମଞ୍ଜସ୍ୟ । ଅବିକଳ ସେହିପରି ନାକ, ଓ ନାକ ଏବଂ ଉପର ଓଠ ମଧ୍ୟରେ ଯେଉଁ ବିସ୍ତୀର୍ଣ୍ଣ ଉପତ୍ୟକା— ଯହିଁରେ ସିଂହର ସିଂହତ୍ୱ ଅନେକ ମାତ୍ରାରେ ହୁଏ ପ୍ରକାଶିତ—ଏ ସାମଞ୍ଜସ୍ୟ ମତେ ମନେ ପକେଇ ଦିଏ । ମୋ ବାପାଙ୍କ ପାଖରେ ଡଃ ମହତାବଙ୍କୁ ଓ ଡଃ ମହତାବଙ୍କ ଆଗରେ ମୋ ବାପାଙ୍କୁ । ବୋଧହୁଏ ସେହି କାରଣରୁ ମୋର ଏତେ ସାହାସ ତାଙ୍କ ସମ୍ମୁଖରେ ଠିଆ ହେଲାବେଳେ ନିଜକୁ ମନେକରିନେବାକୁ ଏ ରାଜ୍ୟର, ଏ ସୁପ୍ରାଚୀନ ଜଗନ୍ନାଥ ସଂସ୍କୃତିର, ଏ ମହତ୍ତ୍ୱପୂର୍ଣ୍ଣ ଐତିହ୍ୟ ସମ୍ପନ୍ନ ଓଡ଼ିଆ ଭାଷାର ଜଣେ ଦାୟାଦ ଭଳି ନିଜକୁ ମନେ କରିନେବାକୁ ଓ ସେହି ଗୁପ୍ତାଚରର ଅବଲମ୍ବନରେ ଦମ୍ଭରେ ଚିନ୍ତା କରୁକରୁ ମୁକ୍ତ କଣ୍ଠରେ କଥା କହିବାକୁ ।

ଡଃ ମହତାବବାବୁ କେବଳ 'ଉତ୍କଳ କେଶରୀ' ଉପାଧି ଦେଇ ଯେଉଁମାନେ ଏ ରାଜ୍ୟର କୋଟିକୋଟି ସିଂହ ଶିଶୁଙ୍କୁ ମେଣ୍ଢା ଛୁଆ ଭଳି ହେୟ ଜ୍ଞାନ କରନ୍ତି ସେମାନଙ୍କୁ ମୁଁ କହିବି— ମହତାବ କେବଳ ଉତ୍କଳ କେଶରୀ ନୁହନ୍ତି, ସେ ଆଧୁନିକ ଓଡ଼ିଶାର ବାପ । ୧୯୩୬ ପରେ ଉତ୍କଳ-ମଣିଙ୍କୁ ଯେଉଁ ଓଡ଼ିଆମାନେ ନବଉତ୍କଳର ଜନକ ମନେ କରୁଥିଲେ, ସେହି ଓଡିଆ ମାନେ ୧୯୪୭ ପରବର୍ତ୍ତୀ ଉତ୍କଳକୁ ନୂଆ ଓଡିଶା ରୂପେ ଚହ୍ନିବାର କାରଣ, ଏ ନୂଆ ଓଡ଼ିଶାର ନିର୍ମାତା ଉତ୍କଳମଣି ଗୋପବନ୍ଧୁ ନୁହନ୍ତି । ତାଙ୍କର ନାଁ ହରେକୃଷ୍ଣ ମହତାବ— ଡଃ ହରେକୃଷ୍ଣ ମହତାବ ! ଏ ଓଡ଼ିଶାର ଆଜି ପ୍ରାୟ ସମସ୍ତେହିଁ ତାଙ୍କର ଲୋକ ।

o

# ଅନକ୍ରମଣୀୟ ବ୍ୟକ୍ତିତ୍ୱ

ରଜନୀକାନ୍ତ ଦାସ

ଚଳନ୍ତ ଯୁଗରେ ଓଡ଼ିଆ ଜାତିର ଭାବ-ମୂର୍ତ୍ତି । ମହତାବଙ୍କ ଛଡ଼ା ଓଡ଼ିଶାର ପରିଚୟ ଅସମ୍ଭବ ।

ରାଜନୀତି କ୍ଷେତ୍ରରେ ସେ କୌଣସି ଅସାଧାରଣ ପୁରୁଷ ନୁହନ୍ତି, କିନ୍ତୁ ଜଣେ ଦୃଢ଼ ଏବଂ ନିଶ୍ଚୟାତ୍ମକ ବ୍ୟକ୍ତି ।

ମଣିଷ ଚରିତ୍ରର ଅନେକ ଗୁଡ଼ିଏ ଅସ୍ତିବାଚକ (Positive) ଗୁଣ ପରୀକ୍ଷା ହୁଏ ରାଜନୀତିର କର୍ମଶାଳାରେ । ଅସ୍ତିବାଚକ ଗୁଣର ବିକାଶ ହୋଇ ନ ଥିଲେ ରାଜନୀତି ତଥା ସମାଜ ସେବାର କ୍ଷେତ୍ର ଉଜ୍ଜ୍ୱଳତର ହୋଇ ପାରେ ନାହିଁ । ମହତାବଙ୍କ ଚରିତ୍ରରେ ସେହିପରି ଅନେକ ଗୁଡ଼ିଏ ଅସ୍ତି-ବାଚକ ଗୁଣର ପରିଚୟ ସ୍ପଷ୍ଟତର । ତାଙ୍କର ଜୀବନରେ ଗାନ୍ଧୀଯୁଗୀୟ ଶିକ୍ଷାର ଭିତ୍ତିଭୂମି ବେଶ୍ ସୁପ୍ରଶସ୍ତ ।

ଆଜିର ରାଜନୀତିରେ ଅନେକ ଗୁଡ଼ିଏ ନାସ୍ତିବାଚକ (negative) ଚରିତ୍ରର ସମାବେଶ ଘଟୁଛି । ହୁଏତ ଏହା ବଢ଼ିବଢ଼ି ଚାଲିଥିବ । ଜାଣିସୁ ରାଜନୀତିରେ ଆଧୁନିକତାର ଅନେକ ନୂଆ ନୂଆ ବନ୍ଦରରେ ଜାହାଜ ଭେଳା ଲାଗି ଯାଉଛି । କିନ୍ତୁ ସେ ଗୁଡ଼ିକ ଚିହ୍ନଟ କରିବାପାଇଁ ବତୀଘର କାହିଁ ? ସମସ୍ତେ ସେଇ ପୁରୁଣା ବତୀଘରକୁ ଅନାଇ ଅନାଇଁ ସମୁଦ୍ର ପାରି ହେଉଛନ୍ତି । ସେଇ ପୁରୁଣା ବତୀଘର ମଧ୍ୟରେ ମହତାବ ଅନ୍ୟତମ ।

ବ୍ୟକ୍ତି ଚରିତ୍ରରେ ଅସ୍ତିବାଚକ ଗୁଣ ଗୁଡ଼ିକର ପରୀକ୍ଷା ଦେଇ ପାରୁନଥିବା ଅନେକ ପୁରୁଷ ଭାରତରେ ରାଜନୀତି କରୁଛନ୍ତି । କେହି କେହି

କ୍ଷମତାର ଶୀର୍ଷ ସୀମାକୁ ଉଠି ଯାଉଛନ୍ତି । କିନ୍ତୁ ଉତ୍ତର କାଳର ଇତିହାସ ସେମାନଙ୍କୁ ଉପେକ୍ଷା କରି ଦେଉଛି । ରାଜନୀତି କ୍ଷେତ୍ରରେ ଆଧାରଶୂନ୍ୟ ମଣିଷମାନେ ରଂଗମଂଚର ଅଭିନେତା ହୋଇ ରହିଯାଉଛନ୍ତି । ଓଡ଼ିଶାର ରାଜନୀତିରେ ମହତାବହିଁ ତାର ଏକମାତ୍ର ବ୍ୟତିକ୍ରମ ।

ତାଙ୍କୁ ଓଡ଼ିଶାର ଗୁଣକ୍ୟ କୁହାଯାଏ । କ୍ଷମତାରେ ଥାଆନ୍ତୁ ବା ନଥାନ୍ତୁ—ସେ ହେଉଛନ୍ତି କ୍ଷମତାର ତୁଳାଦଣ୍ଡ । ଓଡ଼ିଶାର "ରାଜନୀତିକୁ ଯଦି ହ୍ରଦ ସଙ୍ଗେ ତୁଳନା କରାଯାଏ, ସେ ହେଉଛନ୍ତି କବି କଳ୍ପିତ ପଦ୍ମବନର ପ୍ରବଳ ମତ୍ତହସ୍ତୀ । ଅନେକ ତାଙ୍କୁ ଭୟ କରନ୍ତି, ଅନେକ ନିନ୍ଦା ବି କରନ୍ତି । କିନ୍ତୁ ଓଡ଼ିଶାର ଇତିହାସରେ ସେ ଏପରି ଜଣେ ପଞ୍ଜିକାର ଯାହାଙ୍କର ଗଣନାକୁ ଭ୍ରାନ୍ତ ପ୍ରମାଣିତ କରିବାକୁ କାହାରି ସାଧ ନାହିଁ ।

ସ୍ୱାଧୀନୋତ୍ତର ଓଡ଼ିଶାର ସାଢ଼େ ତିନି ଦଶକର ସାଧାରଣ ଏବଂ ଅସାଧାରଣ ଘଟଣାବଳୀର କର୍ମକାଣ୍ଡ ଭିତରେ ସେଇ ହେଉଛନ୍ତି ପୀଠ—ଦେବତା । କେହି ତାଙ୍କ ଉପେକ୍ଷା କରି ଦେଇ ରଙ୍ଗ ସଭାକୁ ଉଜେଇଁ ପାରିବ ନାହିଁ । ସମସ୍ତ ପରିସ୍ଥିତିରେ ପରିବ୍ୟାପ୍ତ ସେଇ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ନିଜ ଜୀବନର ପାଞ୍ଚଦଶକର ଇତିହାସକୁ ଓଡ଼ିଶାର ଇତିହାସରେ ରୂପାନ୍ତରିତ କରି ଦେଇଛନ୍ତି ।

ସମକାଳୀନ ରାଜନୀତିରେ ବହୁ ବ୍ୟକ୍ତିଙ୍କର ସ୍ରଷ୍ଟା, ବହୁ ଚରିତ୍ର ଏବଂ ଉଦ୍ଭଟ ଚରିତ୍ରର ଉଦ୍‌ଭାବକ, ବହୁ ନାଟକ ଓ ମହାନାଟକର ସୂତ୍ରଧର । ସେ ହେଉଛନ୍ତି ଓଡ଼ିଶାର ଭୀଷ୍ମ ପିତାମହ ।

ଅନେକ ତାଙ୍କୁ ଖଳ ନାୟକ କହନ୍ତି । ଅନେକ ରଙ୍ଗ ସଭାର ସେ ଅଧିକାରୀ ବୋଲି ବି କହନ୍ତି । ରାଜନୈତିକ ତନ୍ତ୍ର ମଧ୍ୟରେ ଖଳ-ନାୟକର ଭୂମିକା କେଉଁ ଯୁଗରେ ବି ଅପ୍ରାସଙ୍ଗିକ ନଥିଲା । ରଙ୍ଗମଞ୍ଚରେ ତାହା ଏକ ଅପ୍ରଧାନ ଚରିତ୍ର ହୋଇପାରେ । ମହତାବଙ୍କ ରାଜନୀତିକ ଆଦରି ଘଟଣାବଳୀ ସହିତ ସଂତୁଳନ କରି ଦେଖିଲେ, ଖଳନାୟକର ଅପ୍ରଧାନ ଭୂମିକା

କେଉଁଠି ହେଲେ ତାଙ୍କ ରଚିତ କାବ୍ୟ— ଗ୍ରନ୍ଥରେ ପ୍ରଧାନ ଚରିତ୍ର ହୋଇ ଯାଇ ନାହିଁ । ମହାକାବ୍ୟର ନୀତିଭଙ୍ଗକାରୀ ଆଗ ଚରିତ୍ରକୁ ସେ କେବେହେଲେ ପ୍ରାଧାନ୍ୟ ଦେଇ ନାହାନ୍ତି ।

ଓଡ଼ିଶା ରାଜନୀତିର କ୍ଷୀଣ ଅପ୍ରଚ୍ଛନ୍ନ ସ୍ରୋତକୁ ମହାଭାରତର ଉଜ୍ଜ୍ୱଳ ଜଳଧି ସ୍ରୋତରେ ମିଳିତ କରିବାର ପ୍ରଥମ ସୁଯୋଗର ସଦ୍ ବ୍ୟବହାର କରିବାପାଇଁ ସେଥିଲେ ଏକମାତ୍ର ସୁଚତୁର ବ୍ୟକ୍ତି । ଲୌହ ମାନବ ସର୍ଦ୍ଦାର ପଟେଲଙ୍କର ଦକ୍ଷିଣ ହସ୍ତର ଡ଼ିନାମାଇଟ ବିସ୍ଫୋରକ ମହତାବ ବାବୁ । ଭାରତର ଇତିହାସରେ ଦ୍ୱିତୀୟ ଜତୁ-ଗୃହ ଦାହ ସମ୍ଭବ ହୋଇ ପାରିନଥାନ୍ତା । ଡ଼ିନାମାଇଟ ନଥିଲେ ସର୍ଦ୍ଦାର ପଟେଲ ଭାରତର ମାନଚିତ୍ରକୁ ସମ୍ପୂର୍ଣ୍ଣଭାବେ କ୍ଷତଶୂନ୍ୟ କରିପାରି ନଥାନ୍ତେ ।

ବ୍ୟକ୍ତିର ନେତୃତ୍ୱକୁ ଦୀର୍ଘ ସ୍ଥାୟୀ କରିବାର ଏକମାତ୍ର ଆଧାର ହେଉଛି ବୌଦ୍ଧିକ ଚେତନା ଅସ୍ତି ବାଚକ ଚରିତ୍ର ଦ୍ୱାରା ସମାଜରେ ନେତୃତ୍ୱ ସୃଷ୍ଟି ହୁଏ । କିନ୍ତୁ ବୌଦ୍ଧିକ ଚେତନା ନଥିଲେ ସେ ନେତୃତ୍ୱ ଦୀର୍ଘସ୍ଥାୟୀ ହୋଇପାରେନା । ଐତିହାସିକ, ସାହିତ୍ୟିକ ଏବଂ ପ୍ରବୀଣ ସାଂବାଦିକ ମହତାବଙ୍କ ପାଖରେ ଜନସମାଜରେ ସୁପ୍ରତିଷ୍ଠିତ ହୋଇ ରହିବାର ସମସ୍ତ ଯୋଗ୍ୟତା ବିଦ୍ୟମାନ ।

ନିଜକୁ ନିଜେ ଗଢ଼ି ଦେବାର ବିଚକ୍ଷଣ ଶକ୍ତିର ଅଧିକାରରେ ସେ ଓଡ଼ିଶାର ଅପ୍ରତିଦ୍ୱନ୍ଦୀ ବ୍ୟକ୍ତି । ଏକଦା ଭାରତୀୟ ରାଜନୀତିକ ଆକାଶରେ ଉଜ୍ଜ୍ୱଳ ନକ୍ଷତ୍ର ରୂପେ ବିକଶିତ ହେବାର ସମ୍ଭାବନାକୁ ଉପେକ୍ଷା କରିଦେଇ ଓଡ଼ିଶାକୁ ଫେରି ଆସିଥିଲେ । ଏଇଠାରେହିଁ ସେ ଏକମାତ୍ର ଅନନମଣୀୟ ପୁରୁଷ ଭାରତ ଇତିହାସରେ ଚିରଦିନ ସ୍ମରଣୀୟ ହୋଇଗଲେ ।

ମହତାବ ଓଡ଼ିଶାର ଏକ ପରଂପରାରେ ପରିଣତ ହୋଇ ଯାଇଛନ୍ତି- ଏକଥା ମନେ ରଖିବାକୁ ହେବ ।

ରାଇଟର୍ସ ଓ୍ୱାର୍କସପ୍
ରାଉରକେଲା-୭୬୯୦୧୨

●

# ପ୍ରତିଭାବାନ ଔପନ୍ୟାସିକ ମହତାବ

**ପରମାନନ୍ଦ ଅଧିକାରୀ**

ଇତିହାସର ସୂକ୍ଷ୍ମ ଚକ୍ଷାନ୍ତରେ, ବେଳେ ବେଳେ ଜାତୀୟ ଜୀବନର ପ୍ରଗତିର ରଥଚକ୍ର ଦାରୁଣ ଦୁର୍ବିପାକ ଭିତରେ ପ୍ରୋଥିତ ହୋଇପଡ଼େ । ଗୋଟିଏ ଜାତିର ସମସ୍ତ ଆଶା, ଆକାଂକ୍ଷା, ଚିନ୍ତା, ଚେତନା ଓ ଭବିଷ୍ୟତ ସମୂଳେ ବିନଷ୍ଟ ହୋଇଯିବାର ଆଶଙ୍କା ଜାତହୁଏ ଅସହାୟତା ଓ ଦିଗ୍‌ଭ୍ରମ-ଯୁକ୍ତତା ମଧ୍ୟରେ— ସମାଜର ଭାଗ୍ୟ ଦୋହଲେ ।

ସେତିକି ବେଳେ ବରେଣ୍ୟ ସାଧକମାନେ ସାହିତ୍ୟ, ସଂସ୍କୃତି, କଳା ମାଧ୍ୟମରେ ହେଉ ବା ଅନ୍ୟ କୌଣସି ଉପାୟରେ ହେଉ, ଜାତିନନ୍ଧ-ଘୋରରେ ନବଚେତନାର ଉଜ୍ଜ୍ୱଳ ବାଂଧି ପୁଣି ଝାଙ୍କନ୍ତି, ନୂତନ ସୂର୍ଯ୍ୟର ଆଲୋକରେ ଅଚିହ୍ନ ଦିଗନ୍ତରେ ସ୍ତୂପୀକୃତ ସୂଚୀଭେଦ୍ୟ କାଳିମାକୁ ନିଃଶେଷ କରନ୍ତି । ସେହିମାନେ ପ୍ରକୃତରେ ହୁଅନ୍ତି ଜାତିସ୍ରଷ୍ଟା, ଜାତୀୟ ଜୀବନର ସବ୍ୟ-ସାଚୀ, କାଣ୍ଡାରୀ ଓ ଜନଗଣ-ମନର ଅଧିନାୟକ । ବିଗତ ଐତିହ୍ୟ, ଗୌରବାବହ ପୁଣ୍ୟ ପରମ୍ପରା, ବିଦ୍ୟମାନ ବୈପ୍ଳବିକ ସ୍ଫୂର୍ତ୍ତିର ମାଧ୍ୟମରେ ସେମାନେ ସୃଷ୍ଟି କରନ୍ତି ଅମାପ ଉନ୍ମାଦନା, ଅଖଣ୍ଡ ସଚେତନତାର ଲଘୁରୂପ ।

ପ୍ରତିଭାବାନ ଔପନ୍ୟାସିକ ଡକ୍ଟର ମହତାବ ହେଉଛନ୍ତି ଉପଯୁକ୍ତ ପର୍ଯ୍ୟାୟର ଜଣେ ସାଧକ । ଗୋଟିଏ ଗୁଣବାଚକ ବିଶେଷଣ । ତାଙ୍କୁ ଯେମିତି ବିଶ୍ଳେଷଣ କଲେ, ପର୍ଯ୍ୟାଲୋଚନା କଲେ, ସେ ବୁଝି ହୁଅନ୍ତି ଭଲ ଭାବରେ । ସେ ଏକାଧାରରେ କବି, ପ୍ରାବନ୍ଧିକ, ହାସ୍ୟରସ ସ୍ରଷ୍ଟା, ସାମ୍ବାଦିକ, ଜନନାୟକ, ଐତିହାସିକ ଗାଳ୍ପିକ ଓ ଔପନ୍ୟାସିକ ।

ଆଧୁନିକ ଓଡ଼ିଆ ଉପନ୍ୟାସ ସାହିତ୍ୟର ଜନକ ବ୍ୟାସକବି ଫକୀର-ମୋହନଙ୍କ ପରବର୍ତ୍ତୀ ଉପନ୍ୟାସ ସାହିତ୍ୟର ନବ ବିବର୍ତ୍ତନ ଧାରାକୁ ବିଭୂତି-ବାବୁ ଦୃଷ୍ଟିକୋଣ ନେଇ ବିଚାର କଲା ବେଳେ ଅନ୍ୟାନ୍ୟ ଲବ୍ଧ ପ୍ରତିଷ୍ଠ ଔପନ୍ୟାସିକମାନଙ୍କ ମଧ୍ୟରେ ତାଙ୍କର ମହତ୍ତ୍ୱ ବି ଦୃଷ୍ଟିପଥାରୂଢ଼ ହୁଅନ୍ତି ।

ଜୀବନର ବହୁ ଉତ୍‌ଥାନ ପତନର ବିଚିତ୍ରାନୁଭୂତି, ସଂସ୍କାର ପିପାସା, ବିଳିଷ୍ଠ ସାଧନା, ସୌନ୍ଦର୍ଯ୍ୟବୋଧ, ସମସ୍ୟାସଙ୍କୁଳ ପରିସ୍ଥିତି, ବାସ୍ତବନିଷ୍ଠା, ଅସୀମ ଧୈର୍ଯ୍ୟ, ଓ ବିଭୂଭକ୍ତି ତାଙ୍କୁ ବହୁ ଘାତ-ପ୍ରତିଘାତ, ବାଦବିବାଦ, ନିନ୍ଦା ପ୍ରଶଂସାଭିତରେ ସାହିତ୍ୟାଭିମୁଖୀ କରିଛି ।

ତାଙ୍କର ପ୍ରତିଭାସଂଜାତ ପ୍ରତ୍ୟେକ କୃତି ହେଉଛି, କଠୋର ନିରବ-ଚ୍ଛିନ୍ନ ସାଧନାର ଶ୍ରମ ପରିଣାମ, ମହା ମାନବିକତାର ମହିମାନ୍ୱିତ କାହାଣୀ । ଅଗ୍ରଗାମୀ ମନୁଷ୍ୟର ଦୁଃସାହସ ନିର ଅଭିନବ ଅଭିଧାନ, ବିଜୟ ବିମଣ୍ଡିତ ଜାତୀୟତାର ପ୍ରବହମାନ ସାର୍ଥକ ଇତିହାସ, ପ୍ରଗତି ଓ ଶାନ୍ତି ସଙ୍ଗୀତର ଶୋଭନ ସଂସ୍କରଣ । ତାଙ୍କର ପ୍ରକାଶିତ ଆଦୃତ କୃତି "ସାଧନାର ପଥ" "ସ୍ୱପ୍ନପଥର ଯାତ୍ରୀ" "ଜୀବନ ସମସ୍ୟା," "ନୂତନଧର୍ମୀ" "ଆତ୍ମଦାନ" "ଶେଷ ଅଶ୍ରୁ" "ଓଡ଼ିଶା ଇତିହାସ" "ଗୃହ ଚକ୍ଷୁ" "ପଲ୍ଲୀ ଅବସାନେ" "ଝାଉଁଚର" "ଅବ୍ୟାପାର" "ପ୍ରତିଜ୍ଞା" ଓ "ତୃଷ୍ଣାପୂପର" ପ୍ରଭୃତି ଦ୍ୱାରା ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ ।

ଔପନ୍ୟାସିକ ମହତ୍ତ୍ୱ ତାଙ୍କର "ଅବ୍ୟାପାର" "ଝାଉଁଚର" ଓ "ପ୍ରତିଜ୍ଞା" ଉପନ୍ୟାସ ପାଇଁ ଅମର ହୋଇ ରହିବେ । ଉକ୍ତ ଉପନ୍ୟାସ ମାନଙ୍କରେ ସାଧାରଣ ମାନବୋଚିତ ଦୋଷ, ତ୍ରୁଟି ଦୁର୍ବଳତାକୁ ବାଦ ଦେଲେ, ଉପନ୍ୟାସ ଗୁଡ଼ିକ ନିଃସନ୍ଦେହ ସରଳ, ସାବଲୀଳ, ମଧୁରଭାଷା, ଅଭିନବ ଶୈଳୀ, ବିଷୟ ବର୍ଣ୍ଣନାର ଚମତ୍କାରିତା, ମନସ୍ତାତ୍ତ୍ୱିକ ମନୋଜ୍ଞ ଚରିତ୍ର ଚିତ୍ରଣ, ମନୋମୁଗ୍‌ଧ ସଳାପ ସଂଯୋଜନ, କଳାତ୍ମକ ଶିଳ୍ପ ନୈପୁଣ୍ୟରେ ପୁଷ୍କଳ, ମଞ୍ଜୁଳ ଓ ସମୁଜ୍ଜ୍ୱଳ । ଏତବେ ଅନେକ ସମା-

ଲେଚକଙ୍କ ମତରେ ଓଙ୍କାର ମହତାବଙ୍କ ଉପନ୍ୟାସଗୁଡ଼ିକ ଅଡମାଣ୍ଡାରେ ପ୍ରଗ୍ଣରଧର୍ମୀ ଓ ଆତ୍ମଜୀବନୀମୂଳକ ।

କହିବା ବାହୁଲ୍ୟମାନ ଯେ, ଯେତେବେଳେ ଜୀବନଠୁ ବଡ, ମୁକ୍ତିର ବଳାକା ପରାଧୀନତାର ପଞ୍ଜୁରୀ ଭିତରେ ବେଦନା ବିଦଗ୍ଧ ହୋଇ କରୁଥିଲ କରୁଣ ବିଳାପ, ହିମାଳୟ ଠାରୁ କୁମାରୀକା ଯାଏ, ଯୁଗାବତାର ମାନଙ୍କର ଉଦାତ୍ତ କଂଠର ମର୍ମ-ସ୍ପର୍ଶୀ ସ୍ୱରର ମୂର୍ଛନାରେ ହେଉଥିଲ ଆଲୋଡ଼ିତ, ଅଖଣ୍ଡ ଏକାନ୍ତବୋଧ ଓ ଅଥଳ ଅଦ୍ୱୈତ ଶକ୍ତିର ପରି-ପ୍ରେକ୍ଷୀରେ ଶୁଭୁଥିଲ ସତ୍ୟ ଅହିଂସାର ପ୍ରଚ୍ଛକ, ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର 'କର ଅବା ମର'ର ଆହ୍ୱାନ, ସେତିକବେଳେ ଔପନ୍ୟାସିକ ମହତାବ ପରାର୍ଥେ ଆତ୍ମଦାନ ସ୍ୱୀକୃତ ପ୍ରତିଶ୍ରୁତି ଦେଇ, ଗଭୀର ଜାତୀୟତା ବୋଧ ଉପରେ ଉପନ୍ୟାସଗୁଡ଼ିକର ଶିଳାନ୍ୟାସ କରି ଥିବାରୁ ତାହା ସବୁ ଅଡମାଣ୍ଡାରେ ବାସ୍ତବଧର୍ମୀ ବୋଲି ପ୍ରତୀୟମାନ ହେଉଛି ।

କଳାତ୍ମକ ଶିଳ୍ପ ନୈପୁଣ୍ୟରେ ପୁଷ୍କଳ, ମଞ୍ଜୁଳ ଓ ସମୁଜ୍ଜ୍ୱଳ ତାଙ୍କର କୃତିଗୁଡ଼ିକ ଓଡ଼ିଆ ସାହିତ୍ୟ ବାଣୀଭଣ୍ଡାରରେ ଏକ ଏକ ଚିର ଜାଜ୍ୱଲ୍ୟ-ମାନ ଉତ୍ତୁଙ୍ଗ ସ୍ତମ୍ଭ । ତାଙ୍କର ପ୍ରତ୍ୟେକ କୃତି ହେଉଛି ଜାତୀୟ ଜାଗୃତିର ମଧୁର, ଲୋଭନୀୟ, ଶୋଭନୀୟ, କାଳଜୟୀ ସ୍ମରଣିକା ।

ଗୋଟିଏ କଥା ଏଠାରେ ବିଶେଷ ଭାବରେ ଉଲ୍ଲେଖ-ଯୋଗ୍ୟ ଯେ ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର-ଗୁଡ଼ିକ ଅଧିକ ଉଜ୍ଜ୍ୱଳ । 'ଟାଉଟର'ର ସୁକୁମାରୀ, 'ଅବ୍ୟାପାର'ର କୁମୁଦିନୀ ଓ ନଶାମଣୀ, 'ପ୍ରତିଭା'ର ପ୍ରତିଭା ଏବଂ ଜାହ୍ନବୀ ପ୍ରଭୃତି ଆଖି ଆଗରେ ବନ୍ଦନୀୟ ନାରୀରୂପେ ନାଚି ଉଠନ୍ତି ।

ତାଙ୍କ 'ଅବ୍ୟାପାର'ର ଲଲ ମୋହନ, ହବ୍ୟସିଂହ, 'ପ୍ରତିଭା'ର ନବୀନ, ପ୍ରକାଶ ପ୍ରଭୃତି କାପୁରୁଷ ନୁହନ୍ତି, ସୁପୁରୁଷ । ପଳାୟନପନ୍ଥୀ

ନ୍ତି, ବଳିଷ୍ଠ ସାଧକ ଓ କଷ୍ଟସହିଷ୍ଣୁ । ସେମାନେ ପ୍ରକୃତରେ ଏହି ମାଟି ଗୋଡ଼ର ମଣିଷ । ଜନଭଗବାନଙ୍କର ଉନ୍ନତି ସେମାନଙ୍କର କାମ୍ୟ । 'ବହୁଜନହିତାୟ' 'ବହୁଜନ ସୁଖାୟ' ସେମାନେ ବଂଚିରହିବାକୁ ଚାହାନ୍ତି ।

ଔପନ୍ୟାସିକ ମହତାବ ଯଦି ଅନ୍ୟ କିଛି ଲେଖି ନ ଥାନ୍ତେ, ତେବେବି ସେ 'ପ୍ରତିଭା' 'ଅବ୍ୟାପାର' ଓ 'ଟାଉଟର' ଉପନ୍ୟାସ ପାଇଁ ଓଡ଼ିଆ ସାହିତ୍ୟରେ ଅମର ହୋଇ ରହିଥାନ୍ତେ ।

କଳାଶ୍ରୀ କୁଟୀର
ଜୋବ୍ରା, କଟକ-୩

*

# ଏକ ଅବିସମ୍ବାଦିତ ସତ୍ୟଶ୍ରୀ ସ୍ମରଣେ...

## ହୃଦାନନ୍ଦ ରାୟ

ଭାରତର ସ୍ୱାଧୀନତା ଲାଭ ପରଠାରୁ ଜନଜୀବନରେ ରାଜନୈତିକ ଚେତନା ଯେତିକି ସମ୍ପ୍ରସାରିତ ହେଉଛି, ତାହା ସେତିକି ବିବାଦୀୟ ହୋଇ ଉଠୁଛି । ଆଜି ଜନଜୀବନର ପ୍ରତ୍ୟେକ ବିଭାବ ରାଜନୀତି ଦ୍ୱାରା ଆଚ୍ଛନ୍ନ, ନିୟନ୍ତ୍ରିତ ଓ ଶୃଙ୍ଖଳିତ । ବନ୍ୟାଜଳ ବଢ଼ିଲା ପରି ରାଜନୀତିର ପ୍ରଭାବ ବଢ଼ି ଚାଲିଛି । ରାଜନୀତି ମୁକ୍ତ କୌଣସି ଗୋଷ୍ଠୀ, ସଂସ୍ଥା ଖୋଜି ପାଇବା କଠିନ । ଏହା ଆନନ୍ଦର କଥା ଯେ ଦୀର୍ଘଦିନର ପରାଧିନତା ପରେ ଜନସମାଜ ନିଜର ରାଜନୈତିକ ଅଧିକାର ପ୍ରତି ଅଧିକରୁ ଅଧିକ ସଚେତନ ହେଉଛନ୍ତି । କିନ୍ତୁ କୂଳକିଂଷା ନଦୀପରି ଏହି ସଚେତନତା ସକଳ ସୀମା ସରହଦର ବନ୍ଧନକୁ ଅସ୍ୱୀକାର କରି ବସୁଛି । ଅନ୍ୟକଥା ଦୂରେଥାଉ ଏପରିକି ସତ୍ୟ ଓ ନ୍ୟାୟ ମଧ୍ୟ ରାଜନୀତିର ପ୍ରଭାବରୁ ବାଦ୍ ଯାଉନାହାନ୍ତି । ସତ୍ୟ ଓ ନ୍ୟାୟଦ୍ୱାରା ଶୃଙ୍ଖଳିତ ନ ହୋଇ ରାଜନୀତି ବରଂ ସତ୍ୟ ଓ ନ୍ୟାୟର ଶୃଙ୍ଖଳକ ହୋଇ ବସୁଛି । ରାଜନୀତିର ପ୍ରଭାବକୁ ଅସ୍ୱୀକାର କରିବା ଯେପରି ଅବାସ୍ତବ, ତାହାର ସର୍ବଗ୍ରାସୀ ପ୍ରଭାବକୁ ସ୍ୱୀକାର କରିବା ସେହିପରି ଅଯୌକ୍ତିକ ଓ ଅସମୀଚୀନ ଆଜି ଆମେ ଏକଥା ବିହ୍ୱଳିତ ଭାବରେ ଭୁଲି ଯାଉଥିଲା ପରି ଲାଗୁଛି । ଏହା ଏକ ସାଂସ୍କୃତିକ ବିପଦ । କିନ୍ତୁ ଏହାଠାରୁ ଅଧିକ ବିପଦର କଥା ହେଉଛି ଯେ ରାଜନୀତି ଦିନକୁ ଦିନ ବିବାଦୀୟ ହୋଇ ଉଠୁଛି । ରାଜନୈତିକ ବିବାଦର ପ୍ରେରକ ଶକ୍ତି ରୂପେ ହିଂସା, ବିଦ୍ୱେଷ, ଘୃଣା, ଅସୂୟା, ପରଶ୍ରୀକାତରତା, ଶଠତା, ପ୍ରବଞ୍ଚନା ମନୁଷ୍ୟ ଜୀବନର ଅମଳିନ ମୂଲ୍ୟବୋଧଗୁଡ଼ିକୁ ଫୋପଡ଼ା କରିଦେଉଛନ୍ତି ।

ରାଜନୀତିକ୍ଷେତ୍ର ପୌନପୌନିକରୂପେ ବିବାଦୀୟ ହୋଇ ଉଠିଥିଲା ବେଳେ ଚଳିତ ରାଜନୀତି ସହିତ ସମ୍ପୃକ୍ତ ଥିବା କୌଣସି ବ୍ୟକ୍ତିଙ୍କ ବିଷୟରେ

ନିର୍ବିବାଦରେ କହିହେବ । ସହଜ ନୁହେଁ । କିନ୍ତୁ ଯେଉଁ ବ୍ୟକ୍ତିବିଶେଷଙ୍କ ଜୀବନ ରାଜନୀତି ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିଲେ ହେଁ ତହିଁରେ ସମ୍ପୂର୍ଣ୍ଣ ରୂପେ ସାମିଲ ହୋଇ ଯାଇନାହିଁ, ସେଭଳି ବ୍ୟକ୍ତିମାନଙ୍କ ବିଷୟରେ ଅନେକ କଥା ନିର୍ବିବାଦରେ କୁହାଯାଇ ପାରେ ।

ଡକ୍ଟର ହରେକୃଷ୍ଣ ମହତାବଙ୍କ ବ୍ୟକ୍ତିଗତ ଜୀବନ ଚଳିତ ରାଜନୀତି ସହିତ ଅତି ସଂଶ୍ଳିଷ୍ଟ ହୋଇ ରହିଥିବାରୁ ତାଙ୍କ ବିଷୟରେ ବହୁ ବିବାଦୀୟ ମନ୍ତବ୍ୟ ଶୁଣିବାକୁ ମିଳେ । କିନ୍ତୁ ସମସ୍ତେ ଜାଣନ୍ତି ଯେ ତାଙ୍କ ଜୀବନରେ ବହୁଳାଂଶ ରାଜନୀତି ଠାରୁ ସମ୍ପୂର୍ଣ୍ଣ ପୃଥକ୍ ଭୂମିରେ ପ୍ରତିଷ୍ଠିତ ଓ ସେ ଭୂମିରେ ତାଙ୍କ ଭୂମିକା ଅବିସମ୍ବାଦିତ ରୂପେ ସ୍ୱୀକୃତ । ଡକ୍ଟର ମହତାବଙ୍କ ଜୀବନଚର୍ଯ୍ୟାର ଏକ ବିଶିଷ୍ଟ ଦିଗ ହେଉଛି ଯେ ସେ ନିଜକୁ ପ୍ରବଳ ରାଜନୈତିକ ଘଟଣା ସ୍ରୋତରେ ଯେପରି ସମ୍ଭାଳି ରଖନ୍ତି, ତା ସହିତ ମଧ୍ୟ ନିଜକୁ ରାଜନୀତି ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଭୂମିରେ ସେପରି ସମାହିତ ରଖି ପାରନ୍ତି । ସେହି ସମାହିତ ଭିନ୍ନ ଭୂମିରେ ହିଁ ଡକ୍ଟର ମହତାବଙ୍କ ସହିତ ମୋର ପରିଚୟ । ରାଜନୀତି କ୍ଷେତ୍ରରେ ମୁଁ ତାଙ୍କ ସହିତ ସମ୍ପୂର୍ଣ୍ଣ ଭିନ୍ନ ଭୂମିରେ ସେପରି ସମାହିତ ରଖି ପାରନ୍ତି । ସେହି ସମାହିତ ଭିନ୍ନ ଭୂମିରେ ହିଁ ଡକ୍ଟର ମହତାବଙ୍କ ସହିତ ମୋର ପରିଚୟ । ରାଜନୀତି କ୍ଷେତ୍ରରେ ମୁଁ ତାଙ୍କ ସହିତ ସମ୍ପୂର୍ଣ୍ଣ ଅପରିଚିତ । ରାଜନୀତି ପ୍ରତି ଉଦାସୀନତାକୁ ମୁଁ ମୋର ଏକ ସଦ୍‌ଗୁଣ ବୋଲି ମଣିପାରୁ ନାହିଁ, ତଥାପି ତାହା ଯେ ଏକ ଦୁର୍ଗୁଣ ନୁହେଁ ପିଲିଦିନୁ ଏହା ମୋର ବଦ୍ଧମୂଳ ଧାରଣାରେ ପରିଣତ ହୋଇଯାଇଛି । ରାଜନୀତିର ପ୍ରଳୟ ସିନ୍ଧୁରେ କେତୋଟି ଦ୍ୱୀପପୁଞ୍ଜ ହୋଇ ରହୁ ଓ ତହିଁରେ ପ୍ରାଣୀମାନେ ନିରୁପଦ୍ରବରେ ବସବାସ କରି ଚଳନ୍ତୁ, ଏହା ମୋର ଆନ୍ତରିକ କାମନା । ଡକ୍ଟର ମହତାବଙ୍କ 'କର୍ମ କୋଳାହଳ ମୁଖର ଉଦ୍‌ବେଳିତ ରାଜନୈତିକ ଜୀବନ ମଧ୍ୟରେ ଯେଉଁ କେତୋଟି ପ୍ରଶସ୍ତ ଅବୁଡ଼ା ଦ୍ୱୀପପୁଞ୍ଜ ବିଦ୍ୟମାନ, ସେ ଗୁଡ଼ିକୁ ଏକ ବ୍ୟାପକ ଅର୍ଥରେ ସେ "ସାହିତ୍ୟ" ବୋଲି କହନ୍ତି ।

ଡଃ ମହତାବ କହନ୍ତି, ରାଜନୀତିର ଜୀବନ "ଧୂମ୍ ଖରାବେଳେ ହଳ ଫିଟାଇ ଦୂର ବିଲରୁ ଘରକୁ ଫେରୁଥିବା" କ୍ଲାନ୍ତ କୃଷକର ଜୀବନ ସଙ୍ଗେ

ସମାନ । ଥକା ମେଣ୍ଟାଇବା ପାଇଁ କୃଷକ-ଅସମାପ୍ତ ପ୍ରଥପ୍ରାନ୍ତର ବର ବା ଓସ୍ତ ଗ୍ଛାଇରେ ବସିପଡେ । ଗଜମାତର କର୍ମମୟ ଜୀବନରେ ହନ୍ତସନ୍ତ ହୋଇ ପରିଣାମରେ କାଗବରଣ କଲେ "ଟିକିଏ ଗ୍ଛାଇରେ ବସି ପଡ଼ିଲି ଭଲ ମନେ ହୁଏ ।" କ୍ଳାନ୍ତ କୃଷକର ମନ ବର ଗ୍ଛାଇ ସେ ସାଧନା ବା ଯୋଗ୍ୟତାଇ ଅପେକ୍ଷା ନରଖି ସଙ୍ଗୀତ ଆଡ଼କୁ ଢଳି ପଡ଼ିଲା ପରି, ମହତାବଙ୍କାଙ୍କ ମନ ଆପେ ଆପେ ସାହିତ୍ୟ ଆଡକୁ ଢଳି ପଡ଼ୁଛି । ଏକଥା ଅହମ୍ମଦ ନଗର ଫୋର୍ଟ ଜେଲରେ ୧୯୪୩ ମସୀହାରେ ଶ୍ରୀ ମହତାବ ଲେଖିଛନ୍ତି, ତାଙ୍କ "ଗୃହଚଷୁ" ପୁସ୍ତିକାର ମୁଖବନ୍ଧରେ । ସେ ତହିଁରେ ଲେଖିଛନ୍ତି, "ଖରାବେଳେ ବିଲ ମଝିରେ ମୂଲିଆ ଆଣ୍ଠେଇ ପଡ଼ି ଯେତେବେଳେ ଗୃହିଁବାଏ କେହି ଜମାଜୋଡ଼ ପିନ୍ଧି ଛତା ଧରି ହିଡ ଉପରେ ଯାଉଛି, ସେତେବେଳେ ତା' ମନରେ ଯେପରି ଆପେ ଆପେ ଟିକିଏ ଈର୍ଷାର ଭାବ ଜାତ ହୁଏ, ସେହିପରି ଗଜମାତରେ ଥାଇ ସାହିତ୍ୟିକମାନଙ୍କ ପ୍ରତି ମୋର ମଧ୍ୟ ହୋଇଥାଏ । ଭାବେଁ ନଥାନ୍ତି କ ପଶି ଏହି ନରସ କର୍ମମୟ ମରୁ ଭିତରେ !" ମରୁଯାତ୍ରୀ ପଥିକ ଅନ୍ତରନ୍ତୁ ଯେଉଁ ସ୍ୱତଃ ସ୍ଫୂର୍ତ୍ତି ଝରଣା ଝରି ତା' ହୃଦୟ ମରୁକୁ ଶୀତଳ ଓ ଶ୍ୟାମଳ କରେ, ଶ୍ରୀ ମହତାବଙ୍କ ପାଇଁ "ସାହିତ୍ୟ" ହେଉଛି ସେହି ସହଜ ଆତ୍ମିକ ପ୍ରତିକ୍ରିୟା । ଜୀବନର ଅନେକ କୋମଳ ଲଳିତ ଅନୁଭବ ଓ ସୂକ୍ଷ୍ମବୋଧକୁ ସମ୍ଭାଳି ରଖିବା ପାଇଁ "ସାହିତ୍ୟ" ହେଉଛି ଅବୁଢ଼ା ଦ୍ୱୀପପୁଞ୍ଜ— ଏହା ଶ୍ରୀ ମହତାବ ମର୍ମେ ମର୍ମେ ବୋଧ କରିଛନ୍ତି । ସେଥିପାଇଁ ସାହିତ୍ୟସେବା ଲାଗି ତାଙ୍କର ସର୍ବକାଳୀନ ଉନ୍ମୁଖତା ଓ ସାହିତ୍ୟ ସେବୀମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ତାଙ୍କର ଐକାନ୍ତିକ ବ୍ୟାକୁଳତା ପ୍ରକଟିତ ହୋଇ-ଥାଏ । ସାହିତ୍ୟରେ ଯେ ସଙ୍ଗଠନର ଅତ୍ୟନ୍ତ ଆବଶ୍ୟକତା ରହିଛି, ତାହା ଉପଲବ୍ଧି କରି "ବିଷୁବ ମିଳନ"ର ପ୍ରତିଷ୍ଠାତା ଓ ଆୟୋଜକ ଭୂମିକାରେ ଶ୍ରୀ ମହତାବଙ୍କ ବିଗତ ତିନ ଦଶନ୍ଧି କାର୍ଯ୍ୟକରି ଆସୁଛନ୍ତି । ସାହିତ୍ୟିକମାନେ ମିଳିତ ହୁଅନ୍ତୁ, ସମ୍ମିଳିତ ହୁଅନ୍ତୁ, ସୌହାର୍ଦ୍ଦ୍ୟ ପୂର୍ଣ୍ଣ ବାତାବରଣରେ ଲୋକ ସଗଢ଼ କାର୍ଯ୍ୟରେ ବ୍ୟାପୃତ ରହନ୍ତୁ, ଏହି ମୌଳିକ ପ୍ରେରଣାଟି ସାହିତ୍ୟିକ ସଗଠନର ମୂଳସୂତ୍ର ରୂପେ ପରିଗଣିତ ହେବା ଉଚିତ । ଯେଉଁଠି ଏହି

ମୂଳସୂତ୍ରଟି ସୁରକ୍ଷିତ ହୋଇଛି, ସେଠାରେ ଶ୍ରୀ ମହତାବଙ୍କଙ୍କ ଅଯାଚିତ ପୃଷ୍ଠପୋଷକତାର ଅଭାବ ଘଟି ନାହିଁ । ଯେ କୌଣସି ନିଷ୍ଠାପର ସଙ୍ଗଠନକୁ ଉତ୍ସାହିତ କରିବା ଲାଗି ଶ୍ରୀ ମହତାବଜୀ ସର୍ବଦା ତତ୍ପରତା ପ୍ରଦର୍ଶନ କରାଇ ଆସିଛନ୍ତି ।

ଜାତୀୟ ପରଂପରା ରକ୍ଷାକରି ଯୁଗୋପଯୋଗୀ ସାହିତ୍ୟ ସୃଷ୍ଟି କରିବାର ଆଦର୍ଶରେ ଉଦ୍‌ବୋଧିତ ହୋଇ ଗୁରୁଦେବ ବଞ୍ଚାନିଧି ପଟ୍ଟନାୟକଙ୍କ ନେତୃତ୍ୱରେ ଯେଉଁ ତରୁଣଗୋଷ୍ଠୀ ଉତ୍କଳଗୌରବ ସାହିତ୍ୟ ସମାଜ ରୂପକ ସାହିତ୍ୟିକ ସଙ୍ଗଠନ କରିଥିଲେ, ତାଙ୍କ ନିମନ୍ତ୍ରଣ କ୍ରମେ ୧୯୩୪ ମସିହାରେ ଶ୍ରୀ ମହତାବଜୀ ବଶିଷ୍ଟ ଅତିଥି ରୂପେ ଯୋଗ ଦେଇଥିଲେ । ସେଦିନ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଖାରବେଳ ନାଟକ ଅଭିନୟ କରିବାରେ ବ୍ୟବସ୍ଥା ହୋଇଥାଏ । ସେଦିନଠାରୁ ଅତ୍ୟନ୍ତ ଘନିଷ୍ଠ ଭାବରେ ଶ୍ରୀ ମହତାବ ଉତ୍କଳଗୌରବ ସାହିତ୍ୟ ସମାଜ ଓ ପରେ କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀ ଆନ୍ଦୋଳନ ସହିତ ଜଡ଼ିତ ହୋଇ ଆସିଛନ୍ତି । ଗୁରୁଦେବ ବଞ୍ଚାନିଧିଙ୍କ ପ୍ରୟାଣ ପରେ ଶ୍ରୀ ମହତାବଜୀ ଲେଖିଛନ୍ତି—"ବଞ୍ଚାନିଧିଙ୍କୁ ମୁଁ ୧୯୩୦ ସାଲଠାରୁ ଜାଣିଥିଲି । ସେ ଜଣେ ବକ୍ତା ଓ ସାହିତ୍ୟିକ ବୋଲି ପରିଚିତ ଥିଲେ, କିନ୍ତୁ କ୍ରମେ ସେ ସାହିତ୍ୟର ଯେଉଁ ଦିଗରେ ପାରଦର୍ଶିତା ଲାଭ କଲେ, ତାହା ସେ କରିପାରିବେ ବୋଲି ମୋର ଧାରଣା ନ ଥିଲା । ନାନା ଆଲୋଚନା ଓ ସମାଲୋଚନାର ଘାତ ପ୍ରତିଘାତରେ ଉପେନ୍ଦ୍ରଭଞ୍ଜ ଯେ କେତେ ପଛରେ ପଡ଼ି ଯାଇଥିଲେ, ଆଜି ତାହା ସହଜରେ ଅନେକ କଳ୍ପନା କରି ପାରିବେ ନାହିଁ । ଆଜି ଯେ ଉପେନ୍ଦ୍ରଭଞ୍ଜ ସାହିତ୍ୟିକ ସମ୍ମାଧିରୁ ଆଗକୁ ଆସି ପାରିଛନ୍ତି, ଏହା କେବଳ ବଞ୍ଚାନିଧିଙ୍କ ସଙ୍ଗଠନ ଶକ୍ତି ଯୋଗୁଁ । ସେ ଯେ ନିଜେ କେବଳ ଭଞ୍ଜ-ସାହିତ୍ୟ ସେବିନି ତତ୍ପର ହେଲେ, ତାହା ନୁହେଁ, ସେ ସବୁ ଯୁବକଙ୍କୁ ସେ ଦିଗରେ ଏପରି ଅନୁପ୍ରାଣିତ କରି ପାରିଲେ ଯେ ସେମାନେ ଭଞ୍ଜ—ସାହିତ୍ୟର ନିଷ୍ଠାପର ଭକ୍ତ ହୋଇ ସମାଲୋଚକ ମାନଙ୍କୁ ଅପଦସ୍ଥ କରି ଦେଲେ ।"

କଳିଙ୍ଗଭାରତୀ ଅନୁଷ୍ଠାନ ତରଫରୁ ଆୟୋଜିତ ବାର୍ଷିକ ଭଞ୍ଜ-ଜୟନ୍ତୀ ଓ ସାରସ୍ୱତ ମହୋତ୍ସବ ମାନଙ୍କରେ ସଭାପତି, ମୁଖ୍ୟଅତିଥି ଓ ବକ୍ତା ଭାବରେ ଯୋଗ ଦେଇ ଶ୍ରୀ ମହତାବଜୀ ଅସରନ୍ତି ପ୍ରେରଣାର ଉତ୍ସରୂପେ କାର୍ଯ୍ୟ କରି ଆସିଛନ୍ତି । ଓଡ଼ିଶାର ଅଗଣିତ ସାହିତ୍ୟିକ ଅନୁଷ୍ଠାନ ତାଙ୍କ ପୃଷ୍ଠପୋଷକତାରେ ପରିପୁଷ୍ଟ ହୋଇଛନ୍ତି । ଯେଉଁଠି ନିଷ୍ଠା, ଯେଉଁଠି ଆଦର୍ଶ ବୋଧ ଓ ତ୍ୟାଗର ସଙ୍କେତ ରହିଛି, ମହତାବଜୀଙ୍କ ହୃଦୟର ନିଭୃତ-କନ୍ଦରରୁ ସେଠାରେ ସହାନୁଭୂତି, ସାହଚର୍ଯ୍ୟ ଓ ସମଧର୍ମୀ ସହୃଦୟତାର ସୁରଧୂନୀ ଝରି ପଡ଼ିଛି । ମହତାବଜୀଙ୍କ ଜୀବନର ଏହି ଦିଗଟି ମୋ ପାଇଁ ଅବିସମ୍ବାଦିତ ଭାବରେ ସତ୍ୟ । ଆଜି ତାଙ୍କ ଜନ୍ମଜୟନ୍ତୀରେ ସେହି ଅମଳିନ ସତ୍ୟଶ୍ରୀକୁ ସ୍ମରଣ କରି ମୁଁ ତାଙ୍କ ଦୀର୍ଘଜୀବନ କାମନା କରୁଛି ।

ଉପାଧ୍ୟକ୍ଷ, ପ୍ରାଚ୍ୟ ମହାବିଦ୍ୟାଳୟ
ଭୁବନେଶ୍ୱର



# ଚଳିତ ଶତକର ଏକ ମୂର୍ତ୍ତିମତୀ ପ୍ରତିଭା

ନରହରି ଉପାଧ୍ୟାୟ

**ଶା**ସ୍ତ୍ରୋକ୍ତ — "ସଦ୍ୟୋ ନବନବୋଲ୍ଲେଖି
ଜ୍ଞାନଃ ସ୍ୟାତ୍ ପ୍ରତିଭାନ୍ୱିତଃ"

ଅର୍ଥାତ୍ ସଦ୍ୟ ନୂତନ ନୂତନ ଉନ୍ମେଷଶାଳିନୀ ପ୍ରଜ୍ଞାଯୁକ୍ତ ବ୍ୟକ୍ତିଙ୍କୁ ପ୍ରତିଭାନ୍ୱିତ କୁହାଯାଏ । କାଳେ କାଳେ ବିଭିନ୍ନ କ୍ଷେତ୍ରରେ ବହୁ ପ୍ରତିଭାର ଉଦ୍‌ଭବ ଓ ବିକାଶ ଘଟିଛି, ଘଟୁଛି ଓ ଘଟିବ । କାଳଗତିରେ କେତେ କେତେ ପ୍ରତିଭା ଅବିକଶିତ ଅବସ୍ଥାରେ ରହିଯାଏ । ବିକାଶୋନ୍ମୁଖୀ ଆଉ କେତେକ ଘଟଣାଚକ୍ରରେ ପ୍ରତିକୂଳ ପାରିପାର୍ଶ୍ୱିକ ପରିସ୍ଥିତିରୁ ମ୍ଳାନ ହୋଇଯାଏ । କିନ୍ତୁ ବହୁମୁଖୀ ଅନନ୍ୟ ସାଧାରଣ ପ୍ରତିଭା ଆନୁକୂଲ୍ୟ ପ୍ରତିକୂଲ୍ୟ ନିର୍ବିଶେଷରେ ସମ୍ୟକ୍ ବିକଶିତ ହୋଇ ଚରିତାର୍ଥତା ଲାଭ କରେ । ଚଳିତ ଶତକରେ ଶେଷୋକ୍ତ ପର୍ଯ୍ୟାୟରେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ରୂପେ ନବ ଉତ୍କଳର ନିର୍ମାତା, ବରେଣ୍ୟ ଜାତୀୟ ନେତା, ଆଜୀବନ ଦେଶସେବକ, ସୁଦକ୍ଷ ଶାସକ, ଚତୁର ରାଜନୀତିଜ୍ଞ, ସର୍ବୋପରି ବିଶିଷ୍ଟ ଐତିହାସିକ ଏବଂ ପ୍ରବୀଣ ସାରସ୍ୱତସାଧକ ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କ ନାମୋଲ୍ଲେଖ କରାଯାଇ ପାରେ । ଏହି ନାମଟି ଏକ ମହାନ୍ ବ୍ୟକ୍ତିତ୍ୱର ପରିଚୟ । ତାଙ୍କର ସୁଖ ଦୁଃଖ ସମନ୍ୱିତ ବିରାଟ କର୍ମମୟ ଜୀବନର ପରିସର ଛଅ ଦଶନ୍ଧିରୁ ଟପିଯାଇସାରିଲାଣି । ତାଙ୍କର ସମସାମୟିକ ଏବଂ ସହଧର୍ମୀ ସହକର୍ମୀଙ୍କ ମଧ୍ୟରୁ ଅନେକଙ୍କର ନାମ ଏବେ ଲୁଚିଗଲାଣି । କିନ୍ତୁ ଅଶିତି ବର୍ଷ ବୟଃକ୍ରମପରେ ମଧ୍ୟ ସେ ଆଜି ସମ୍ପୂର୍ଣ୍ଣ କର୍ମଠ ଏବଂ ସୃଷ୍ଟିପ୍ରବଣ । ବ୍ୟକ୍ତି ଆଜି ଅନୁଷ୍ଠାନରେ ପରିଣତ ହୋଇଛନ୍ତି; ଜରା ଏଠି ହାର ମାନିଛି, ଇନ୍ଦ୍ରିୟ ସକଳ ତଥାପି କର୍ମକ୍ଷମ; ବଶ୍ୟତା ସ୍ୱୀକାର

କରନ୍ତି ଉନ୍ମେଷଶାଳିନୀ ପ୍ରଜ୍ଞା, ଏଥିରେ ଅତ୍ୟୁକ୍ତି ନାହିଁ ବା ବିରୁକ୍ତିର ଅବକାଶ ନାହିଁ । ଯାହା ବାସ୍ତବ, ତାହା ସ୍ୱୀକାର୍ଯ୍ୟ ।

ଚଳିତ ଶତକର ପ୍ରଥମାର୍ଦ୍ଧରେ ଯେଉଁ ଅନ୍ୟତମ ତ୍ୟାଗପୂତ ସଂଗ୍ରାମୀ ଯୁବକର୍ମୀମାନଙ୍କୁ ଉତ୍କଳବାସୀ ତତ୍କାଳୀନ ଝଡ଼ଝଞ୍ଜାପୂର୍ଣ୍ଣ ରାଜନୈତିକ ମଞ୍ଚରେ ତଥା ଜନସେବା କ୍ଷେତ୍ରରେ ପ୍ରତ୍ୟକ୍ଷୀଭୂତ କରିଥିଲେ, ସେ ହେଉଛନ୍ତି ବାଲେଶ୍ୱର ଜିଲ୍ଲା ଆଗରପଡ଼ା ସମ୍ଭ୍ରାନ୍ତ ମହତାବ ବଂଶର ଉଦୀୟମାନ ଦାୟାଦ ଅଦ୍ୟତନ ସ୍ୱନାମଧନ୍ୟ ଜନନେତା ହରେକୃଷ୍ଣ ମହତାବ । ରାଜକୀୟ ଭୋଗ ବିଳାସର ଜଳାଞ୍ଜଳି ଦେଇ ସେ ସାଜିଥିଲେ ବନ୍ଧୁର ପଥର ଯାତ୍ରୀ, ଆଭିଜାତ୍ୟ ଅଭିମାନକୁ ଦୂରକୁ ଫିଙ୍ଗି ଦେଇ ସେ ଖସି ଆସିଥିଲେ ସାଧାରଣ ମଣିଷ ମେଳକୁ । କେଉଁ ଭବିଷ୍ୟତ ଆଶାରେ କେଜାଣି ! ସଂକଳ୍ପବଦ୍ଧ ଚିତ୍ତ, କାର୍ଯ୍ୟରେ ଦୃଢ଼ତା, ଆଦର୍ଶ ଦେଶପ୍ରାଣତା ଏବଂ ବ୍ୟକ୍ତିତ୍ୱର ମହନୀୟତାକୁ ସମ୍ବଳ କରି ସେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି । ଦେଶ ପାଇଁ ଦଶ ପାଇଁ ଉତ୍ସର୍ଗୀକୃତ ତାଙ୍କର ସାରା ଜୀବନ । ଦେଶ ମାତୃକା ସେବାରେ ନିଜକୁ ବହୁଭାବରେ ନିୟୋଜିତ କରି ବାସ୍ତବିକ ସେ ନିଜକୁ ଏକ ସର୍ବତୋ-ମୁଖୀ ଗୌରବୋଜ୍ଜ୍ୱଳ ଅନୁଷ୍ଠାନରେ ପରିଣତ କରି ସାରିଛନ୍ତି । ଦ୍ୱିଧାହୀନଭାବେ କୁହାଯାଇପାରେ ଯେ, ଅର୍ଦ୍ଧଶତକରୁ ଊର୍ଦ୍ଧ୍ୱକାଳର ଜାତୀୟ ଇତିହାସରେ ସେ ଏକ ଉଲ୍ଲେଖନୀୟ ଉପାଦାନ । କିନ୍ତୁ ଦ୍ୱିଧା ହୁଏ, ଏପରି ଏକ ବ୍ୟକ୍ତିତ୍ୱର ଉପଯୁକ୍ତ ମୂଲ୍ୟାୟନ କରିବାକୁ ଯିବା ଚରମ ଧୃଷ୍ଟତା ହେବ । ତଥାପି କହନ୍ତୁ କହିବା, ଶ୍ରୀ ମହତାବଜୀଙ୍କୁ ଯେ ଯେଉଁ ଦୃଷ୍ଟିରେ ଦେଖନ୍ତୁ ନା କାହିଁକି, ଆମ ଦୃଷ୍ଟିରେ ସେ ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ତଥା କଳା ସାହିତ୍ୟ ସଂସ୍କୃତିର ପୃଷ୍ଠପୋଷକ । ଜିଲ୍ଲା ମାଜିଷ୍ଟ୍ରେଟ୍ ସଦାନନ୍ଦ ବାବୁଙ୍କ ସହ କଥା ପ୍ରସଙ୍ଗରେ ସାହିତ୍ୟ ଓ ରାଜନୀତି ସମ୍ପର୍କୀୟ ରାମଶଙ୍କରଙ୍କ ମନ୍ତବ୍ୟଟିର ପ୍ରାସଙ୍ଗିକତାକୁ ଲକ୍ଷ୍ୟ କରାଯାଉ—"ଆପଣ ସାହିତ୍ୟିକ, ସାହିତ୍ୟଆଡ଼କୁ ମୋଟେ ଟାଣନ୍ତୁ ନାହିଁ । ମୁଁ ରାଜନୀତିର ଲୋକ, ସାହିତ୍ୟର ଧାର ଧାରେ ନାହିଁ । ଆପଣ ମଧ୍ୟ ରାଜନୀତିର ଲୋକ, ସାହିତ୍ୟ ଆପଣଙ୍କର ଦ୍ୱିତୀୟ ପ୍ରେମିକା ହୋଇପାରେ ; ମାତ୍ର ପ୍ରଥମ ପ୍ରେମିକା ଆପଣଙ୍କର ଶାସନ,

ଯାହା ରାଜନୀତିର ଏକ ପ୍ରଧାନ ଅଙ୍ଗ ।" ରାଜନୀତିର ଲୋକ ସାହିତ୍ୟର ଧାର ନ ଧରିବା ମନ୍ତବ୍ୟଟି ମହତାବଙ୍କ କ୍ଷେତ୍ରରେ ସତ୍ୟ ନୁହେଁ । ତାଙ୍କର ରାଜନୈତିକ କୃତି ଏବଂ ସାହିତ୍ୟିକ କୃତିର ବିଶଦ ଅନୁଶୀଳନ କଲାପରେ, ସାହିତ୍ୟକୁ ତାଙ୍କର ପ୍ରଥମ ପ୍ରେମିକାର ଆସନ ଦେବା ଅଧିକ ଯୁକ୍ତିଯୁକ୍ତ ହେବ । ମହତାବଙ୍କର ଜାଜ୍ଜ୍ୱଲ୍ୟମାନ ପ୍ରତିଭା ସାହିତ୍ୟର ପ୍ରତି ବିଭାଗରେ ପ୍ରତିଫଳିତ । କାବ୍ୟ, ଉପନ୍ୟାସ, ଆତ୍ମଜୀବନୀ, କ୍ଷୁଦ୍ରଗଳ୍ପ ଏବଂ ଏକାଙ୍କିକା ନାଟକାଦି ବିଭିନ୍ନ ବିଭାଗରେ ତାଙ୍କର ଲେଖନୀ ସ୍ପର୍ଶିତ ଓ ସଫଳୀକୃତ । ସବୁର ପର୍ଯ୍ୟାଲୋଚନା କରି ବସିଲେ ବିରାଟ ଗ୍ରନ୍ଥ ହେବ । ତେଣୁ ସ୍ତୋକ ମାତ୍ର ବକ୍ତବ୍ୟ ।

ଗୁଡପାକ କଲେ ବି ନିମ୍ବର ସ୍ୱାଭାବିକ ତିକ୍ତତା ରହିବ । ଅଗ୍ନିର ସତ୍ତା ଥିବାଯାଏଁ ତାର ଦାହିକା ଶକ୍ତି ଅଛି । ବିପ୍ଳବୀ ଜୀବନର ସ୍ୱର ସଦାସର୍ବଦା ବୈପ୍ଳବିକ । ମହତାବଙ୍କ ଆଜନ୍ମ ବିପ୍ଳବୀ । ତାଙ୍କ ବିପ୍ଳବୀ ଜୀବନର ରୌଦ୍ର ପ୍ରଚଣ୍ଡ ଜ୍ୱାଳା ବୟଃବୃଦ୍ଧି ସଙ୍ଗେ ସଙ୍ଗେ ବହୁ ପରିମାଣରେ ପ୍ରଶମିତ ହୋଇଯିବା ଅବଶ୍ୟ ସ୍ୱାଭାବିକ । ତଥାପି ସେ ସ୍ୱର ଏବେ ବି ପ୍ରତିଧ୍ୱନି ତୋଳେ ତାଙ୍କ ସାହିତ୍ୟର ଛନ୍ଦେ ଛନ୍ଦେ । ତାହାରି ଭିତରେ ଶାନ୍ତିର ବାଣୀ, ମୈତ୍ରୀର ବାଣୀ, ସ୍ୱଦେଶ ସହୃଦୟତାର ବାଣୀର ଝଙ୍କୃତ ସମନ୍ୱୟରେ ମାନବିକ ସମ୍ବେଦନଶୀଳତାର ବାର୍ତ୍ତା, ଲୋକଶିକ୍ଷାମୂଳକ ପ୍ରବର୍ତ୍ତନା ଓ ଗଠନମୂଳକ ଚିନ୍ତାର ଜ୍ୟୋତ୍ସ୍ନାଶୀତଳ ସ୍ପର୍ଶ ଅନୁଭୂତ ବିଚକ୍ଷଣ କଳା କୌଶଳ ପ୍ରୟୋଗରେ ତାଙ୍କର ବୈପ୍ଳବିକ ଭାବଧାରାର ପରିବେଷଣ ଶୈଳୀକୁ ସର୍ବାଦୌ ଅନୁଧ୍ୟାନ କରିବାର କଥା ।

ଭାବବ୍ୟକ୍ତ ହେଲେ ସାହିତ୍ୟ ; କଳାତ୍ମିକତା ତାର ଆଙ୍ଗିକ ସୌଷ୍ଠବ । ସ୍ୱାଦ୍ୟ ସରସ କଳାତ୍ମକ ଉପସ୍ଥାପନାର ଦୁଇଟି ମୁଖ୍ୟ ଉପାଦାନ ଅଭିଜ୍ଞତା ଓ ଅନୁଭୂତି । ଅଦେଖା ପୋଥି ବାଇଗଣ ଆଖିଦେଖା ବାଡ଼ି ବାଇଗଣରେ ପାର୍ଥକ୍ୟ ଆକାଶପାତାଳ । ବହୁ ଅଭିଜ୍ଞତାପୂର୍ଣ୍ଣ ଜୀବନର ବ୍ୟାପକ ଅନୁଭୂତିରୁ ଯାହା ବ୍ୟକ୍ତ ହେବ ତାର ମାର୍ମିକ ଉତ୍କର୍ଷ ଅବିସମ୍ବାଦୀ । ଭାରତର ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାଦିନୁ ଆରମ୍ଭ ହୁଏ ମହତାବଙ୍କର କର୍ମମୟ ସାଧାରଣ ଜୀବନ । ପରାଧୀନ ଭାରତରେ ପ୍ରଥମ ପଙ୍କ୍ତିର ସୈନିକ, ସ୍ୱାଧୀନ

ଭାରତରେ ଦ୍ୱିତୀୟ ପର୍ବର ସେନାପତି, ଯନ୍ତ୍ରଣା-ଯନ୍ତ୍ରୀଭୂତ 'ତୃତୀୟ ପର୍ବ'ର ପ୍ରବକ୍ତା ଭବିଷ୍ୟତର ଜାଗ୍ରତ ପ୍ରହରୀରୂପେ ଜୀର୍ଣ୍ଣ ଶରୀର ପୂର୍ଣ୍ଣ ମନୋବଳକୁ ନେଇ ସମ୍ମୁଖେ ଦଣ୍ଡାୟମାନ । ଧୂମ୍ରାଧୂର୍ଷିତ ବେଲାଲସେନ ମହାଭାରତ ଯୁଦ୍ଧର ପ୍ରାରମ୍ଭ, ବିକାଶ ଓ ପରିସମାପ୍ତିକୁ ପ୍ରତ୍ୟକ୍ଷୀଭୂତ କରିଥିବା ପ୍ରସଙ୍ଗରେ କଥା । ସେ ମହାତ୍ମାଙ୍କର ପ୍ରତ୍ୟକ୍ଷ ବିବରଣୀକୁ ଅନ୍ୟଥା କରିପାରିବ କିପରି ? ଶତାବ୍ଦୀର ସଙ୍ଘଟିତ ପର୍ବପର୍ବାନ୍ତରେ ନିରବଚ୍ଛିନ୍ନ ଭୂମିକା ଗ୍ରହଣ କରି ଆସୁଥିବା ଏ ଯୁଗ ବେଲାଲସେନ ମହତାବଙ୍କର ଅଙ୍ଗୀକାର ଅନୁଭୂତିପୂର୍ଣ୍ଣ ଅଭିବ୍ୟକ୍ତିର ଗୁରୁତ୍ୱ ଅବଶ୍ୟ ପ୍ରଣିଧାନଯୋଗ୍ୟ ।

କୁଳବୃଦ୍ଧ ମହତାବଙ୍କ ଚଳିତ ଶତକର ତୃତୀୟ ଦଶନ୍ଧିଠାରୁ ଆରମ୍ଭ କରି ଅଷ୍ଟମ ଦଶନ୍ଧିର ପ୍ରାରମ୍ଭ ଏବଂ ତତ୍ପରବର୍ତ୍ତୀ ଭାରତର ଐତିହାସିକ କାଳକୁ ତିନୋଟି ପର୍ବାଖ୍ୟ ସୀମାରେଖା ଦ୍ୱାରା ବିଭକ୍ତ କରିଦେଇଛନ୍ତି । ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ଓ ଭାରତଛାଡ଼ ଆନ୍ଦୋଳନ ଭଳି ତିନୋଟି ମୁଖ୍ୟ ସଂଗ୍ରାମ ବା ସତ୍ୟାଗ୍ରହ ସଂଘଟିତ ହୋଇଯାଇଥିବା ୧୯୨୧ ଠାରୁ ୧୯୪୬ ସାଲ ପର୍ଯ୍ୟନ୍ତ ପଚିଶ ବର୍ଷ କାଳକୁ 'ପ୍ରଥମପର୍ବ'; ୧୯୪୭ ସାଲର ସ୍ୱାଧୀନତା ପ୍ରାପ୍ତିଠାରୁ ୧୯୭୧ ଯାଏ ସ୍ୱାଧୀନତା ସଂଗ୍ରାମୀଙ୍କ ଦ୍ୱାରା ଶାସିତ ଭାରତର ପଚିଶ ବର୍ଷ କାଳକୁ 'ଦ୍ୱିତୀୟପର୍ବ' ଏବଂ ୧୯୭୧ ସାଲର ପରବର୍ତ୍ତୀ କାଳକୁ 'ତୃତୀୟପର୍ବ' ରୂପେ ନାମିତ କରାଯାଇଛି । ଏହି ଶେଷୋକ୍ତ ପର୍ବର ରୂପରେଖ ପ୍ରକାଶ ଓ ବିକାଶରେ ମୁଖ୍ୟତଃ ଦ୍ୱିତୀୟପର୍ବର ପରିଣତିକୁ ଉପାଦାନରୂପେ ଗ୍ରହଣ କରାଯାଇଛି । 'ତୃତୀୟପର୍ବ' ଉପନ୍ୟାସରେ ମହତାବଙ୍କ ତିନିପର୍ବର ପ୍ରତିନିଧିରୂପେ ଯେଉଁ ତିନୋଟି ବିଶିଷ୍ଟ ଚରିତ୍ରର ଉପସ୍ଥାପନା କରିଛନ୍ତି ସେମାନେ ଯଥାକ୍ରମେ ହେଲେ ରମାଶଙ୍କର, ଜଗଦାନନ୍ଦ ଓ ବୀରକିଶୋର । ସାରା ଭାରତରେ ଜାତୀୟତାର ଝଞ୍ଜା ବହୁଥିବା ବିକ୍ଷୁବ୍ଧ ଗାନ୍ଧୀଯୁଗର ଲୋକ ରମାଶଙ୍କର । ଦେଶର ମୁକ୍ତିସଂଗ୍ରାମରେ ତାଙ୍କର ଅବଦାନ ଯଥେଷ୍ଟ । ସ୍ୱାଧୀନତାଲାଭ ପରେ କ୍ଷମତା ରାଜନୀତିରୁ ଦୂରରେ ରହି ଆଶ୍ରମ ଜୀବନଯାପନ କରୁଥାନ୍ତି । ଜଗଦାନନ୍ଦ କ୍ଷମତା ରାଜନୀତିରେ ମଜଗୁଲ୍ । ବୀରକିଶୋର ଯୁଗଯନ୍ତ୍ରଣାର ରୂପରେ ଯୁବବିପ୍ଳବର ବାର୍ତ୍ତାବହ । ଏହି ମୁଖ୍ୟ ପ୍ରତିନିଧି ତ୍ରୟଙ୍କୁ କେନ୍ଦ୍ରକରି ଉଦଘାଟିତ ହୋଇଛି ତୃତୀୟପର୍ବର ସ୍ୱରୂପ ।

ଏ ଦେଶ ଜନତାର ସୁଖର ସ୍ୱପ୍ନ ଥିଲା ରାମରାଜ୍ୟ; ଅକସ୍ମାତ ଅନ୍ତର୍ଦ୍ଧାନ ହୋଇଗଲେ ରାମରାଜ୍ୟର ପ୍ରବକ୍ତା ; ଗୋଟାଏ ଯୁଗର ଅବସାନ ଘଟିଗଲା । ଦେଶର କର୍ଣ୍ଣଧାରମାନେ ଭୁଲିଗଲେ ନିଜର ପ୍ରତିଶ୍ରୁତି ; ଉଭେଇଗଲା କର୍ତ୍ତବ୍ୟ ଜ୍ଞାନ ; ବିସ୍ମୃତ ହେଲେ ନୈଷ୍ଠିକ ଦେଶ ସେବାର ମହତ୍ତ୍ୱ ; ଆକାଶ କୁସୁମ ହୋଇ ରହିଗଲା କଳ୍ପିତ ରାମରାଜ୍ୟ । ଶାସକଗୋଷ୍ଠୀ ସହିତ ସଂଘର୍ଷର ଯୁଗ ଅବସାନ ହୋଇଯାଇଛି । ଦେଶରେ ଗଣତନ୍ତ୍ର ପଦ୍ଧତିର ଶାସନ ପ୍ରତିଷ୍ଠିତ । ଲୋକପ୍ରିୟ ଶାସନରେ ଶାସିତ ଜନସାଧାରଣ ସରକାରଙ୍କ କାର୍ଯ୍ୟକଳାପ ଓ ଦୋଷଦୁର୍ବଳତାର ଆଲୋଚନା ସମାଲୋଚନା କରିବାକୁ ହକଦାର । ସ୍ୱାଧୀନ ଭାରତରେ ବହୁ ଆଖିଦୃଶିଆ ପ୍ରଗତି ଯେ ନ ହୋଇଛି, ତା ନୁହେଁ । କିନ୍ତୁ ପ୍ରଗତିର ତାଳେ ତାଳେ ପଦଘାତ କରି ଚାଲିଛି ଦୁର୍ଗତିର କୁଶୀଲବଗୋଷ୍ଠୀ । ସୁତରାଂ ଅଗ୍ରଗତି ଓ ପଶ୍ଚାଦ୍‌ଗତି କ୍ଷେତ୍ରବିଶେଷରେ ସମାନ୍ତରାଳଭାବେ ଚାଲିଛି ବୋଲି କୁହାଯାଇପାରେ । ଶାସନଗତ ତ୍ରୁଟି ବିଚ୍ୟୁତି, ଅର୍ଥନୈତିକ ଦୁର୍ଗତି, ନୈତିକ ଅବନତି, ସାମାଜିକ ବିଶୃଙ୍ଖଳା, ଚାରିତ୍ରିକ ସ୍ଖଳନ, କର୍ମଚାରୀ ମହଲରେ ନିଷ୍କ୍ରିୟତା, ଅନ୍ଧାନୁକରଣର ପ୍ରାଦୁର୍ଭାବ, ପରମ୍ପରା ଓ ସଂସ୍କୃତିର ବିକୃତି, ଯୁବମାନସର ଉଦ୍‌ବେଳନ, ଶୋଷଣ, ତୋଷଣ ଆଦି ସବୁପ୍ରକାର ପ୍ରତ୍ୟବାୟ ଓ ପ୍ରତିକ୍ରିୟାର ଉଦ୍ଭବ ଘଟିଛି । ସର୍ବତ୍ର ଅଶାନ୍ତ ଉପଦ୍ରବର ବାତାବରଣ ; ଅନବରତ ଉତ୍କଟ ହିଂସାର ତାଣ୍ଡବଲୀଳା ; ନିରାପତ୍ତା ବ୍ୟାହତ ; ଆଇନର ଶାସନ ବିଘ୍ନିତ । ଫଳତଃ ବହୁ ସମସ୍ୟାବହୁଳ ହୋଇଉଠିଛି ଜନଜୀବନ । ଅବସ୍ଥାକୁ ସମ୍ଭାଳିବ କିଏ ? ପ୍ରକୃତ ଜନସେବକ ଜନତାଠାରୁ ଦୂରେଇଯାଇଛି । କେବଳ ଭୋଟ୍ ବେଳେ ଯାହା ସେବ୍ୟ ସେବକଙ୍କର ଭେଟ । ଭୋଟ୍ ସରିଲେ ରାଜା ପ୍ରଜା ସମ୍ପର୍କ । କ୍ରମବର୍ଦ୍ଧମାନ ଜନ ଅସନ୍ତୋଷର ପରିଣତି କଣ ହେବ ? ଆଜି ଏହି ପ୍ରଶ୍ନ ସବୁର ପ୍ରାଣକୁ ଆନ୍ଦୋଳିତ କରେ । ଅନିଶ୍ଚିତ ଭବିଷ୍ୟତ ଭାବନାର ଅନ୍ତ ନାହିଁ ଯେପରି । ଏହିପରି ସମସ୍ୟାସଙ୍କୁଳ ପୃଷ୍ଠଭୂମି ଉପରେ ଆଶାବାଦର ସ୍ୱର ତୋଳିଛି 'ତୃତୀୟ ପର୍ବ' ।

ଭବିଷ୍ୟତର ଆହ୍ୱାନ ଅତୀତକୁ ଫେରିବାର ସଂକଳ୍ପନେଇ ଦେଶପ୍ରେମୀ ନେତା ରାମଶଙ୍କର ପୁଣି କ୍ରିୟାଶୀଳ ହୋଇ ଉଠିଛନ୍ତି । ଆଶ୍ରମରୁ ବାହାରି

ନବ ଉନ୍ମାଦନାରେ ଉଗ୍ର ହୋଇଛନ୍ତି ଜନତା ଦରବାରରେ । ଉଗ୍ରାସ୍ଥମାନ ଯୁବକ ଗିରିକିଶୋରଙ୍କ ଉଦ୍ୟମରେ ଗଠିତ ସଂଗ୍ରାମୀ ଯୁବପରିଷଦର ସହ-ଯୋଗରେ ସେ ସନ୍ଧାନିଛନ୍ତି ପ୍ରତିକାର ପନ୍ଥା । ଯୁବଶକ୍ତିକୁ କ୍ରିୟାଶୀଳ କରାଇବା ପାଇଁ ଓଡ଼ିଶାର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏ ଘୂରି ବୁଲିବାର ଯୋଜନା ପ୍ରସ୍ତୁତ । ପୁଣି ଶୁଣାଯାଇଛି ଶାନ୍ତିପୂର୍ଣ୍ଣ ବିପ୍ଳବର ପଦଧ୍ୱନି । ପରି-ସ୍ଥିତିର ପରିବର୍ତ୍ତନ ଆବଶ୍ୟକ; ପରିବର୍ତ୍ତନ ପାଇଁ ଉପଯୁକ୍ତ କର୍ମପନ୍ଥା ଆବଶ୍ୟକ । ଔପନ୍ୟାସିକଙ୍କ ଲେଖନୀରେ ରମେଶଙ୍କର ସାଜିଛନ୍ତି ଉଗ୍ରାସ୍ଥ-ତତ୍ତ୍ୱର ମୁଖ୍ୟ ପ୍ରବକ୍ତା, ନିର୍ଭୀକ ସମାଲୋଚକ ।

ଆଲୋଚ୍ୟ ଉପନ୍ୟାସର ଛନ୍ଦେ ଛନ୍ଦେ ସୂକ୍ଷ୍ମସୂଚିତ ସ୍ୱାଧୀନତା ପରବର୍ତ୍ତୀ ବହୁ ଘଟଣା ପ୍ରତି ଆଲୋଚନା ସୂତ୍ରରେ ତୀବ୍ର କଟାକ୍ଷପାତ କରାଯାଇଛି । ପ୍ରଥମେ ଯେଉଁ ଯୁବଗୋଷ୍ଠୀକୁ ଅଗ୍ରଣୀ କରି ରମେଶଙ୍କର ଆଗେଇବାର ଉପକ୍ରମ କରିଛନ୍ତି, ସେହିମାନେ ହିଁ ହୋଇଛନ୍ତି ମୃଦୁ ସମାଲୋଚନାର ପ୍ରଥମ ଶରବ୍ୟ । ଦେଶର ଭବିଷ୍ୟତ ବୋଲାଯାଉଥିବା ଯୁବଗୋଷ୍ଠୀ ପ୍ରଚଳିତ ସମାଜ ସଙ୍ଗେ ନିଜକୁ ଖାପ ଖୁଆଇ ପାରୁ ନାହିଁ । ସେମାନଙ୍କ ପାଇଁ ଅଧୁନାତନ ଯୁଗରୁଚି ସୃଷ୍ଟିର ମାଧ୍ୟମ ହୋଇଛି ଚଳଚ୍ଚିତ୍ରର ରୂପେଲି ପରଦା । ଆଖିବୁଜିଆ କଥା ମଧ୍ୟରେ ସିନେମା ଦେଖି ପୋଷାକ ବଦଳାଇ-ବାର ପ୍ରେରଣା ଅନ୍ୟତମ । ତାରକାସୁଲଭ ପୋଷାକପିନ୍ଧା ଯୁବକ ସାଧା-ରଣ ଜନତା ଦୃଷ୍ଟିରେ ଏକପ୍ରକାର ବିଦେଶୀ । ଆଶ୍ରମ ସଭାରେ ଉପସ୍ଥିତ ଚିପା ପାଇଜାମାପିନ୍ଧା ବାବୁମାନଙ୍କର କୌଣସିମତେ ଗୋଡ ଭାଙ୍ଗି ବସିବାର ଉଦ୍ୟମ ଏବଂ ତଜ୍ଜନିତ ଅସୁବିଧା ପ୍ରତି ରମେଶଙ୍କରଙ୍କର ବିଦ୍ରୂପା-ତ୍ମକ ସହାନୁଭୂତି ପ୍ରକାଶ ପାଏ । ଯୁବଶ୍ରେଣୀ ମଧ୍ୟରେ ନିଶା ବଟିକାର ପ୍ରଚଳନ, ଏକା ରମେଶଙ୍କର କାହିଁକି, ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିଙ୍କର କ୍ଷୋଭ ଜାତ କରେ । ପାଶ୍ଚାତ୍ୟ ଶିଳ୍ପ ସଭ୍ୟତା ପ୍ରଭାବିତ ଏକୁଟିଆ କାଁରି ନୀତି, ପାରମ୍ପରିକ ଏକାନ୍ନବର୍ତ୍ତୀ ନୀତି ଅନୁସୃତ ଏ ଦେଶର କୃଷି ସଭ୍ୟତା ପ୍ରଭାବିତ ସମାଜରେ ପ୍ରବେଶ କରିବାକୁ ଆରମ୍ଭ କରିବା ଦ୍ୱାରା ଆମର ପାରିବାରିକ ଜୀବନରେ ଘନଘଟାର ଆଶଙ୍କା ସୃଷ୍ଟି କରିଛି । ସମାଜ

ଭିତରେ ହଇହଲ୍ଲା ସୃଷ୍ଟି କରିବା ନିତ୍ୟ ନୈମିତ୍ତିକ ସମସ୍ୟା । ଜୋର୍‌ଜୁଲମ ଭୟ ପ୍ରଦର୍ଶନ ଦ୍ୱାରା ଚାନ୍ଦାଆଦାୟ ଆଜିକାଲି ଏକ ମାମୁଲି ଘଟଣା ହେଲାଣି ।

ସହରର ପ୍ରଗତି ଦ୍ୱାରା ଦେଶର ଅବନତି ହେଉଛି । ଗ୍ରାମ୍ୟ ଅର୍ଥନୀତିର ସ୍ଥିତି ଦୋହଲି ଯାଇଛି । ଧାନ ଥିଲା ଧନ, ଏବେ ଧାନ ପରିବର୍ତ୍ତେ ନୋଟ ହୋଇଯାଇଛି ବଡ଼ ଜିନିଷ । ଖଟିଖିଆ ମଜୁରିଆଙ୍କ ଦୁର୍ଗତି ବଢ଼ି ବଢ଼ି ଚାଲିଛି । ଅର୍ଦ୍ଧାହାର ଅନାହାରଜନିତ ଦୁରବସ୍ଥାର କରୁଣ କାହାଣୀ ଶୁଣାଯିବା ବିରଳ ନୁହେଁ । ସତେ ଯେପରି ଦେଖିବାକୁ କେହି ନାହାନ୍ତି, ଶୁଣିବାକୁ କେହି ନାହାନ୍ତି । ଭାରପ୍ରାପ୍ତ କର୍ମଚାରୀ ମହଲ ଆପତ୍ତି ଓଜର ଶୁଣିବାକୁ ନାରାଜ । ଗଣତନ୍ତ୍ରର ପ୍ରଥମ ପାବଚ୍ଛରୂପେ ଗ୍ରାମ ପଞ୍ଚାୟତ ବ୍ୟବସ୍ଥା ହେଲା ଲୋକଙ୍କର ସୁବିଧା ପାଇଁ । କିନ୍ତୁ ପଞ୍ଚାୟତ ସରପଞ୍ଚଙ୍କର ଚାଲିଲା ଓଲଟି ଜୁଲମ । ଫଳତଃ ସଂସ୍ଥା ଆଜି ନିର୍ଜୀବ ପ୍ରାୟ । ସର୍ବତ୍ର ଲାଞ୍ଚମିଛର ଦୌରାତ୍ମ୍ୟ, ଋଣ ପାଇବା ପାଇଁ ବି ଦରକାର । ପିଲାଟିକୁ ପାଠ ପଢ଼ାଇବା ପାଇଁ ଘରୋଇ ପରିଚାଳିତ ଶିକ୍ଷାନୁଷ୍ଠାନମାନଙ୍କରେ ମୋଟା ଚାନ୍ଦା ନ ଦେଲେ ନ ଚଳେ । ଏସବୁ ସଙ୍ଗକୁ ପର୍ବପର୍ବାଣିର ଅପବ୍ୟୟ, ଭ୍ରାମ୍ୟମାଣ ସିନେମା ସର୍କସାଦିର ମନମତାଣିଆ ଆକର୍ଷଣୀ ଗ୍ରାମାଞ୍ଚଳର ଅର୍ଥନୀତିକୁ ଆହୁରି ଦୁର୍ବଳ କରୁଛି । ପରିଣାମରେ ବୁଭୁକ୍ଷୁ ଜନତାର ଦାରିଦ୍ର୍ୟ ବଢ଼ୁଛି ସିନା କମୁ ନାହିଁ । ଦୁର୍ବଳ ଶ୍ରେଣୀର ଲୋକ ତଥା ଆଦିବାସୀ ଶ୍ରେଣୀର ସାମାଜିକ, ଶିକ୍ଷାଗତ ଓ ଅର୍ଥନୈତିକ ଉନ୍ନତି ପାଇଁ ବହୁ ଯୋଜନା ମାଧ୍ୟମରେ ବିପୁଳ ଅର୍ଥ ବ୍ୟୟିତ ହେଉଥିଲେ ହେଁ, ବାସ୍ତବ ଅବସ୍ଥା ଯଥା ତଥା । ଆଦିବାସୀ ଅଞ୍ଚଳରେ ପ୍ରଚଳିତ 'ଗୋତି' ପ୍ରଥାର ଚେରକୁ ଏ ଯାବତ ଉପାଡ଼ି ଦିଆଯାଇ ପାରିନାହିଁ । ସାହୁକାରଙ୍କ ଦୌରାତ୍ମ୍ୟ ଦୁର୍ବ୍ୟବହାର ଏବେ ବି ପ୍ରବଳ । ତୃଣସ୍ତୁ ପର୍ବରେ ଚେତାବନୀ ଶୁଣାଇ ଦିଆଯାଇଛି—'ଲଙ୍କାଗଡ଼କୁ ଭାଙ୍ଗିବେ ଏହି ବୁଭୁକ୍ଷୁ ଜନତା, ଆଜି ନହେଲେ କାଲି ।"

ଲୋକ ପ୍ରତିନିଧିଙ୍କ ପ୍ରତି ଦୃକ୍‌ପାତ କରିଯାଇ ସେମାନଙ୍କର ଅସହନଶୀଳତା ପାଇଁ କ୍ଷୋଭ ପ୍ରକାଶ କରାଯାଇଛି । ଗଣଠାରୁ ଦୂରେଇ ଯାଇ

ଜଣର ପୃଷ୍ଠ ପୋଷକତା କରିବା ହୋଇଛି ଯୁଗଧର୍ମ । ବଡଲୋକେ ସୁବିଧା ଆଦାୟ ପାଇଁ ଚାନ୍ଦାଦାନ ଦ୍ୱାରା କ୍ଷମତାସୀନ ପୃଷ୍ଠପୋଷକଙ୍କ ସହାୟତା ଓ ସହାନୁଭୂତି ଲାଭର ପନ୍ଥା ଅନୁସରଣ କରନ୍ତି । ସ୍ୱାଧୀନତା ସଂଗ୍ରାମୀଙ୍କ ପ୍ରତି ଅବଜ୍ଞା ଓ ହତାଦର । ସ୍ୱାଧୀନତା ସଂଗ୍ରାମ ସହିତ ସମ୍ପର୍କ ନ ଥିବା ବ୍ୟକ୍ତି ଆର୍ଥିକ ସାହାଯ୍ୟ ଉପଭୋଗ କରୁଥିବାର ସୂଚନା ଦିଆଯାଇଛି । ଏ ବିଷୟରେ ଜଣେ ପୁରାତନ କର୍ମୀ ଧନଞ୍ଜୟଙ୍କ ମୁଖରେ ଦିଆଯାଇଛି ଏକ ପ୍ରାଞ୍ଜଳ ବର୍ଣ୍ଣନା । ମତବ୍ୟକ୍ତ କରାଯାଇଛି ଯେ ଲୋକ ପ୍ରତିନିଧିମାନେ ଅସହନଶୀଳ ବା ପ୍ରତିହିଂସାଶୀଳ ନ ହୋଇ ଗଡ଼ିଆ ଘାଟର ପଥର ପରି ଧୈର୍ଯ୍ୟଶୀଳ ହେବା ଆବଶ୍ୟକ । ନିଜେ ସୁଖରେ ରହି ଅନ୍ୟକୁ ତ୍ୟାଗର ବାଣୀ ଶୁଣାଇବା ନିରର୍ଥକ ।

ଏହି ସାହିତ୍ୟ ସୃଷ୍ଟି ମଧ୍ୟରେ ବିପ୍ଳବର ମନ୍ଦ୍ରନାଦ ଛନ୍ଦେ ଛନ୍ଦେ ଝଙ୍କୃତ, କିନ୍ତୁ ରାସ୍ତାଘାଟରେ ବିପ୍ଳବର ଡାକରା ଦିଏ ନାହିଁ । ସ୍ୱଭାବତଃ ଭାବପ୍ରବଣ ଏବଂ ଉତ୍ତରଳପ୍ରାଣ ଉଦ୍ଦାମ ଯୁବଗୋଷ୍ଠୀକୁ ଅବଶେଷରେ ଟାଣି ନିଆଯାଇଛି ଅରବିନ୍ଦ ଓ ଶ୍ରୀମା'ଙ୍କ ସାଧନାପୀଠକୁ । ଯୁବନେତା ସାର-କିଶୋରଙ୍କ ମୁହଁରୁ ସ୍ୱତଃ ବାହାରି ପଡ଼େ—"ଏ ଏକ ପବିତ୍ର ଅନୁଷ୍ଠାନ" ଜୀବାନନ୍ଦଙ୍କର ଆଧ୍ୟାତ୍ମିକ ଭାବଧାରା ଉପରେ ବହୁ ଆଳାପ ଆଲୋଚନା ପରେ ସର୍ବସମ୍ମତ ସ୍ୱୀକୃତି ପ୍ରକାଶ ପାଏ ଯେ, ଆଧ୍ୟାତ୍ମିକ ଶକ୍ତି ବିନା କୌଣସି କାର୍ଯ୍ୟ ସାଧିତ ହୋଇ ପାରିବ ନାହିଁ, ବାସ, ଏତିକି ବୁଝିଗଲେ ସବୁ ସମସ୍ୟାର ସମାଧାନ ।

ଉପନ୍ୟାସଟିରେ ନାରୀ ଚରିତ୍ରର ବିଶେଷ ଭୂମିକା ପ୍ରାୟ ନାହିଁ । କେବଳ ମୃତ କମଳାକାନ୍ତଙ୍କ ନବବିବାହିତା ପତ୍ନୀ ଉର୍ବଶୀ ସହ ଯୁବକର୍ମୀ ବିନୟଙ୍କର ରେଜେଷ୍ଟ୍ରି ବିବାହ ସମ୍ପର୍କିତ ଆନୁଷଙ୍ଗିକ ଘଟଣାଟି ଏକ ଗୌଣ ପ୍ରସଙ୍ଗ ରୂପେ ଉପସ୍ଥାପିତ । ଉପନ୍ୟାସର ଗତିଶୀଳତା ପାଇଁ ପ୍ରସଙ୍ଗଟି ବିଶେଷ ଗୁରୁତ୍ୱପୂର୍ଣ୍ଣ ନ ହେଲେ ହେଁ ଭାବଗତ ବୈଶିଷ୍ଟ୍ୟ ନିହିତ । ଦେଶର ଉପସ୍ଥିତ ସମସ୍ୟାବଳୀର ବିଶ୍ଳେଷଣାତ୍ମକ ସରଳ ତରଳ ବର୍ଣ୍ଣନାରେ ନବସ୍ୱାଦର ଏହି ଉପନ୍ୟାସଟି ପୁଷ୍ଟ ଓ ପୁଷ୍କଳ । ଡଃ ମହତାବଙ୍କ

ଭଳି ଜଣେ ପ୍ରଥମ ଶ୍ରେଣୀର ଅଭିଜ୍ଞ ଜାତୀୟ ନେତା, ପୋଖତ ରାଜନୀତିଜ୍ଞ ଏବଂ ସିଦ୍ଧହସ୍ତ ପ୍ରବୀଣ ସାହିତ୍ୟିକଙ୍କ ବଳିଷ୍ଠ ଲେଖନୀରୁ 'ଭୃଗୁତୀର୍ଥ ପଦ' ପରି ସମ୍ପୂର୍ଣ୍ଣ କାଳଧର୍ମୀ ସୁପାଠ୍ୟ ସାହିତ୍ୟ କୃତିଟିଏ ଆଶା କରିବା ଆଦୌ ଅପ୍ରତ୍ୟାଶିତ ନୁହେଁ ।

ଗଣତନ୍ତ୍ର ଦେଶରେ ରାଜନୈତିକ, ଅର୍ଥନୈତିକ ତଥା ଖାଦ୍ୟ, ଶିକ୍ଷା ସମାଜ, ସଂସ୍କୃତି, ଶାସନଗତ ବିଭିନ୍ନ ସମସ୍ୟା ବିଷୟରେ ଜନପଦବାସୀ ଗଣଙ୍କୁ ସଚେତନ ଓ ଜାଗ୍ରତ ଭାବରେ ଉଦ୍‌ବୁଦ୍ଧ କରାଇ ତତ୍‌ସଂପର୍କିତ ଆଳାପ ଆଲୋଚନାରେ ସାଧାରଣ ଲୋକେ ଅଂଶଗ୍ରହଣ କରିବାର ସୁଯୋଗ ସୃଷ୍ଟି କରିବା ଯେ କୌଣସି ଜାତୀୟ ନେତାଙ୍କର ନୈତିକ କର୍ତ୍ତବ୍ୟ । ଏହି ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ମହତାବଜୀ ତାଙ୍କର ପ୍ରତିଷ୍ଠିତ 'ପ୍ରଜାତନ୍ତ୍ର' ସମ୍ବାଦପତ୍ର ପୃଷ୍ଠାରେ ବିଗତ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱ କାଳ ଧରି 'ଗାଁ ମଜଲିସ' ଶୀର୍ଷକ ବହୁସଂଖ୍ୟକ କ୍ଷୁଦ୍ରାବୟବ ଅଥଚ ବିଜ୍ଞ ବିଚାରଧାରା ପୁଷ୍ଟ ବିବିଧ ଜ୍ଞାତବ୍ୟ ତଥା ତଥ୍ୟପୂର୍ଣ୍ଣ ସୁବୋଧ ପ୍ରବନ୍ଧାବଳୀ ଧାରାବାହିକ ଭାବେ ପ୍ରକାଶ କରି ଆସୁଛନ୍ତି । ଏହି ମଜଲିସ୍ ଲେଖାଗୁଡ଼ିକର ଲୋକପ୍ରିୟତା ସୁବିଦିତ । ପରବର୍ତ୍ତୀ ଲେଖାଟି କେଉଁ ସମସ୍ୟା ଉପରେ କି ଚମତ୍କାରିତା ସୃଷ୍ଟି କରୁଛି ଆଗ୍ରହୀ ପାଠକ ଉଦ୍‌ଗ୍ରୀବ ହୋଇ ରହିଥାଏ ।

ଜନ୍ମ ତାଙ୍କର ଓଡ଼ିଶା ମାଟିରେ; ସେ ଜଣେ ଓଡ଼ିଆ ପୁଅ । ଐତିହାସିକ କାରଣରୁ ଓଡ଼ିଶା ଦେଶ ଓ ଓଡ଼ିଆ ଜାତିର ଅନଗ୍ରସରତା ଅବଶ୍ୟ ସ୍ୱୀକାର୍ଯ୍ୟ । ଅଧୁନା ଜାଗ୍ରତ ଓଡ଼ିଆ ଜାତିର ଆମ୍ଭମାନଙ୍କୁ କେହି ଉପେକ୍ଷା କଲେ, ଏ ଜାତିର ସମ୍ମାନ ପ୍ରତି ଆଘାତ ଲଗାଇଲେ, ତାର କଳା କୃଷ୍ଟି ସାହିତ୍ୟ ସଂସ୍କୃତିକୁ ଅଯଥା ଆକ୍ଷେପ କଲେ ଏବଂ ସାଧାରଣ ଜନତାକୁ ତୁଚ୍ଛ ତାଚ୍ଛଲ୍ୟ ବ୍ୟବହାର କଲେ, ଏ ଜାତି ତା' ସହିବ ନାହିଁ ବୋଲି ସେ ବଜ୍ରନିର୍ଘୋଷରେ ଘୋଷଣା କରିଥିଲେ ଏହି ମଜ୍‌ଲିସ୍‌ରେ । ସେଭଳି ଜଣେ ମହାସ୍ୱାଭିମାନୀ ନେତାଙ୍କ କଣ୍ଠରୁ ବଳିଷ୍ଠ ଯୁକ୍ତି ସହ ଉତ୍‌ଥିତ ହୋଇଥିଲା— 'ଓଡ଼ିଆଙ୍କ ପାଇଁ ଓଡ଼ିଶା (ଗାଁ ମଜଲିସ୍

ତା ୧୦-୩-୭୩) । ଏହିପରି ବହୁ ଉଦାହରଣରୁ ତାଙ୍କର ଓଡ଼ିଆ ପ୍ରୀତି ଓ ଜାତୀୟ ଦୃଷ୍ଟିକୋଣ ପ୍ରମାଣିତ ।

ସେ ଅଭିଜ୍ଞ ଓ ଅନୁଭବୀ । ନୈରାଶ୍ୟବାଦ କେବେ ତାଙ୍କର ମନୋବଳକୁ ଦୁର୍ବଳ କରି ଦେଇ ନାହିଁ । ତାଙ୍କର ଆଶାବାଦର ପ୍ରତୀକ 'ତୃତୀୟ ପର୍ବ' । ଏଜାତି ପ୍ରତି ତାଙ୍କର ଆତ୍ମ ପ୍ରତ୍ୟୟ ଜନିତ ବାର୍ତ୍ତା ହେଲା—"ଏ ଜାତି ମରିନାହିଁ, କି ମରିବ ନାହିଁ; ଏ ବଞ୍ଚିଛି ଏବଂ ବଞ୍ଚିବ; ତୃତୀୟ ପର୍ବ ଶୀଘ୍ର ଶେଷ ପାଇବ ।"

ଅଳମତି ବିସ୍ତରେଣ । ଉପସଂହାରରେ ଏତିକି କହିବା ଯେ ଉତ୍କଳର ସାମଗ୍ରୀକ ପ୍ରଗତି ପାଇଁ ଡଃ ମହତାବଙ୍କର ଲେଉଁ ଅନବଦ୍ୟ ଅବଦାନ, ତାର ଅନୁରୂପ ପ୍ରତିଦାନ ଆମ୍ଭେ କଣ ବା ଦେଇପାରିବୁଁ । କି ମାତ୍ର ସାମାନ୍ୟ ତ୍ରୁଟି ବିଚ୍ୟୁତିକୁ ଦୃଷ୍ଟି ନ ଦେଇ ସୁମହତ୍ ଗୁଣରାଶିର ସଶ୍ରଦ୍ଧ ସହୃଦୟ ଚିନ୍ତାର ଗ୍ରାହକ ହୋଇପାରିଲେ ଉତ୍କଳ ଭୂମିରେ ଏକ ସୁଦୀପ୍ତ ମୂର୍ତ୍ତିମନ୍ତ ପ୍ରତିଭାର ସାର୍ଥକ ମୂଲ୍ୟାୟନ କରାଯାଇ ପାରିବ । ତାଙ୍କର ଦୀର୍ଘଜୀବନ ଏ ଜାତିର କାମ୍ୟ ।

ଓ-ଆର୍, ୨୮୩
ଗଙ୍ଗାନଗର, ଭୁବନେଶ୍ୱର



# ଡଃ ହରେକୃଷ୍ଣ ମହତାବ ଏବଂ ମୁଁ

ଅମର ସିଂ

ଆଜି ଡଃ ହରେକୃଷ୍ଣ ମହତାବ ବୟାଅଶି ବୟସରେ ପଦାର୍ପଣ କରିବାକୁ ଯାଉଛନ୍ତି । ତାଙ୍କୁ ଏହି ସୁସ୍ଥ ଅବସ୍ଥାରେ ଦେଖି ବାସ୍ତବିକ ଖୁସି ଲାଗୁଛି । ତାଙ୍କର ମାନସିକ ଉଦ୍ଦୀପନା ଓ ଯୁବକସୁଲଭ କାର୍ଯ୍ୟଦକ୍ଷତା ଦେଖିଲେ ବିସ୍ମୟ ଲାଗେ । ଈଶ୍ୱର ତାଙ୍କୁ ଏହି ସୁସ୍ଥ ଜୀବନ ଲାଗି ଆଶୀର୍ବାଦ କରିବା ସଙ୍ଗେ ସଙ୍ଗେ ଏହି ଦେଶ ଓ ଦଶର ସେବାରେ ନିୟୋଜିତ ରହିବା ଲାଗି ତାଙ୍କୁ ଦୀର୍ଘାୟୁ ଓ କାର୍ଯ୍ୟକ୍ଷମ କରନ୍ତୁ—ତାଙ୍କର ଏ ଜୀବନ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଜନସେବା ପାଇଁ ଉତ୍ସର୍ଗୀକୃତ—ସେ ଏକାଧାରରେ କବି, ଦାର୍ଶନିକ ଓ ପଥ ପ୍ରଦର୍ଶକ—ରାଜ୍ୟର ସମସ୍ତ ରାଜନୈତିକ ଦଳକୁ ଅକାତରରେ ପରାମର୍ଶ ଦିଅନ୍ତି । ସେ ଜଣେ ସ୍ୱନାମଧନ୍ୟ ଲେଖକ, ବିଚକ୍ଷଣ ରାଜନୀତିଜ୍ଞ, ସୁଦକ୍ଷ ପ୍ରଶାସକ, ନୂତନ ରାଜଧାନୀ ଭୁବନେଶ୍ୱରର ନିର୍ମାତା ଏବଂ ଏହିପରି ଅନେକ କିଛି । ତେଣୁ ସେ ଏକ ବ୍ୟକ୍ତିବିଶେଷ ନୁହନ୍ତି ବରଂ ଏକ ଅନୁଷ୍ଠାନ । ଯଦି ମୁଁ ତାଙ୍କର ଏ ବହୁମୁଖୀ ପ୍ରତିଭାର ପର୍ଯ୍ୟାଲୋଚନା କରେ, ତେବେ ତା' ଏକ ବିରାଟ ଗ୍ରନ୍ଥ ହେବ—ସେ ଯେତେବେଳେ ପ୍ରଶାସନର ମୁଖ୍ୟ ଥିଲେ, ସେତେବେଳେ ତାଙ୍କ କର୍ମଚାରୀମାନେ ନିଜନିଜର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ବିଷୟରେ ସମ୍ପୂର୍ଣ୍ଣ ସଚେତନ ରହୁଥିଲେ । ବାସ୍ତବରେ ଏତେବଡ଼ ଗଣତାନ୍ତ୍ରିକ ଦେଶରେ ଏହା ତାଙ୍କର କିଛି କମ୍ ଗୁଣ ନ ଥିଲା । ଆମେ ଯେତେବେଳେ କାର୍ଯ୍ୟରେ ଯୋଗ ଦେଉଥାଉ, ଆମେ ନିଜନିଜର କର୍ତ୍ତବ୍ୟ ବିଷୟରେ ସମ୍ପୂର୍ଣ୍ଣ ଅବଗତ ହୋଇ ଭୟ ଓ ସଙ୍କୋଚହୀନ ଭାବରେ କର୍ମ ସମ୍ପାଦନ କରିବା ପାଇଁ ପ୍ରେରଣା ଓ ନେତୃତ୍ୱ ସେ ଦେଉଥିଲେ । ଡଃ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ କପଟି ସରକାରୀ କର୍ମଚାରୀ-

ମାନଙ୍କୁ ଉପଯୁକ୍ତ ମତ ଓ ଆଦେଶ କାର୍ଯ୍ୟକାରୀ କରିବା ପାଇଁ ସାହାଯ୍ୟ ଓ ଉତ୍ସାହ ଦେଉଥିଲେ ସେ ସମ୍ପର୍କରେ ମୁଁ କେତୋଟି ଘଟଣା ବର୍ଣ୍ଣନା କରୁଛି । ସେ କିପରି ସରକାରୀ କର୍ମଚାରୀମାନଙ୍କର ଶକ୍ତି ଓ ଶ୍ରଦ୍ଧାର ଭାଜନ ହୋଇ ପଡ଼ୁଥିଲେ ତାହା ଏକାଧିକ ଘଟଣାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଉଚ୍ଚଶିକ୍ଷା ବିଭାଗର ନିର୍ଦ୍ଦେଶକ (ଡ଼ି.ପି.ଆଇ.) ମହୋଦୟ ମୋର ଅନୁରୋଧ ରକ୍ଷା କରି ମୋ ସ୍ତ୍ରୀଙ୍କର ରାଇରଙ୍ଗପୁରକୁ ବଦଳି ଆଦେଶ ଦେଲେ । ଯା' ଫଳରେ କି ସେ (ମୋ ସ୍ତ୍ରୀ) ମୋ ସହ ଗୋଟିଏ ସ୍ଥାନରେ ରହିଲେ । ସେଠାରେ ଉଚ୍ଚ ଇଂରାଜୀ ବାଳିକା ବିଦ୍ୟାଳୟ ନ ଥିଲା, ଅଥଚ ପୋଷ୍ଟିଂ ଅର୍ଡ଼ର ଦିଆଯାଇଛି । ପ୍ରକୃତପକ୍ଷେ ସେଠାକାର ଅଭିଭାବକମାନେ ଝିଅମାନଙ୍କୁ ଶିକ୍ଷାଗ୍ରହଣ ପାଇଁ ବାଳକ ବିଦ୍ୟାଳୟକୁ ଛାଡ଼ିବା ପାଇଁ ପ୍ରସ୍ତୁତ ନ ଥିଲେ । ଏ କ୍ଷେତ୍ରରେ ମୁଁ ଉଚ୍ଚଶିକ୍ଷା ବିଭାଗ ନିର୍ଦ୍ଦେଶକଙ୍କ ନିକଟକୁ ଚିଠି ଲେଖି ତାଙ୍କର ପରାମର୍ଶ ଲୋଡ଼ିଲି । ଅଳ୍ପ କେତେଦିନ ହେବ ମୟୂରଭଞ୍ଜ ଓଡ଼ିଶାରେ ମିଶିଛି । ଏହା ସ୍ୱାଭାବିକ ଯେ ରାଇରଙ୍ଗପୁରରେ କି କି ଶିକ୍ଷା-ଅନୁଷ୍ଠାନ ଅଛି ତାର ସମ୍ପୂର୍ଣ୍ଣ ଖବର ଡ଼ି.ପି.ଆଇ. ଅଫିସ ରଖି ନ ଥିଲା କିମ୍ବା ମୟୂରଭଞ୍ଜ ଯେ ଏକ ଉନ୍ନତ ରାଜରାଜୁଡ଼ା ଶାସିତ ଅଞ୍ଚଳ ଥିଲା ଓ ରାଇରଙ୍ଗପୁର ଏକ ସବ୍‌ଡ଼ିଭିଜନର ସଦରମହକୁମା ଥିବା ସ୍ଥଳେ ସେଠାରେ ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ନ ଥିବ କିଏ ବିଶ୍ୱାସ କରିବ ?

ମେ ଯା'ହେଉ ଉଚ୍ଚଶିକ୍ଷା ବିଭାଗ ନିର୍ଦ୍ଦେଶକ ସରଳଭାବେ ଚିଠିର ଉତ୍ତର ଦେଲେ—"ମୁଁ ମୋର କର୍ତ୍ତବ୍ୟ କରିଛି– ଆପଣମାନଙ୍କର ଯାହା କରିବା କଥା କରନ୍ତୁ । ମୁଁ ବଦଳି ଆଦେଶ ଦେଇଛି— ଆପଣଙ୍କ ଉପରେ ବିଦ୍ୟାଳୟ ଖୋଲିବା ନିର୍ଭର କରୁଛି । ବର୍ତ୍ତମାନ ପାଇଁ ସେ ବାଳକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଯୋଗ ଦିଅନ୍ତୁ ।" ତେଣୁ ମୋ ସ୍ତ୍ରୀ ବାଳକ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଯୋଗ ଦେଲେ ।

ଇତ୍ୟବସରରେ ମୁଖ୍ୟମନ୍ତ୍ରୀ ଡଃ ମହତାବ ଆମର ସବ୍‌ଡ଼ିଭିଜନ ପରିଦର୍ଶନରେ ଆସିବା ପ୍ରୋଗ୍ରାମ୍ ହେଲା । ରାଇରଙ୍ଗପୁରଠାରେ ଏକ

ସାଧାରଣ ସଭାରେ ଉଦ୍‌ବୋଧନ ଦେବା କଥା । ମୁଁ ବାମନଘାଟିର ଏମ୍.ଡ଼ି.ଓ. ଥାଏ । ଆଦିବାସୀମାନେ ବାମନଘାଟୀ ସବଡ଼ିଭିଜନକୁ ଝାଡ଼ଖଣ୍ଡ ରାଜ୍ୟ ଗଠନ ଉଦ୍ଦେଶ୍ୟରେ ବହାରକୁ ନେବାପାଇଁ ନାନାପ୍ରକାର ଚେଷ୍ଟା କରିବା ସଙ୍ଗେ ସଙ୍ଗେ ଅସୁବିଧା ସୃଷ୍ଟି କରୁଥାନ୍ତି । ରାଇରଙ୍ଗପୁର ଆସିବା ବାଟରେ ବାମନଘାଟିର ଶିମିଳିପାଳ ଜଙ୍ଗଲ ପଡ଼େ । ସେବାଟେ ମୁଖ୍ୟମନ୍ତ୍ରୀ ଆସିବା ନିରାପଦ ହୋଇଥିଲେହେଁ ଏସ.ପି. ଉକ୍ତ ରାସ୍ତା ମୁଖ୍ୟମନ୍ତ୍ରୀଙ୍କ ପାଇଁ ନିରାପଦ କି ନୁହେଁ ତଦାରଖ କରିବା ପାଇଁ ଯାଇଥିଲେ । ଶିମିଳିପାଳ ଯିବାକୁ ହେଲେ ଜଣକୁ ତିରିଶ ମାଇଲ ପାର୍ବତ୍ୟ ଅଞ୍ଚଳ ଅତିକ୍ରମ କରିବାକୁ ହୁଏ । ଏସ.ପି. ଲକ୍ଷ୍ୟ କଲେ ଆଦିବାସୀମାନେ ଲୁଚିଛପି ଯାତାୟତ କରିବା ଯାନବାହନଗୁଡ଼ିକୁ ଜଗିଥାନ୍ତି । ଏହା ଥିଲ ସେତେବେଳର ଆଦିବାସୀମାନଙ୍କ ଓଡ଼ିଶା ସହ ଯୁଦ୍ଧ । ଏସ.ପି. ବସ୍‌ରେ ଆସୁଥିବା ବେଳେ ସେମାନେ ବଡ଼ବଡ଼ ପଥରଖଣ୍ଡମାନ ରାସ୍ତାରେ ବିଛେଇ ପଥରୋଧ କଲେ । ବସ୍ ଅଟକିବା ପରେ ଆଦିବାସୀମାନେ ତାଙ୍କୁ ଓହ୍ଲାଇ ଆସିଲେ । ଏହି ବସରେ ଜଣେ ମାଜିଷ୍ଟ୍ରେଟ୍ ଯାଉଥାନ୍ତି । ସେ ସେମାନଙ୍କୁ ଏପରି ଅସାମାଜିକ କାମରେ ଲିପ୍ତ ନ ରହିବାକୁ ସତର୍କ କରାଇଦେଲେ । ତା ପୂର୍ବରୁ ଆଦିବାସୀମାନେ ଜଣେ ଜଙ୍ଗଲ ବିଭାଗୀୟ ଅଧିକାରୀଙ୍କୁ ହତ୍ୟା କରିଥାନ୍ତି । ତେଣୁ ସେମାନେ ମାଜିଷ୍ଟ୍ରେଟ୍ ବା ଏସ.ପି.ଙ୍କ କଥାରେ ବିଶେଷ ପ୍ରଭାବିତ ହେଲେ ନାହିଁ । ବରଂ ସେମାନଙ୍କ ମଧ୍ୟରୁ ଜଣେ ବସ୍ ଚାଳକକୁ ଲକ୍ଷ୍ୟକରି ଶର ମାରିଲା । ସୌଭାଗ୍ୟବଶତଃ ଉକ୍ତ ଶରଟି ଡ୍ରାଇଭରକୁ ଆଘାତ ନ କରି ବସ୍ ସାମନା କାଚରେ ବାଜିଲା । ବସଯାତ୍ରୀଙ୍କ ନିରାପତ୍ତା ପାଇଁ ଏସ.ପି. ଗୁଳିଗୋଳା କରିବାକୁ ଆଦେଶ ଦେଲେ । କେତେକେ ମୃତାହତ ହେଲେ । ଜୀବନରକ୍ଷା ପାଇଁ ଛକ ହୋଇଥିବା ଆଦିବାସୀମାନେ ସ୍ଥାନ ଛାଡ଼ି ପଳେଇଗଲେ । ଶିମିଳିପାଳ ଘନଜଙ୍ଗଲରେ ଆବୃତ୍ତ । ବିଶେଷ ଜନବସତି ରାସ୍ତା ନ ଥିଲେ ମଧ୍ୟ ଆଦିବାସୀମାନେ ଜଙ୍ଗଲର ଅନ୍ଧିସନ୍ଧି ଜାଣିଥାନ୍ତି । ଏଣୁ ପଳାଇବାରେ ସେମାନଙ୍କୁ ବିଶେଷ ଅସୁବିଧା ହେଲନାହିଁ । ନିଜ ଜୀବନର ନିରାପତ୍ତା ପାଇଁ ସବ୍‌ଡ଼ିଭିଜନରେ କେତେକ ସ୍ଥାନରେ ଗୁଳିଗୋଳା କରିବାକୁ ପଡ଼ିଥିଲ । ବାସ୍ତବତା ଦୃଷ୍ଟିରୁ ବାମନଘାଟି ସବ୍‌ଡ଼ିଭିଜନର ଗୁଳିଗୋଳା

ଘଟନା ଏକ ସୁବୁଧ ଧ୍ୱଂସାତ୍ମକ ଘଟଣାର ରୂପରେଖ ନେଲା । ଏ ଘଟଣାରେ ମୁଁ ନ୍ୟାୟୋଚିତ ବିଚାର କରିଛି କି ନାହିଁ ତାର ସତ୍ୟାସତ୍ୟ ଜାଣିବା ପାଇଁ ଏକ ତଦନ୍ତ କମିସନ ବସାଇବା ପାଇଁ ଅନ୍ୟମାନେ ଗୁହାରିଥିଲେ—ଏପ୍ରକାର ଘଟଣାରେ ରାଜନୈତିକ ରଙ୍ଗ ଦିଆଗଲା । ଯା'ଫଳରେ ଆଶୁପଦକ୍ଷେପ ବିଷୟରେ ମୁଁ ହତାଶଗ୍ରସ୍ତ ହୋଇପଡ଼ିଲି । କାରଣ ମୋର ଏ ସମ୍ପର୍କରେ କିଛି ଧାରଣା ନଥିଲା କି ମୁଁ କାହାକୁ ଚିହ୍ନି ନଥିଲି ।

ଏକ ଗୁଜବ ମଧ୍ୟ ପ୍ରଚାରିତ ହୋଇଗଲା ଯେ ଏ ଗୁଳିଚାଳନା ବିଷୟରେ ସବିଶେଷ ବିବରଣୀ ଜାଣିବା ପାଇଁ ନିଜେ ମୁଖ୍ୟମନ୍ତ୍ରୀ ଆସୁଛନ୍ତି । ମୁଖ୍ୟମନ୍ତ୍ରୀ ସତକୁ ସତ ଆସିଲେ । ସେ ଯେ ଏତେ ଉଦାର, ପ୍ରଥମ ଦେଖାରେ ମୁଁ ଓ ମୋ ପରିବାରର ସଦସ୍ୟମାନେ ଭଲଅଛୁ କି ନାହିଁ ଆଗ ଜିଜ୍ଞାସା କଲେ । କଥାବାର୍ତ୍ତା ସମୟରେ ମୋ ସହ ମୋ ସ୍ତ୍ରୀ ଓ ପିଲାମାନେ ଉପସ୍ଥିତ ଥିଲେ । ଏଠାରେ ଗୋଟିଏ ବି ଇଂରାଜୀ ବାଳିକା ବିଦ୍ୟାଳୟ ନ ଥିବାରୁ ଲୋକେ କିପରି ଅସୁବିଧା ଭୋଗୁଛନ୍ତି ମୁଁ ଓ ମୋ ସ୍ତ୍ରୀ ବର୍ଣ୍ଣନା କଲୁ । ମୁଖ୍ୟମନ୍ତ୍ରୀ ହଠାତ୍ ଉପାୟ ଚିନ୍ତା କରି କହିଲେ, "ଯଦି ଆଜି ଏଠିକା ଲୋକେ ମୋତେ ପାଞ୍ଚ ହଜାର ଟଙ୍କାର ଥଳିଟିଏ ଦିଅନ୍ତି, ମୁଁ ଏଠାରେ ମଧ୍ୟ ଇଂରାଜୀ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା ବିଷୟ ଘୋଷଣା କରିବି ।" ତାପରେ ସେ ବିଦ୍ୟାଳୟ ସଂଗଠନ କାର୍ଯ୍ୟ ନେଇ ମୋତେ ଉପଦେଶ ଦେଲେ । ମୁଁ ମଧ୍ୟ ସମର୍ଥନ ଦେଇଥିଲି । ସର୍କିଟ୍ ହାଉସରୁ ଫେରିବାବେଳେ ମୁଁ ସିଧାସଳଖ କେତେ ଜଣ ବ୍ୟବସାୟୀଙ୍କୁ ଏକଜୁଟ କରି ବାଳିକା ମଧ୍ୟ ଇଂରାଜୀ ବିଦ୍ୟାଳୟ ପାଇଁ ଟ ୫୦୦୦ ଙ୍କା ସଂଗ୍ରହ ପାଇଁ ଉଦ୍ୟମ କଲି । ସେଇ ସନ୍ଧ୍ୟାରେ ମୁଖ୍ୟମନ୍ତ୍ରୀଙ୍କୁ ପାଞ୍ଚ ହଜାର ଟଙ୍କାର ଥଳିଟି ବାଳିକା ବିଦ୍ୟାଳୟ ସ୍ଥାପନ ପାଇଁ ଦେଲି । ଓଡ଼ିଶାର ମହତାବ ହେହ୍ସ ସ୍ୱରରେ ଘୋଷଣା କଲେ ଯେ ରାଇରଙ୍ଗପୁରଠାରେ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରାଯିବ । ଏଥିରେ ଜନଶିକ୍ଷା ବିଭାଗ ନିର୍ଦ୍ଦେଶକ ମହାଶୟ ଖୁସି ହେଲେ । ତାପରେ ମୋ ସ୍ତ୍ରୀ ବିଭିନ୍ନ ଅଭିଭାବକ ମାନଙ୍କୁ ତାଙ୍କ ଝିଅମାନଙ୍କୁ ବିଦ୍ୟାଳୟକୁ ପଠାଇବା ପାଇଁ ପ୍ରବର୍ତ୍ତାଇଲେ । ଏ ବିଦ୍ୟାଳୟର ଦୁଇଟି ଶ୍ରେଣୀ ତୁରନ୍ତ ଖୋଲିଗଲା । ମୁଁ ମୋ ସରକାରୀ ଘରୁ ଦୁଇଟି ଛୋଟ ଘର ଓ ବାରଣ୍ଡା ଏଥିପାଇଁ ଛାଡ଼ିଦେଲି ।

ସେବାନର ସେହି ମହତ୍ କାର୍ଯ୍ୟାଳୟ ଆଜ ସାଇରଙ୍ଗପୁର ସହରରେ ନାରୀ ଶିକ୍ଷା ପ୍ରସାରର ବିଶେଷ ସହାୟକ ହୋଇ ଉଠିଛି କହିଲେ ଅତ୍ୟୁକ୍ତି ହେବନାହିଁ । ଉକ୍ତର ହରେକୃଷ୍ଣ ମହତାବଙ୍କ ପ୍ରତ୍ୟୁତ୍ପନ୍ନମତିତାର ଏକ ନିଦର୍ଶନ ମାତ୍ର । ଡଃ ହରେକୃଷ୍ଣ ମହତାବଙ୍କ ଏପରି ବହୁ ବହୁ ଅନୁଷ୍ଠାନ ଆଶୁ ନିଷ୍ପତ୍ତି ଯୋଗୁଁ ସହର ଓ ପୁରପଲ୍ଲୀରେ ଶିକ୍ଷା ସଂସ୍କୃତିର ବିକାଶ ଘଟାଇବାରେ ସହାୟକ ହୋଇଉଠିଛି ।

ସଭାକୁ ଯିବାପୂର୍ବରୁ ମୁଖ୍ୟମନ୍ତ୍ରୀ ମୋତେ ଦେଖାକରିବାକୁ ଚାହିଁଥିଲେ । ମୁଁ ତାଙ୍କପାଖେ ପହଞ୍ଚିବାବେଳେ ସେ ଏକାକୀ ବସି ରହିଥିଲେ । ମତେଦେଖି କହିଲେ—"ବସନ୍ତୁ ଓ ସେବାନର ଗୁଳିଗୋଳନା ବିଷୟରେ କହନ୍ତୁ ।" ସିଧାସଳଖ ପ୍ରଶ୍ନ । ମୁଁ ଏଥିପାଇଁ ପ୍ରସ୍ତୁତ ନ ଥିଲି ।

"ଚିଫ୍ ସେକ୍ରେଟାରୀ ଏ ବିଷୟରେ ଆପଣଙ୍କୁ ସଂକ୍ଷେପରେ ଅବଗତ କରାଇଥିବେ ମହାଶୟ !" ମୁଁ ଉତ୍ତର ଦେଲି ।

ମୁଁ ଆପଣଙ୍କଠାରୁ ସବୁ ବିବରଣୀ ଜାଣିବାକୁ ଚାହୁଁଛି । ଆପଣ ସତ୍ୟାସତ୍ୟ କଣ କୁହନ୍ତୁ—ଏ ଗୁଳିଗୋଳନା କଣ ଏଡାଇ ଦିଆଯାଇପାରି ନଥାନ୍ତା ! କାହିଁକି ଆପଣମାନେ ଏପ୍ରକାର କାର୍ଯ୍ୟରେ ସଂପୃକ୍ତ ହେଲେ । ଏହି ଆଦିବାସୀମାନଙ୍କୁ ଘଉଡ଼ାଇବା ପାଇଁ ଗୋଟିଏଥର ଗୁଳିଗୋଳନା କଣ ଯଥେଷ୍ଟ ହୋଇ ନଥାନ୍ତା ? ଏହି ବିରାଟ ତଥା ଜଟିଳ ପ୍ରଶ୍ନ ମୋତେ ଉପସ୍ଥିତ କରି ପକେଇଲା ।

"ଜିଲ୍ଲାପାଳ ଏ ବିଷୟରେ···"

"ନା, ଆପଣଙ୍କୁ ଏ ବିଷୟରେ କହିବାକୁ ପଡ଼ିବ !" ସେ ଧମକ ଦେବା ସ୍ୱରରେ ପଚାରିଲେ ।

ତାଙ୍କର ନିର୍ଦ୍ଦେଶ ନ ମାନିବା ଛଡା ମୋର ଅନ୍ୟୋପାୟ ନଥିଲା । ମୁଁ ସତ୍ୟାସତ୍ୟ ଘଟଣା ବର୍ଣ୍ଣନା କଲି । ମୁଖ୍ୟମନ୍ତ୍ରୀ ଡଃ ମହତାବ ବେଶ

ମନଦେଇ ସବୁକଥା ଶୁଣିଲେ । ଶେଷଆଡ଼କୁ ସେ ହଠାତ୍ ଉଠିପଡ଼ି ସିଧା ସଭାସ୍ଥଳକୁ ଚାଲିଗଲେ । ସେ ଆମମାନଙ୍କୁ କିଛି କହିଲେ ନାହିଁ । ମୁଁ ଘରକୁ ଚାଲିଆସିଲି । ମୁଖ୍ୟମନ୍ତ୍ରୀ ମୋ ନାଁରେ କମିସନ ବସାଇପାରନ୍ତି ; ମୋ ଚାକିରିରେ ଅସୁବିଧା ହେବା ଆଶଙ୍କା ମୁଁ ତାଙ୍କ ଆଗରେ ପ୍ରକାଶ କଲି । ଚାକିରି ଚାଲିଗଲେ ଅବସ୍ଥା ସମ୍ଭାଳିବା ପାଇଁ ଆମ ସ୍ତ୍ରୀ ପୁରୁଷଙ୍କ ଭିତରେ ଭାବିଲେଣି ପଡ଼ିଲି । କିନ୍ତୁ ସୁଖର କଥା ମୁଖ୍ୟମନ୍ତ୍ରୀ ଘୋଷଣା କଲେ ଯେ ଗୁଳିଚାଳନା ଯଥାର୍ଥ ହୋଇଛି ଓ କମିସନ ଗଠନର ଆବଶ୍ୟକତା ନାହିଁ । ମୋ ଜୀବନର ଏକ ସଙ୍କଟସନ୍ଧିବେଳେ ଆପେ୍ୱାଜିତ ମୀମାଂସା କେବଳ ମୋତେ ନୁହେଁ, ତତ୍କାଳୀନ ସବୁଶ୍ରେଣୀ କର୍ମଚାରୀଙ୍କୁ ସରକାରୀ କାର୍ଯ୍ୟ ତୁଲାଇବା ପାଇଁ ସେ ପ୍ରେରଣା ଦେଉଥିଲେ ।

ଏହି ଘଟଣା ପରେ ମୋର ତାଙ୍କ ପ୍ରତି ସମ୍ମାନ ବୃଦ୍ଧି କଲା । ଅଫିସରମାନେ ତାଙ୍କ ପାଖରେ ନିର୍ଭୟରେ କାମ କରିବାର ବାତାବରଣ ତାଙ୍କୁ ସୁଦକ୍ଷ ଶାସକ ରୂପେ ପ୍ରତିଷ୍ଠା କରିଛି ।

ଏହା ମୋ ଜୀବନରେ ଘଟିଥିଲା । ଅନେକଙ୍କ ଜୀବନରେ ଘଟିଛି । ତେଣୁ ଉଚ୍ଚ କର୍ତ୍ତୃପକ୍ଷଙ୍କଠାରୁ ସାଧାରଣ କର୍ମଚାରୀଗୋଷ୍ଠୀ ପର୍ଯ୍ୟନ୍ତ ଡଃ ମହତାବଙ୍କ ବାହୁଚ୍ଛାୟାତଳେ ନିର୍ଭୟ ଥିଲେ । ତେଣୁ ଶାସନ କାର୍ଯ୍ୟ ସୁରୁଖୁରୁରେ ଚାଲୁଥିଲା ।

ଡଃ ମହତାବଙ୍କ ଉତ୍ତରାଧିକାରୀମାନେ ତାଙ୍କ ପଦାଙ୍କ ଅନୁସରଣ କରନ୍ତୁ, ତାଙ୍କ ଜନ୍ମତିଥିରେ ଠାକୁରଙ୍କ ପାଖରେ ମୋର ଏହାହିଁ ପ୍ରାର୍ଥନା ।

ସେ ଦୀର୍ଘଜୀବୀ ହୁଅନ୍ତୁ ।

# ଉତ୍ସାହ ଓ ପ୍ରେରଣାର ଉତ୍ସ ମହତାବ

ଫକୀର ହରିଚନ୍ଦନ

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ କାଳଧରି ମହତାବ ବାବୁଙ୍କ ମହାନ୍ ତ୍ୟାଗ, ଆଦର୍ଶ, ଦେଶସେବା ଓ ବହୁମୁଖୀ କର୍ମ ସାଧନାରେ ଆଧୁନିକ ଓଡ଼ିଶା ଉଦ୍‌ବୁଦ୍ଧ । ପ୍ରବୀଣ ଓ ବିଚକ୍ଷଣ ରାଜନୀତିଜ୍ଞ, ପ୍ରସିଦ୍ଧ ଐତିହାସିକ, ଖ୍ୟାତନାମା ସାହିତ୍ୟିକ ତଥା ସୁଦକ୍ଷ ପ୍ରଶାସକ ଭାବେ ସାରା ଭାରତରେ ତାଙ୍କର ଖ୍ୟାତି ସୁପ୍ରତିଷ୍ଠିତ । ଜଣେ କୁଶଳୀ କଳାକାର ପରି ସେ ତାଙ୍କର ଅମୃତ ଲେଖନୀ ଚଳାଇ କଠିନ ପାଷାଣବକ୍ଷରେ କମନୀୟ ସାହିତ୍ୟ-କଳାର ଅନବଦ୍ୟ କୋଣାର୍କ ସୃଷ୍ଟି କରିଛନ୍ତି; ଜଣେ କୃତୀ କୁମ୍ଭକାର ଭଳି ସେ ଅସଂଖ୍ୟ ଅସନା ମାଟିପିଣ୍ଡୁଳା ଭିତରୁ ତାଙ୍କ କର୍ମ-ଚକ୍ରରେ ଗଢ଼ି ଚାଲିଛନ୍ତି ଶତ ଶତ ନିଖୁଣ କୁମ୍ଭର ସରସ ସୁନ୍ଦର ସମ୍ଭାର । ତାଙ୍କ ପ୍ରତିଭାର ମଳୟ ସ୍ପର୍ଶରେ କେତେ ସୌରଭଭରା କୋମଳକଳିକା ବିକଶିତ ହୋଇ ଫୁଟି ଉଠିଛି; ତାଙ୍କ ସ୍ନେହ ଓ କରୁଣାର ସ୍ୱଚ୍ଛ ବାରିଧାରା କେତେ ମରୁପଥରେ ସବୁଜ ସୁନ୍ଦର ଜୀବନ ତରଙ୍ଗ ଖେଳାଇ ଦେଇଛି—ଆଉ ଏସବୁ ଏକାଧାରରେ ମିଳିତହୋଇ ଅର୍ଦ୍ଧ ଶତାବ୍ଦୀରୁ ଅଧିକକାଳଧରି ଏ ଜାତିର, ଏ ସମାଜର ପ୍ରାଣକେନ୍ଦ୍ର-ନିଃସୃତ ନିସ୍ୟନ୍ଦିନୀରୂପେ ଅବାଧିତ ଗତିରେ ବହି ଚାଲିଛି ସହସ୍ର ବାଧାବନ୍ଧର ମେରୁପର୍ବତକୁ ତୃଣଖଣ୍ଡତୁଲ୍ୟ ଭସାଇ ନେଇ । ସର୍ବୋପରି ତାଙ୍କର ଅନମନୀୟ ସ୍ୱାଧୀନ ଚିନ୍ତାଧାରା ଓ ବଳିଷ୍ଠ ବ୍ୟକ୍ତିତ୍ୱ ଏକ ସୁମହାନ୍ ଦୀପ୍ତିମନ୍ତ ଆଲୋକ ସ୍ତମ୍ଭପରି ଜାତୀୟ ଜୀବନ ମାର୍ଗକୁ ଉଦ୍‌ଭାସିତ କରି ସମ୍ୟକ୍ ଦିଗ୍‌ଦର୍ଶନ ଦେଇଚାଲିଛି । ଘଟଣା ବହୁଳ ତାଙ୍କର ଦୀର୍ଘ କର୍ମମୟ ଜୀବନର ଶ୍ରେଷ୍ଠବେଳ 'ବହୁ ଘଟଣା ସହିତ ବହୁବ୍ୟକ୍ତି ବହୁଭାବେ ସମ୍ପୃକ୍ତ ଏବଂ ସେ ସବୁଘଟଣାର ଅବତାରଣାହିଁ ମହତାବବାବୁଙ୍କ ଜୀବନ ପ୍ରବାହର ପ୍ରକୃଷ୍ଟ ଇତିହାସ । ଆଜି ତାଙ୍କର ୮୨ତମ ଜନ୍ମତିଥିରେ ଏହିପରି ଏକ ଛୋଟ ଅଥଚ ଗୁରୁତ୍ୱପୂର୍ଣ୍ଣ ଘଟଣାର ସ୍ମୃତି ମୋ ମନରେ ସ୍ୱତଃ

ଜାଗ୍ରତ ହୋଇ ଉଠୁଛି— ଯାହା ଫଳରେ କ ୮୪ ବର୍ଷତଳେ ତାଙ୍କର ଅସାମାନ୍ୟ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରତି ମୁଁ ଗଭୀର ଭାବେ ଆକୃଷ୍ଟ ହୋଇଥିଲି ।

୧୯୪୭ ମସିହା କଥା । ମୁଁ ସେତେବେଳକୁ ପୁରୀ କଲେଜର ଛାତ୍ର ଆଉ ମହତାବ ବାବୁ ଓଡ଼ିଶାର 'ପ୍ରଧାନମନ୍ତ୍ରୀ' (Premier) ଭାବେ ପ୍ରାକ୍ ସ୍ୱାଧୀନତା-ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରିମଣ୍ଡଳ ଗଢ଼ି ସର୍ବତ୍ର ସମ୍ବର୍ଦ୍ଧିତ ହେଉଥାନ୍ତି । ସେ ବର୍ଷ ଆମେ ପୁରୀକଲେଜରେ ନୂଆକରି ଛାତ୍ର ୟୁନିଅନ୍ ସଂଗଠନ ଗଢ଼ିଥିଲୁ ଏବଂ ସେହି ସଂଗଠନର ସର୍ବପ୍ରଥମ ନିର୍ବାଚିତ ସମ୍ପାଦକଭାବେ ପୁରୀ କଲେଜ ୟୁନିଅନ୍‌କୁ ଉଦ୍‌ଘାଟନ କରିବାପାଇଁ ମୁଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ମହତାବବାବୁଙ୍କୁ ନିମନ୍ତ୍ରଣ କରିଥିଲେ । ମହତାବବାବୁ ଆମମାନଙ୍କ ନିମନ୍ତ୍ରଣ ରକ୍ଷାକରି କଲେଜ ୟୁନିଅନ୍ ଉଦ୍‌ଘାଟନ କରିଥିଲେ । ତତ୍‌କାଳୀନ ଅଧ୍ୟକ୍ଷ ୮ ଶ୍ରୀଯୁକ୍ତ ଗିରିଜାଶଙ୍କର ରାୟଙ୍କ ପରାମର୍ଶକ୍ରମେ ସମ୍ପାଦକୀୟ ବିବରଣୀରେ ପୁରୀ କଲେଜରେ ଛାତ୍ରାବାସ ନଥିବାରୁ ସରକାରଙ୍କ ତରଫରୁ 'ଦିଉଡୋଟାରେ ଗୋଟିଏ ନୂତନ ଛାତ୍ରାବାସ ନିର୍ମାଣ କରିବାପାଇଁ ମହତାବବାବୁଙ୍କୁ ଅନୁରୋଧ କରାଯାଇଥିଲା । ମହତାବବାବୁ ତାର ଉତ୍ତରରେ କହିଲେ ଯେ ଛାତ୍ରାବାସପାଇଁ ଜମି କିଣି ଅର୍ଥ ମଞ୍ଜୁର କରି ଛାତ୍ରାବାସଟିଏ ନିର୍ମାଣ କରିବାପାଇଁ ହୁଏତ ଦୁଇତିନିବର୍ଷ ବା ଅଧିକ କାଳ ଲାଗିବ, ସେ ଯାଏଁ ଛାତ୍ରମାନେ ରହିବେ କେଉଁଠି ? ତେଣୁ ଛାତ୍ରାବାସ ନିର୍ମାଣ ପ୍ରଶ୍ନ ନଉଠାଇ କେଉଁଠି ଛାତ୍ରାବାସଉପଯୋଗୀ ଘର ଥିଲେ ତାକୁ ଭଡାସୂତ୍ରରେ ଅଥବା ଖରିଦ ସୂତ୍ରରେ ନେଇ ଛାତ୍ରାବାସଟିଏ ଖୋଲିଦେବା ଉଚିତ; ଏଥିପାଇଁ ଯାହା ଅର୍ଥ ଆବଶ୍ୟକ ସରକାର ଅବଶ୍ୟ ବହନ କରିବେ । ଏପରି ଘରଟିଏ ସନ୍ଧାନ ନେଇ ଯୋଗାଡ କରିବାକୁ ସେ ତାଙ୍କ ବକ୍ତୃତାରେ କେବଳ ଆମମାନଙ୍କୁ ଅନୁରୋଧ କରିନଥିଲେ; ଉଦ୍‌ଘାଟନଉତ୍ସବ ପରେ ମୋତେ ଫରେଷ୍ଟ ବଙ୍ଗଳାକୁ ଡକାଇନେଇ ଘରଟିଏ ବୁଝି ତାଙ୍କୁ ତୁରନ୍ତ ଜଣାଇବାକୁ ମଧ୍ୟ କହିଥିଲେ । ଏଥିରେ ମୁଁ ଅଧିକ ଉତ୍ସାହିତ ହୋଇ ସହପାଠୀ ବନ୍ଧୁମାନଙ୍କସହ ଘର ଖୋଜିବାରେ ଲାଗିପଡ଼ିଲି ଏବଂ ଜନୈକ ସହପାଠୀ ଶ୍ରୀ କମଳେଶ ମିତ୍ର (ବକୁଦା)ଙ୍କ ଠାରୁ

ସେତେବେଳେ ଖାଲି ପଡ଼ିଥିବା ବିରାଟ ପାଥରପୁଣ୍ଡି କୋଠାର ସନ୍ଧାନ ପାଇ କଟକ ଯାଇ ମହତାବବାବୁଙ୍କୁ ଜଣାଇଲି । ସେତେବେଳେ ଓଡ଼ିଶାର ରାଜଧାନୀ କଟକ ଥିଲା ଓ କେତେକ ୟୁରୋପୀୟ ଆଇ.ସି.ଏସ୍. ପାସ୍ କରିଥିବା ହାକିମସବୁ ବିଭାଗୀୟ ମୁଖ୍ୟ ବା ଶାସନ ସଚିବ ଥିଲେ । ପାଥରପୁଣ୍ଡି କୋଠାଟିକୁ ଓଡ଼ିଶା ସରକାର ଜଣେ ଅଣଓଡ଼ିଆ ମାଲିକଙ୍କ- ଠାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ସୈନ୍ୟମାନଙ୍କର ସାମୟିକ ବିଶ୍ରାମ ଓ ଅବସର ବିନୋଦନ ପାଇଁ ମାସିକ ୫୭୦୦ (ସାତଶହ ଟଙ୍କା)ରେ ଭଡ଼ା ନେଇଥିଲେ ଏବଂ ଯୁଦ୍ଧପରେ ଏହି ଫାଙ୍କା କୋଠାଟିକୁ 'ଯୁଦ୍ଧୋତ୍ତର ପୁନର୍ଗଠନ' ବିଭାଗ ଅଧୀନରେ ସେହି ପରିମାଣ ଭଡ଼ାଦେଇ ପକାଇ ରଖିଥିଲେ । ମୁଁ ଏହି ଘର ସମ୍ପର୍କରେ ପ୍ରଥମଥର କଟକ ଯାଇ ମହତାବବାବୁଙ୍କୁ ଖବର ଦେବା ସଙ୍ଗେ ସଙ୍ଗେ ସେ ସେତେବେଳର ଶିକ୍ଷାମନ୍ତ୍ରୀ ସ୍ୱର୍ଗୀୟ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଉପରେ ଏହି ଘରଟିକୁ ଛାତ୍ରା- ବାସପାଇଁ ଛାଡ଼ଦେବାକୁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିବାର ଦାୟିତ୍ୱ ନ୍ୟସ୍ତ କରିଥିଲେ । କିନ୍ତୁ ପଣ୍ଡିତ ମହାଶୟ ୩ ଥର ଟେଲିଫୋନ୍‌ରେ ଏବଂ ଶେଷରେ ଥରେ ଲେଖିକରି ଯୁଦ୍ଧୋତ୍ତର ପୁନର୍ଗଠନ ବିଭାଗ ଦାୟିତ୍ୱରେ ଥିବା ଗୋରା ସେକ୍ରେଟେରୀଙ୍କୁ ଅନୁରୋଧ କରିବାସତ୍ତ୍ୱେ ସେ କୌଣସି କଥା ନଶୁଣି ସେ ଘର ଶିକ୍ଷାବିଭାଗକୁ ଛାଡ଼ିଦିଆଯାଇ ପାରିବନାହିଁ ବୋଲି କହିବାରୁ ଶିକ୍ଷାମନ୍ତ୍ରୀ ମହତାବବାବୁଙ୍କୁ ସମସ୍ତ ଘଟଣା ଜଣାଇ ନିଜର ଅସହାୟତା ପ୍ରକାଶ କରି ଚିଠି ଲେଖିଲେ ଏବଂ ସେ ଚିଠି ଖଣ୍ଡି ଧରି ମୁଁ ଯାଇ ମହତାବବାବୁଙ୍କୁ ସାକ୍ଷାତ୍ କଲି । ମହତାବବାବୁ ଚିଠିପଢି ଏବଂ ମୋଠାରୁ ସମସ୍ତ ଘଟଣା ଶୁଣି ସାହେବଙ୍କୁ ଫୋନ୍‌ରେ ପାଥରପୁଣ୍ଡି ଘର ସମ୍ପର୍କୀୟ ଫାଇଲ୍ ଧରି ଆସିବାକୁ କହିଲେ । ସାହେବ ଆସିବାରେ କିଛି ସମୟ ଡେରିହେବାରେ ଆଉଥରେ ଫୋନ୍‌ରେ ଡାକିଲେ ଏବଂ ସେଥର ମଧ୍ୟ ଅଧିକ ବିଳମ୍ବ ହେବାରୁ ଚପରାଶିକୁ ଡାକି କହିଲେ "ଯାଅ ସେ ସାହେବକୁ କହ ସଙ୍ଗେ ସଙ୍ଗେ ସେ ଫାଇଲ୍‌ଧରି ଆସିବ" । ଚପରାଶି ଆଦେଶପାଇ ଚାଲି ଗଲା ଏବଂ ଅଳ୍ପ ସମୟଭିତରେ ଫେରିଆସି ସାହେବ ଅସୁସ୍ଥ ବୋଲି ଜଣାଇଲା । ଚପରାଶି ପଛେ ପଛେ ଗୋରା ସାହେବ ବାଁ ହାତରେ ଫାଇଲ-

ଧରି ସଦର୍ପେ ଆସି ମହନ୍ତାବବାବୁଙ୍କ ଟେବୁଲ ପାଖେ ଠିଆ ହୋଇରହିଲେ । ସାମନାରେ ଗୋଟିଏ ଚୌକିରେ ମୁଁ ବସିଥାଏ ଏବଂ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଭଳି ଶିକ୍ଷାମନ୍ତ୍ରୀଙ୍କୁ ବେଖାତିର କରିଥିବା ଗୋବରାସାହେବ ମହନ୍ତାବ ବାବୁଙ୍କ ଦୁଇଥର ଫୋନ୍ ଡାକରାକୁ ବେଖାତିର କରି ଦେଇଥିବାରୁ ସେ ମନରେ ଯେଉଁ ନୈରାଶ୍ୟ ଓ କ୍ରୋଧ ଜାତ ହୋଇଥିଲା, ଟେବୁଲ ପାଖରେ ଆଉ କେତେଖଣ୍ଡ ଖାଲି ଚୌକି ଥିଲେ ମଧ୍ୟ ସାହେବ ବସିନପାରି ଠିଆ-ହୋଇ ରହିଥିବାରୁ ଏବଂ ମହନ୍ତାବବାବୁ ସାହେବପ୍ରତି ସାମାନ୍ୟ ଯେ ଦୃଷ୍ଟି-ପାତ ନକରି ପୂର୍ଣ୍ଣ ଗାମ୍ଭୀର୍ଯ୍ୟ ସହିତ ନିଜ ଟେବୁଲ ଉପରେ ଫାଇଲ୍‌କାମ କରୁଥିବାରୁ ମୁଁ ବେଶ ଯୁବସୁଲଭ ସନ୍ତୋଷ ଉପଭୋଗ କରିବାକୁ ଲାଗିଲି । କିଛି ସମୟପରେ ମହନ୍ତାବବାବୁ ସାହେବ ଆଡକୁ ଚାହିଁଲେ ଏବଂ ପାଥର ପୁରୀ ଘର କେଉଁ ଅବସ୍ଥାରେ ଅଛି— ତାହା ପୁରୀକଲେଜ ଛାତ୍ରବାସପାଇଁ ଛାଡ଼ିଦିଆ ଯାଇପାରିବକି ନାହିଁ ଜାଣିବାକୁ ଚାହିଁଲେ । ସେତେବେଳକୁ ସାହେବ ଯେ ମନେ ମନେ ଖୁବ୍ ବିରକ୍ତ ହୋଇଯାଇଥିଲେ ତାହା ତାଙ୍କ ଚେହେରାରୁ ଜଣାପଡ଼ୁଥିଲା । ତାଙ୍କ ଧୋବ ଫର ଫର ମୁହଁଟା ଟୁକ ଟୁକ ପାଚିଲା ଟମାଟୋ ପରି ଲାଲ ହୋଇ ଆସିଥିଲା ଏବଂ ମହନ୍ତାବବାବୁଙ୍କ ପ୍ରଶ୍ନ ନ ସରୁଣୁ ସେ ଅନର୍ଗଳ ଇଂରାଜୀରେ କହିଗଲେ, "ପାଥରପୁରୀ କୋଠାକୁ ମାସିକ ଟ ୨°°ଙ୍କା ଭଡ଼ାରେ ଯୁଦ୍ଧୋତ୍ତର ପୁନର୍ଗଠନ କାର୍ଯ୍ୟ ପାଇଁ ନିଆ-ଯାଇଛି— ଏହାକୁ ଶିକ୍ଷାବିଭାଗକୁ ଦିଆଯାଇପାରିନାହିଁ ବୋଲି ମୁଁ ଆଗରୁ ଶିକ୍ଷାମନ୍ତ୍ରୀଙ୍କୁ ଜଣାଇ ଦେଇ ସାରିଛି ।" ମହନ୍ତାବବାବୁ କଲମଟା ଥୋଇ ଦେଇ ଟେବୁଲ ଉପରେ ଏକ ଚାପଡ଼ା ପିଟି ଖୁବ୍ କଡ଼ା ଆଉ ଚଡ଼ା ଗଳାରେ କହିଲେ, "ମୁଁ ଜାଣିବାକୁ ଚାହୁଁଛି— ପୁରୀ ସମୁଦ୍ରକୂଳରେ କି ଯୁଦ୍ଧୋତ୍ତର ପୁନର୍ଗଠନ କାର୍ଯ୍ୟପାଇଁ ସେ କୋଠାଟାକୁ ରାଜ୍ୟର ରାଜ-କୋଷରୁ ବାର୍ଷିକ ପ୍ରାୟ ଦଶହଜାର ଟଙ୍କା ବ୍ୟୟକରି ଗତ ୪ ବର୍ଷରେ ଫାଙ୍କା ପକାଇ ରଖାଯାଇଛି ? ଏପରି କିଛି ନିର୍ଦ୍ଦିଷ୍ଟ ଯୋଜନା ଅଛି କି ଯାହା ପାଇଁ ରାଜକୋଷରୁ ଏତେ ଅର୍ଥ ଖର୍ଚ୍ଚ କରାଯାଉଛି ?" ସାହେବ ବିବ୍ରତ ହୋଇ ପଡ଼ିଲା ଭଳି ମନେହେଲେ ଲାଗିଲା । ତାଙ୍କ ପାଟିରୁ ସ୍ପଷ୍ଟଉତ୍ତର ଶୁଣାଗଲା ନାହିଁ । କେବଳ ଟିକିଏ ଅଟକି ଅଟକି "ନୋ ସାର୍" କହୁ କହୁ ପୁଣି ଅଧିକ

କର୍ତ୍ତାଙ୍କଠାରେ ନିର୍ଦ୍ଦେଶ ଆସିଲା—"ମୁସଲମାନମାନଙ୍କ ଅବସର ବିନୋଦନ ପାଇଁ ଓଡ଼ିଶା ରାଜକୋଷରୁ ଆଉ ଅଯଥା ଏତେ ଅର୍ଥ ବରବାଦ୍ କରାଯିବ ନାହିଁ । ଛାତ୍ରାବାସ ଅଭାବରୁ ଆମ ପିଲାଏ ପାଠପଢ଼ି ପାରୁନାହାନ୍ତି । ଯେତେ ଶୀଘ୍ର ସମ୍ଭବ ପାନ୍ଥଶାଳା ଘରକୁ ଭଡ଼ାସୂତ୍ରରେ ହେଉ ବା ଖରିଦସୂତ୍ରେ ହେଉ ପୁରୀକଲେଜ ଛାତ୍ରବାସପାଇଁ ଶିକ୍ଷାବିଭାଗ ଦାୟିତ୍ୱରେ ଛାଡ଼ିଦେବାର ବ୍ୟବସ୍ଥା କର ।"

ସାହେବ ତତ୍‌କ୍ଷଣାତ୍ ସୁନାପିଲାଟି ପରି "ୟେସ୍ ସାର୍" କହି ସେହି ବଳିଷ୍ଠ ବ୍ୟକ୍ତିତ୍ୱପ୍ରତି ସସମ୍ମାନେ ମୁଣ୍ଡ ନୁଆଁଇ ଫାଇଲ ଧରି ଚାଲିଗଲେ । ମହତାବବାବୁଙ୍କର ମହାନ ବ୍ୟକ୍ତିତ୍ୱପ୍ରତି ମୋର ଯୁବ ହୃଦୟ ସେଦିନ ଗଭୀରଭାବେ ଆକୃଷ୍ଟ ହୋଇଯାଇଥିଲା । "ତୁମେ ଏଥର ଯାଅ ହରିଚନ୍ଦନ, ଆଉ କିଛି ଅସୁବିଧା ହେଲେ ମୋତେ ଜଣାଉଥିବ ।" ମହତାବବାବୁଙ୍କର ଏ ଆଶ୍ୱାସନା ବାଣୀ ସେଦିନ ମୋ ପାଇଁ ଥିଲା ଏକ ବ୍ୟକ୍ତିତ୍ୱର ଆକର୍ଷଣର ଉତ୍ସ । ଆଜି ସେହି ବ୍ୟକ୍ତିତ୍ୱପ୍ରତି ଗଭୀର ଭକ୍ତି-ନୈବେଦ୍ୟ ଅର୍ପଣକରି ଭଗବାନଙ୍କୁ ପ୍ରାର୍ଥନା କରୁଛି— ମହତାବବାବୁ ଶତାୟୁ ହୋଇ ଆଉ ଅନେକ ଅନେକ ସ୍ନେହ, ସଦିଚ୍ଛା ଓ ଆଶୀର୍ବାଦ ପ୍ରଦାନକରି ଏ ଜାତିକୁ ଉଦ୍‌ବୁଦ୍ଧ ଓ ସମୃଦ୍ଧ କରୁଥାନ୍ତୁ !

କଣାସ

ପୁରୀ



# ବିଶାଳ ଉତ୍କଳ ନିର୍ମାତା ମହତାବ

ସୁରେନ୍ଦ୍ରନାଥ ଶର୍ମା

ମହତାବ କେବଳ ମାତ୍ର ଜଣେ ବ୍ୟକ୍ତି ବିଶେଷ ନୁହନ୍ତି ; ସେ ଗୋଟିଏ ଅନବଦ୍ୟ ଅପରିସୀମ ଅନୁଷ୍ଠାନ । ତାଙ୍କ ସମ୍ମୁଖରେ ଓ ପୃଷ୍ଠଭାଗରେ ଗୋଟିଏ ବିରାଟ ଇତିହାସ ଖୋଲି ରହିଅଛି । ଇତିହାସର ପ୍ରତ୍ୟେକ ପୃଷ୍ଠାରେ ତାଙ୍କର ରାଜନୈତିକ ଓ ଶାସନତାନ୍ତ୍ରିକ ବୁଦ୍ଧି, ସମାଜସେବା, ଦେଶର ବିକାଶ ଓ ସମୃଦ୍ଧି ଲାଗି ବହୁବିଧ ଯୋଜନାର ପରିକଳ୍ପନା ; ସମାଜ ସାହିତ୍ୟ ଓ ସଂସ୍କୃତିର ଉନ୍ନତିକଳ୍ପେ ଆପ୍ରାଣ ଉଦ୍ୟମ ସୁନ୍ଦରଭାବରେ ଚିତ୍ରିତ ହୋଇଛି । ନିଜେ କବି, ଔପନ୍ୟାସିକ, ଗାଳ୍ପିକ, ଐତିହାସିକ, ପ୍ରତ୍ନତାତ୍ତ୍ୱିକ, ସାମ୍ବାଦିକ ଓ ରାଜନୀତିକ ଉପଦେଷ୍ଟା ହୋଇ ଯୁବକ ପ୍ରାଣରେ ଉଦ୍ଦାମତା ଖେଳାଇଦେଇପାରିଛନ୍ତି । ପ୍ରୌଢ଼ର ଜ୍ଞାନ ଓ ଚତୁରତା ଓ ବୃଦ୍ଧର ଉପଦେଶ ଓ ନୀରବସାଧନାର ଏକତ୍ର ସମାହିତ ପ୍ରତିମୂର୍ତ୍ତି ଭାବେ ବିଦ୍ୟମାନ ରହି ସର୍ବସ୍ତର ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଅଛନ୍ତି । ସର୍ବୋପରି ବହୁ ବର୍ଷ ଧରି ପରାଧୀନ ଦେଶର ସ୍ୱାଧୀନତାଲାଗି ଭାରତର ଖ୍ୟାତିମନ୍ତ ତାରକାମାନଙ୍କ ଗହଣରେ ବୀର ସୈନିକଭାବେ ଦଣ୍ଡାୟମାନ ରହି ସଂଗ୍ରାମ ଚଳାଇ ଅଛନ୍ତି । ବିଖଣ୍ଡିତ ଉତ୍କଳର ଏକତ୍ରୀକରଣ ସମ୍ଭବପର ହୋଇପାରିଛି କେବଳମାତ୍ର ତାଙ୍କର ଦୀର୍ଘ ଯୋଜନା, ଉଦ୍ୟମ, ପ୍ରଜ୍ଞା, ବାଗ୍ମୀତା ଓ ଦୂରଦୃଷ୍ଟି ଯୋଗୁଁ । ଦୀର୍ଘ ପାଞ୍ଚଶହ ବର୍ଷଧରି ବିଶାଳ ଉତ୍କଳ ଭୂଖଣ୍ଡ ଖଣ୍ଡବିଖଣ୍ଡିତ ହୋଇ ଇତଃସ୍ତତ ପଡ଼ିରହିଥିଲା । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଉତ୍କଳଭୂମିର ଏକତ୍ରୀକରଣର ଉଦ୍ୟମ ଓ ଆନ୍ଦୋଳନ ଭିନ୍ନଭିନ୍ନ ସମୟରେ କେବଳ ଆଶା ଓ ହତାଶା ମଧ୍ୟରେ ଗତି କରୁଥାଏ । ବିଶାଳ ଉତ୍କଳର ଚିତ୍ର ମଧ୍ୟେ ମଧ୍ୟେ ଦେଖା ଦେଇ ପୁଣି ଲିଭିଯାଉଥାଏ । କାଳକ୍ରମେ ସ୍ୱତନ୍ତ୍ର ଉତ୍କଳର ଆବିର୍ଭାବ ସମ୍ଭବପର ହେଲା ୧୯୩୬ ମସିହାରେ ପୁଣ୍ୟଶ୍ଳୋକ

ପାରଳାଖେମଣ୍ଡି ମହାରାଜ ଗଜପତି କୃଷ୍ଣଚନ୍ଦ୍ର ଓ କେତେକ ଉଦାରମନା ଉତ୍କଳୀୟଙ୍କ ପ୍ରଚେଷ୍ଟାରେ, କିନ୍ତୁ ଏହା ବିଶାଳ ଉତ୍କଳ ନୁହେଁ । ରାଜନୈତିକ କାରଣ ଦୃଷ୍ଟିରୁ ଉତ୍କଳର ଆଭ୍ୟନ୍ତରୀଣ ଖଣ୍ଡମାନ ଭିନ୍ନଭିନ୍ନ ଶାସନାଧୀନରେ ରହି ଦେଶର ବିକାଶ ଓ ଐକ୍ୟକୁ ବ୍ୟାହତ କରିଥିଲା । ଏହି ଖଣ୍ଡମାନଙ୍କୁ ଏକତ୍ର କରି ବିଶାଳ ଉତ୍କଳ ଗଢ଼ିବାର ପ୍ରଚେଷ୍ଟା ଖେଳି ଉଠିଲା ମହତାବଙ୍କ ମାନସପଟରେ, କିନ୍ତୁ ସେହି ଚେଷ୍ଟା ରୂପାୟନ କରିବା ଦୁରୂହ ବ୍ୟାପାର ଥିଲା । କେବଳ ଓଡ଼ିଶା ନୁହେଁ, ଭାରତର ପ୍ରାୟ ସମସ୍ତ ପ୍ରଦେଶରେ ଏ ପ୍ରକାର ଅବସ୍ଥା ଊଣାଅଧିକେ ରହିଥିଲା । ବିଶେଷଭାବରେ ଓଡ଼ିଶା, ମଧ୍ୟପ୍ରଦେଶ, ରାଜସ୍ଥାନ ଓ ଗୁଜରାଟରେ ଛୋଟବଡ଼ ଅନେକ ଦେଶୀୟ କରଦ ରାଜ୍ୟ ରାଜାମାନଙ୍କ ଶାସନାଧୀନରେ ରହି ଜାତି ଓ ଦେଶର ଅଖଣ୍ଡତ୍ୱକୁ ବାଧା ଦେଉଥିଲା । ଏହି ଅଖଣ୍ଡତ୍ୱ ଆଣିବା ନିମନ୍ତେ କରଦରାଜ୍ୟମାନଙ୍କୁ ବିଭିନ୍ନ ପ୍ରଦେଶ ସଙ୍ଗରେ ମିଶାଇବାକୁ ହେବ ଓ ତନ୍ନିମନ୍ତେ ସେହି ରାଜ୍ୟମାନଙ୍କରେ ପ୍ରତିଷ୍ଠିତ ଥିବା ରାଜତନ୍ତ୍ର ଶାସନର ବିଲୋପସାଧନ ସର୍ବାଦୌ କରଣୀୟ । ଏହି ଚିନ୍ତା ସେତିକିବେଳେ ପ୍ରବେଶ କଲା ଲୌହମାନବ ପଟେଲ ଓ ମହତାବଙ୍କ ଚିନ୍ତାରେ । କେବଳ ଏ ଦୁହିଁଙ୍କର ଚେଷ୍ଟାରେ ଏହା ସମ୍ଭବପର ହୋଇପାରିଅଛି ।

ଯୋଜନା ଓ ଚିନ୍ତା ଠିକ୍ ହେଲା ସତ୍ୟ, କିନ୍ତୁ ଏହାର କାର୍ଯ୍ୟକାରିତା ଏକ ଦୁରୂହବ୍ୟାପାର । ଭାରତରେ ପ୍ରାୟ ୬୦୦ରୁ ଊର୍ଦ୍ଧ୍ୱ ରାଜ୍ୟ କରଦ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ୮୩,୦୦୦ ବର୍ଗମାଇଲ ବ୍ୟାପୀ ବିଶାଳ ହାଇଦ୍ରାବାଦ ରାଜ୍ୟ ପ୍ରବଳ ପ୍ରତାପ ନିଜାମଙ୍କ ଦ୍ୱାରା ଶାସିତ ହେଉଥିଲା ଓ ଭାରତର ଶିଖର ଦେଶରେ ସେହି ୮୩,୦୦୦ ବର୍ଗମାଇଲ ବିଶିଷ୍ଟ ଭୂସ୍ୱର୍ଗ କାଶ୍ମୀର ରାଜ୍ୟ ମହାରାଜାଙ୍କ ଅଧୀନରେ ଥିଲା । ଗୁଜରାଟରେ କେତେ ଏକର ବିଶିଷ୍ଟ ଅନେକ ରାଜ୍ୟ ସବରକନ୍ଥା ନାମରେ ପରିଚିତ ହୋଇ ବିଭିନ୍ନ ରାଜାଙ୍କର ଅଧୀନରେ ଥିଲା । କହିବା ବାହୁଲ୍ୟ ମାତ୍ର ଯେ ଜଣେ ଜଣେ ରାଜାଙ୍କ ଅଧୀନରେ କେବଳମାତ୍ର ୨।୩ଟି ଗ୍ରାମ ମାତ୍ର ରହି ଗୋଟିଏ ଗୋଟିଏ କରଦରାଜ୍ୟରୂପେ ପରିଗଣିତ ହେଉଥିଲା । ଓଡ଼ିଶାରେ

୨୯୫ଟି ଓଡ଼ିଆ ଭାଷା କରଦ ରାଜ୍ୟ ଭାରତ ସମ୍ରାଟଙ୍କ ଅଧୀନରେ ରହି ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ରାଜ୍ୟମାନ ୪୦୦୦ ବର୍ଗମାଇଲ ବିଶିଷ୍ଟ ମୟୂରଭଞ୍ଜଠାରୁ ଆରମ୍ଭକରି ୩୭ ବର୍ଗମାଇଲ ବିଶିଷ୍ଟ ତିଗିରିଆ ପର୍ଯ୍ୟନ୍ତ ସ୍ୱତନ୍ତ୍ର ରାଜ୍ୟରୂପେ ପରିଗଣିତ ହେଉଥିଲେ । ଭାରତ ସମ୍ରାଟଙ୍କ ଶାସନର ସୁବିଧା ନିମନ୍ତେ ଏ ମଧ୍ୟରୁ ମୟୂରଭଞ୍ଜ ରାଜ୍ୟ, ବଙ୍ଗଳା ରାଜ୍ୟ, କଳାହାଣ୍ଡି ଓ ପାଟଣା ମଧ୍ୟ ପ୍ରଦେଶ ରାଜ୍ୟ ଓ ବାକିସବୁ ଓଡ଼ିଶା ରାଜ୍ୟ ରୂପେ ପରିଗଣିତ ହେଉଥିଲେ । ଏହି ରାଜ୍ୟମାନେ ୩ଟି ପଲିଟିକେଲ୍ ଏଜେଣ୍ଟ ଅଧୀନରେ ରହୁଥିଲେ ଓ ଏଜେଣ୍ଟମାନେ କଲିକତାସ୍ଥିତ ଇଷ୍ଟର୍ଣ୍ଣ ଷ୍ଟେଟସ୍ ରେସିଡେଣ୍ଟଙ୍କ ଅଧୀନରେ ଥିଲେ । ସ୍ୱୟଂ ରେସିଡେଣ୍ଟ ଭାଇସରାୟ ବା ଗଭର୍ଣ୍ଣର ଜେନେରେଲ ଅଧୀନରେ ଥିଲେ । ଭାରତର ରାଜା ଶାସିତ ରାଜ୍ୟ ସମସ୍ତ ଏପରିଭାବେ ବିଭିନ୍ନ ରେସିଡେଣ୍ଟମାନଙ୍କ ଅଧୀନରେ ଥାନ୍ତି । ଏ ସମସ୍ତ ରାଜାମାନଙ୍କର ଚେମ୍ବର ଅଫ୍ ପ୍ରିନ୍ସେସ୍ (Chamber of Princes) ବୋଲି ଏକ ସଭା ଥାଏ । ଏହା ପ୍ରବଳ କ୍ଷମତାପନ୍ନ ଓ ଇଂରାଜ ଶାସନର ଦକ୍ଷିଣ ହସ୍ତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପରି ଏକ ବିଶାଳ ସଂସ୍ଥାକୁ ଭ୍ରୂକ୍ଷେପ ନ କରି ସେମାନଙ୍କ ମଧ୍ୟରୁ କେତେକ ରାଜାଙ୍କ ରାଜତ୍ୱ ଲୋପକରି ତାଙ୍କର ରାଜ୍ୟମାନଙ୍କୁ ପ୍ରଦେଶମାନଙ୍କ ସଙ୍ଗରେ ମିଶାଇ ବିଶାଳ ଭାଷାଭାଷୀ ରାଜ୍ୟ ସଂଗଠନ କରି ଦେଶର ଏକୀକରଣ ପ୍ରଚେଷ୍ଟା ଦିବା ସ୍ୱପ୍ନ ଛଡା ଆଉ କଣ ହୋଇପାରେ ।

କିନ୍ତୁ ବୃହତ୍ତର ଭାରତର ଅଖଣ୍ଡତା, ନିରାପତ୍ତା ଓ ସମୃଦ୍ଧି ଲାଗି ଏହି ଦିବାସ୍ୱପ୍ନକୁ ରୂପରେଖ ଦେଇ କାର୍ଯ୍ୟକାରୀ କରିବାକୁ ହେବ । ପଟେଲ ଓ ମହତାବ—ଉଭୟ ମଧ୍ୟରେ ଆଲୋଚନା ସେତେବେଳେ ଓଡ଼ିଶାରେ ରାଜଶାସନ ବିରୁଦ୍ଧରେ ପ୍ରଜା ଆନ୍ଦୋଳନ ଚାଲୁଥାଏ । ଓଡ଼ିଶାରେ ଏହି ସୁଯୋଗ ନେଲେ ମହତାବ । ତାଳଚେର, ଢେଙ୍କାନାଳ ପ୍ରଭୃତି କେତେକ ରାଜ୍ୟରେ ପ୍ରଜାଆନ୍ଦୋଳନ ଅଗ୍ନିରେ ଇନ୍ଧନ ଦେଇ ତାକୁ ଭଲଭାବରେ ଜଳାଇଲେ ସେ । କିନ୍ତୁ କହୁ ଓଡ଼ିଶାର ପ୍ରାୟ ଅଧିକାଂଶ ଗଡଜାତରେ ଏ ଆନ୍ଦୋଳନଯଜ୍ଞରେ ଅଗ୍ନି ଜଳି ଉଠିଲା ଓ ସେହି ଯଜ୍ଞରେ ରଣପୁର ପ୍ରଜା

ଆନ୍ଦୋଳନର ମଧ୍ୟ ଯଜ୍ଞ ରୂପେ ପରିଣତ ହୋଇ ସେଥିରେ ଆହୁତିରେ ପଡ଼ିଲେ ରୋଧ ପଲିଟିକେଲ ଏଜେଣ୍ଟ ମେଜର ମେଜର ବେଜେଲଗେଟ୍ । ଏ ସମସ୍ତ ଆନ୍ଦୋଳନରେ ଇଉରୋପର ବ୍ଲେନ୍‌ହିମ୍ (Blerhim) ଯୁଦ୍ଧରେ ନେତୃତ୍ୱ ନେଇଥିବା Duke of marlborogh ଙ୍କ ଭଳି, "living spirit every where" ଥିଲେ ମହତାବ ।

ଆନ୍ଦୋଳନ ଉଠୁଥାଏ ପଡୁଥାଏ କିନ୍ତୁ ଗୃଳିଥାଏ । ବେଳକାଳ ନ ଆସିଲେ ତାର ଯଥାର୍ଥ କାର୍ଯ୍ୟକାରିତା ସମ୍ଭବପରନୁହେଁ ଉପରେ ରହିଛି ପ୍ରବଳ ପ୍ରତାପ ବ୍ରିଟିଶ ସରକାର । ମଝିରେ ମଝିରେ ସମ୍ବାଦ ପତ୍ର ମାଧ୍ୟମରେ ଦେଶୀୟ ରାଜ୍ୟ ମାନଙ୍କରେ ଶାସନ ଅବସ୍ଥା ଓ ଅଶାନ୍ତି ପ୍ରଭୃତି ବିଷୟରେ ଆଲୋଚନା ଚ୍ଳୁଥାଏ । ହଠାତ୍ ୧୯୪୭ ଜୁନ ୨ ତାରିଖରେ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ପତ୍ରିକାରେ ମହତାବଙ୍କ ଓଡ଼ିଶାର ଦେଶୀୟ ରାଜ୍ୟ ମାନେ ଓଡ଼ିଶା ସଙ୍ଗେ ମିଶିବାର ପ୍ରସ୍ତାବ ବାହାରିଲା । ସେ ସମୟରେ ମୁଁ କଳାହାଣ୍ଡି ମହାରାଜାଙ୍କ ଅଧୀନରେ କାର୍ଯ୍ୟ କରୁଥାଏ । ମହାରାଜ ମହତାବଙ୍କ ଏହି ପ୍ରସ୍ତାବକୁ ଲକ୍ଷ୍ୟ କରି କଲିକତାସ୍ଥିତ Resident of Eastern States Mr. Todd ଙ୍କ ପାଖକୁ ପତ୍ର ଲେଖିଲେ । Resident ଏହି ଲେଖା ପାଇ Residencyର ସମସ୍ତ ରାଜ୍ୟ ମହାରାଜାଙ୍କୁ କଲିକତାକୁ ଡକାଇ ସେମାନଙ୍କ ସଙ୍ଗେ ଏ ବିଷୟ ଆଲୋଚନା କରି ସେମାନଙ୍କୁ ଅଭୟ ଦେଲେ । କେତେଦିନ ପରେ ଜୁଲାଇ ମଧ୍ୟ ଭାଗରେ ଦିନେ ଭାରତ ସରକାରଙ୍କ Political Advisor to crown Resentative Sir Francis wyllie ସାହେବ ଦିଲ୍ଲୀରୁ ହାଇଦ୍ରାବାଦ ଯାଉଥାନ୍ତି । ରାୟପୁର ବିମାନ ବନ୍ଦର ଠାରେ ତାଙ୍କୁ ସାକ୍ଷାତ କରିବାକୁ ସେ ଓଡ଼ିଶା ଓ ମଧ୍ୟ ପ୍ରଦେଶର ରାଜ୍ୟମାନଙ୍କୁ ଆହ୍ୱାନ କରିଥିଲେ । ରାୟପୁର ବିମାନବନ୍ଦରରେ ଅବତରଣ କରି ରାଜାମାନଙ୍କୁ ସାକ୍ଷାତ କଲେ ସେ । ରାଜାମାନଙ୍କ ଭିତରୁ ପ୍ରଶ୍ନ ହେଲା "ଆମର ଭବିଷ୍ୟତ କ'ଣ ?" Sir Francis କହିଲେ your Highness So long Hydrabad remains,, Tigiria also will remain" (ଯେତେକାଳ ପର୍ଯ୍ୟନ୍ତ ହାଇଦ୍ରାବାଦ ଅଛି ତିଗିରିଆ ମଧ୍ୟ ରହିବ) ।

ରାଜାମାନଙ୍କୁ ଏ ପ୍ରକାର ଅଭୟ ଦେଇ ସାହେବ ହାଇଦ୍ରାବାଦ ଅଭିମୁଖେ ଯାତ୍ରାକଲେ ।

ମହତାବଙ୍କ ହିନ୍ଦୁସ୍ଥାନ୍ ଷ୍ଟାଣ୍ଡାର୍ଡରେ ଲିଖିତ ମହତାବଙ୍କ ଦେଶୀୟ ରାଜ୍ୟ ମିଶ୍ରଣକୁ ଲକ୍ଷ୍ୟକରି କଳାହାଣ୍ଡି ମହାରାଜ ତାଙ୍କୁ ଏହି ପର୍ଶୁରାମଭଳି ଦୃଷ୍ଟିକୋଣରୁ ନିବୃତ୍ତ ହେବାଲାଗି ଅନୁରୋଧ କରିଥିଲେ ।

ଏହାପରେ ଆସିଲା ୧୯୪୭ ଅଗଷ୍ଟ ପନ୍ଦର । ଭାରତ ସ୍ୱାଧୀନତା ଲାଭକଲା । ବ୍ରିଟିଶ ରାଜ ଭାରତବାସୀଙ୍କୁ ରାଜ୍ୟଶାସନ ହସ୍ତାନ୍ତର କଲେ । ଦେଶୀୟ ରାଜାମାନେ ନିଜେ ନିଜେ କାହାର ଅଧୀନରେ ନରହି ସ୍ୱାଧୀନ ହେଲେ । ସମସ୍ତେ ହେଲେ His Highness—ଅଖଣ୍ଡ କ୍ଷମତାପନ୍ନ । କେହି କାହାର ଅଧୀନରେ ନୁହନ୍ତି । ନିଜ ନିଜ ରାଜ୍ୟରେ ସର୍ବେସର୍ବା । କେତେ ରାଜ୍ୟରେ ଶାସନରେ ବିଶୃଙ୍ଖଳା ଆସିଗଲା । ପ୍ରଜାମଣ୍ଡଳର ଆନ୍ଦୋଳନ ପ୍ରବଳ ଭାବରେ ବଢ଼ିଲା ରାଜାମାନେ ତାକୁ ଦବାଇବାକୁ ଜୋର କାର୍ଯ୍ୟାନୁଷ୍ଠାନ କଲେ— ଧନୁଟାଣ କରୁଣ ଟାଣ— କେହି କମ୍ ନୁହନ୍ତି । ବ୍ରିଟିଶ ଶାସିତ ରାଜ୍ୟରେ ତ ଦାୟିତ୍ୱ ମୂଳକ ଶାସନ ଚାଲିଲା— ଗଡ଼ଜାତରେ ନଚାଲିବ କାହିଁ ? ନିଆଁ ଭଲ ଭାବରେ ଜଳିଲା—

ସେତେବେଳେ ଓଡ଼ିଶାରେ ପ୍ରଧାନମନ୍ତ୍ରୀ (ପରେ ମୁଖ୍ୟମନ୍ତ୍ରୀ) ଥିଲେ ମହତାବ । ସେ ଗୋଳିଆ ପାଣିରେ ଭିତରେ ପଶିବାକୁ ଖୋଜୁଥିଲେ ଗୋଟିଏ ସୁବିଧା ରାସ୍ତା— ନୀଳଗିରି ରାଜ୍ୟରେ ପ୍ରଜା ଆନ୍ଦୋଳନର ସୁବିଧା ପାଇ ବାଲେଶ୍ୱର ଜିଲ୍ଲାରେ ଶାନ୍ତିରକ୍ଷାପାଇଁ ସେ ନୀଳଗିରିକୁ ପୁଲିସ ଫୌଜ ପଠାଇଲେ । ଦେଶୀୟ ରାଜ୍ୟରେ ପଡ଼ୋଶୀ ରାଜ୍ୟର ହସ୍ତ-କ୍ଷେପ ଏଇ ହେଲା ପ୍ରଥମ । ମହତାବ ନିରୀକ୍ଷଣ କରୁଥାନ୍ତି ଏଥିରେ ଫଳ କଣ ହେବ । ଶାନ୍ତି ଶୃଙ୍ଖଳା ରକ୍ଷାଲାଗି ଦେଶୀୟ ରାଜ୍ୟରେ ପ୍ରବେଶ କରିବା ନିମନ୍ତେ ଭାରତ ସରକାରଙ୍କ ଦ୍ୱାରା ଏକ ଆଇନ ପ୍ରଣୟନ କରାଇଲେ ।

ରାଜାମାନଙ୍କ ମଧ୍ୟରେ ପ୍ରତିକ୍ରିୟା ବେଶ ବଢ଼ିଲା । ସେତେବେଳେ ହାଇଦ୍ରାବାଦ ମଧ୍ୟ ସ୍ୱାଧୀନ ହେବାରୁ ସେଠାକୁ ମଧ୍ୟ ପ୍ରଦେଶର ବହୁତ

ମୁସଲମାନ ଯାଉଥାନ୍ତି । ହାଇଦ୍ରାବାଦକୁ ଶକ୍ତିଶାଳୀ କରି ସ୍ୱାଧୀନ ଭାରତ ସରକାରଙ୍କୁ ତାର ମୁକାବିଲା କରିବାକୁ ଓ ତଦ୍ଦ୍ୱାରେ ଗଣ୍ଡଗୋଳ ସୃଷ୍ଟି କରିବାକୁ ବାଟ ଦେଖାଇଥିଲେ ବ୍ରିଟିଶ ସରକାର । ଚାରିଆଡ଼େ ରାଜ୍ୟ ମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଅଶାନ୍ତି ସୃଷ୍ଟି କଲା । ଏପରିକି କେତେକ ରାଜାଙ୍କର ଜୀବନ ବିପଦାପନ୍ନ ହେବାର ଆଶଙ୍କା ମଧ୍ୟ ମିଳିଲା । ସେତେବେଳେ ଓଡ଼ିଶାର କେତେଜଣ ବିଶିଷ୍ଟ ମହାରାଜ ଦିଲ୍ଲୀସ୍ଥ ବିର୍ଲା ଭବନଠାରେ ମହାତ୍ମା ଗାନ୍ଧୀଙ୍କୁ ସାକ୍ଷାତ କରି ଗଡ଼ଜାତ ମିଶ୍ରଣ ବିଷୟରେ ତାଙ୍କର ଅଭିମତ ପଚାରିବାରୁ ମହାତ୍ମାଜୀ କହିଲେ ଯେ, ସେ ଜଣେ ଦେଶୀୟ ରାଜ୍ୟର ଲୋକ— ରାମରାଜ୍ୟ ଚାହାଁନ୍ତି । କିନ୍ତୁ ସେ କରିବେ କ'ଣ, ତାଙ୍କ କଥା ଉପରିସ୍ଥ ନେତାମାନେ ଶୁଣୁ ନାହାନ୍ତି । ଭଗବାନ ତାଙ୍କୁ ଆଉ କେତେ ଦିନ ରଖିବେ କେଜାଣି । ଗାନ୍ଧୀଙ୍କଠାରୁ ଏହା ଶୁଣି ରାଜାମାନେ ଅତ୍ୟନ୍ତ ବିଚଳିତ ହେଲେ । ପଟେଲ ଓ ମହାତ୍ମାଙ୍କ ଭିତରେ ଗଭୀର ଆଲୋଚନା ଚାଲିଲା କିପରି ଗଡ଼ଜାତ ମିଶ୍ରଣ ହେବ । ମହତାବ ଏହି ମିଶ୍ରଣ ପ୍ରସ୍ତାବକୁ ପ୍ରଥମେ ଓଡ଼ିଶାରେ କାର୍ଯ୍ୟକାରୀ କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ କାରଣ ସେତେବେଳେ ସେ ଦେଶୀୟ ରାଜାମାନଙ୍କର ଅବସ୍ଥା ଭଲଭାବେ ଜାଣିଥାନ୍ତି । ଓଡ଼ିଶାରେ ପ୍ରଥମେ ଏହି ମିଶ୍ରଣ ପ୍ରସ୍ତାବକୁ କାର୍ଯ୍ୟକାରୀ କରି ପରେ ସଙ୍ଗେ ସଙ୍ଗେ ଏହା ମଧ୍ୟ ପ୍ରଦେଶରେ କାର୍ଯ୍ୟକାରୀ କରିବାର ଠିକ୍ ହେଲା । ତାପରେ ଅନ୍ୟାନ୍ୟ ରାଜ୍ୟ—

ଓଡ଼ିଶାରେ ଗଡ଼ଜାତ ମାନଙ୍କରେ ଅଶାନ୍ତି ଓ ଆନ୍ଦୋଳନ ବିଷୟରେ ଭାରତ ସରକାରଙ୍କ ସଙ୍ଗେ ଆଲୋଚନା କରିବାକୁ ଓଡ଼ିଶାର କେତେଜଣ ବିଶିଷ୍ଟ ମହାରାଜ ଓ ରାଜା ଦିଲ୍ଲୀ ଯାଇ ପଟେଲଙ୍କ ସଙ୍ଗେ ଆଲୋଚନା କରିଥିଲେ । ପଟେଲ ଓଡ଼ିଶା ଆସି ଏ ବିଷୟରେ ଆଲୋଚନା କରିବାକୁ ଡିସେମ୍ବର ତା ୧୩ରିଖ ଦିନ ଠିକ କଲେ । ରାଜାମାନେ ଭାବିଲେ ଏହା କେବଳ ଆଲୋଚନାରେ ଶେଷ ହେବ । କିନ୍ତୁ ଠିକ ହେଲା ପ୍ରଥମେ B ଓ C ଶ୍ରେଣୀର ରାଜ୍ୟମାନଙ୍କୁ ନେଇ ପରେ A ଶ୍ରେଣୀର ରାଜ୍ୟ ନେଲେ ସୁବିଧା ହେବ ।

ତା ୧୨ ରିଖ ସନ୍ଧ୍ୟାସୁଦ୍ଧା ଓଡ଼ିଶାର ସମସ୍ତ ରାଜାମହାରାଜ କଟକରେ ପହଞ୍ଚିଲେ । ମହତାବ ପ୍ରତ୍ୟେକ ଷ୍ଟେଟର ଲୋକଦଳ ଗଠନକରି ଲାଲ କପଡ଼ାରେ ଲିଖିତ ରାଜ୍ୟମାନଙ୍କ ନାମ ଲେଖାଇ ପ୍ରଚାର ଆରମ୍ଭ କଲେ ଯେପରିକି ଓଡ଼ିଶାର ସମଗ୍ର ଗଡ଼ଜାତର ଲୋକ ଓଡ଼ିଶା ସଙ୍ଗେ ମିଶ୍ରଣ ଚାହାଁନ୍ତି । ଏପ୍ରକାର ବାତାବରଣ ସନ୍ଦର୍ଶନ କରି ରାଜାମାନେ ଉଦ୍‌ବେଗିତ ହେଲେ ଓ କେତେଜଣ ଭାବିଲେ ଯେ ବରଂ ଓଡ଼ିଶା ସଙ୍ଗେ ମିଶିଯିବା ଭଲ । ମହତାବଙ୍କର ଚାଣକ୍ୟ ଓ ମେକିଆଭେଲପରି ରାଜନୀତିକ କୌଶଳ ଓ ତତ୍ପରତା ସେତେବେଳେ ଦେଖିବା କଥା ।

ତା ୧୩ ରିଖ ପୂର୍ବାହ୍ଣରେ କଟକ ରାଜଭବନରେ ସଭା ଆରମ୍ଭ ହେଲା B ଓ C ଶ୍ରେଣୀର ରାଜାମାନେ ସେଥିରେ ଯୋଗଦେଲେ—ଏପକ୍ଷରୁ ପଟେଲ ଓ ମହତାବ । ରାଜାମାନେ ଅନନ୍ୟୋପାୟ ହୋଇ ମିଶ୍ରଣ ନିମନ୍ତେ ରାଜିପଡ଼ିଲେ । କେବଳ ମାତ୍ର ଦୁଇଜଣ ରାଜା କେତେକ ପ୍ରଶ୍ନ ପଚାରିବାରୁ ପଟେଲ ଜଣେ ଅପ୍ରାପ୍ତ ବୟସ୍କ ରାଜାଙ୍କୁ କହିଲେ, "ତୁମର ଦାନ୍ତ ଉଠିବାକୁ ଆହୁରି ସମୟ ଅଛି—ବସ"—ଅନ୍ୟ ଜଣଙ୍କୁ କହିଲେ, "ତୁମେତ ସାଧୁ ସନ୍ନ୍ୟାସୀ ଲୋକ, ରାଜ୍ୟଶାସନ ଗଣ୍ଡଗୋଳରେ ପଶିବ କାହିଁ ? ସମସ୍ତେ ନୀରବ—ସଙ୍ଗେ ସଙ୍ଗେ ମିଶ୍ରଣ ପତ୍ରରେ ସ୍ୱାକ୍ଷର କଲେ । ସେଦିନ ରାତ୍ରରେ କଟକ ରାଜଭବନରେ 'A' ଶ୍ରେଣୀସ୍ଥ ରାଜାମାନଙ୍କ ସହିତରେ ପଟେଲ ଓ ମହତାବଙ୍କ ରାତ୍ର ଭୋଜନର ବ୍ୟବସ୍ଥା ହେଲା । ସେ ସମୟରେ ରାଜାମାନେ ମିଶ୍ରଣ ପ୍ରସ୍ତାବର ତୀବ୍ର ପ୍ରତିବାଦ କଲେ । ଦେଖାଗଲା ମିଶ୍ରଣ ସମ୍ଭବପର ନୁହେଁ, ପଟେଲ ନିଜେ ବ୍ୟକ୍ତ କଲେ, "ତାହାହେଲେ ମିଶ୍ରଣ ପ୍ରସ୍ତାବ ବିଫଳ ହେଲା ।" ରାଜାମାନେ ସମସ୍ତେ ଉତ୍ଫୁଲ୍ଲ ମନରେ ରାଜଭବନ ପରିତ୍ୟାଗ କଲେ । ସେମାନଙ୍କ ପ୍ରସ୍ଥାନ ପରେ ମହତାବ ପଟେଲଙ୍କୁ କହିଲେ ଯେ, ସେ ରାଜାମାନଙ୍କୁ ବେଶ ଜାଣନ୍ତି । ସେମାନେ ମିଶ୍ରଣ ନିମନ୍ତେ ନିଶ୍ଚୟ ସ୍ୱୀକୃତି ଦେବେ, କିନ୍ତୁ ଏଥିନିମନ୍ତେ ଅଳ୍ପ Stage Management ଆବଶ୍ୟକ । ମିଶ୍ରଣ ପତ୍ରରେ ସ୍ୱାକ୍ଷର ନ କଲେ ପୁଲିସ ଫୌଜ ପଠାଇ ସେମାନଙ୍କ ରାଜ୍ୟକୁ ଦଖଲ କରିବା ଭୟ ଦେଖାଇଲେ ସେମାନେ ନିଶ୍ଚୟ ସ୍ୱାକ୍ଷର କରିବେ । ଏ ବିଷୟ କାର୍ଯ୍ୟକାରୀ କରିବାକୁ ମହତାବ ଦାୟିତ୍ୱ

ନେଲେ । ସେ କହିଲେ ପଟେଲଙ୍କ ସେକ୍ରେଟେରୀ V. P. Menon ସଙ୍ଗେ ସେ ଆଲୋଚନା କରି Stage Management କରିବେ । କାରଣ 'A' ଶ୍ରେଣୀୟ ରାଜ୍ୟ ନ ମିଶିଲେ କେବଳ B ଓ C ଶ୍ରେଣୀ ରାଜ୍ୟମାନଙ୍କୁ ନେଇ ଓଡ଼ିଶା ଆହୁରି ଖଣ୍ଡ ଓ ସମସ୍ୟାଗ୍ରସ୍ତ ହେବ । ମହାତାବ ନିଜେ କୌଶଳରେ କେତେ ବିଶ୍ୱସ୍ତ ରାଜନୈତିକ କର୍ମୀଙ୍କୁ କେତେଜଣ ବିଶିଷ୍ଟ 'A' ଶ୍ରେଣୀୟ ରାଜାମାନଙ୍କ ନିକଟକୁ ପଠାଇ ସ୍ୱାକ୍ଷର ନ କଲେ ସେମାନଙ୍କର ଜୀବନ ବିପନ୍ନ ହେବ ବୋଲି କୁହାଇଲେ । ପ୍ରଜା ଅଶାନ୍ତିରେ ଭାରତ ସରକାର ସେମାନଙ୍କୁ କୌଣସି ସାହାଯ୍ୟ କରିବେ ନାହିଁ ବୋଲି ଭାବି ୩ ଜଣ ରାଜା ତା ୧୪ ଦିନ ସକାଳେ ନିଜେ ସ୍ୱଇଚ୍ଛାରେ ଯାଇ ପଟେଲଙ୍କ ନିକଟରେ ସ୍ୱାକ୍ଷର କଲେ ମିଶ୍ରଣ ପତ୍ରରେ । ପଟେଲ ତାପରେ ଅନ୍ୟ ରାଜାମାନଙ୍କଠାରୁ ସ୍ୱାକ୍ଷର ଅଣିବାକୁ ତାଙ୍କର ସେକ୍ରେଟେରୀ ମେନନଙ୍କୁ ଭାରଦେଇ ଭୁବନେଶ୍ବର ବିମାନଘାଟୀ ଅଭିମୁଖେ ପ୍ରସ୍ଥାନ କଲେ, କାରଣ ମନ୍ତ୍ରୀଶାସ୍ତ୍ର ଅନୁସାରେ ଜପୁ ସ୍ଥାନରେ ଆଉ ରହିବା ଉଚିତ ନୁହେଁ । ତିନିଜଣ ରାଜାଙ୍କର ସ୍ୱାକ୍ଷର କରିବା କଥା ଶୁଣି ଅନ୍ୟ କେତେକ 'A' ଶ୍ରେଣୀର ରାଜା ସ୍ୱେଚ୍ଛାରେ ମେନନଙ୍କ ପାଖକୁ ଯାଇ ମିଶ୍ରଣ ପତ୍ରରେ ସ୍ୱାକ୍ଷର କଲେ । ମିଶ୍ରଣ ପତ୍ରରେ ସ୍ୱାକ୍ଷର ନ କରି ରହିଲେ ୩।୪ ଜଣ ରାଜା—ସେମାନଙ୍କ ମଧ୍ୟରେ ଥିଲେ କଳାହାଣ୍ଡି ମହାରାଜ । ଯେତେବେଳେ ଗାଙ୍ଗପୁରର ରଜା ସ୍ୱାକ୍ଷର କରିବାକୁ ରାଜଭବନକୁ ଗଲେ ମେନନ ଡାକବା ଘଣ୍ଟି ବଜାଇ ଓଡ଼ିଶାର ତତ୍କାଳୀନ ପୋଲିସ D.I.G, ବିମଳେନ୍ଦୁ ରାୟଙ୍କୁ କହିଲେ, "ରାୟ, ତୁମେ ପ୍ରସ୍ତୁତ ତ ?" ରାୟ ସେଲ୍ୟୁଟ୍ ଦେଇ କହନ୍ତି, "ମୁଁ ପ୍ରସ୍ତୁତ ସାର୍"—ମେନନ କହିଲେ, "ଆଚ୍ଛା" । ଗାଙ୍ଗପୁର ରାଜା ସଙ୍ଗେ ସଙ୍ଗେ ଆସି କଳାହାଣ୍ଡି ମହାରାଜାଙ୍କୁ ଏ ବିଷୟ କହିବାରୁ ମହାରାଜା ରାଜ ଭବନକୁ ଆସିଲେ । ମେନନଙ୍କ ନିକଟକୁ ଆସି ଦେଖନ୍ତି ତାଙ୍କ ସମ୍ମୁଖରେ ତାଳଚେର, ବୌଦ୍ଧ ଓ ସୋନପୁରର ରାଜାମାନେ ଠିଆ ହୋଇ ରହିଛନ୍ତି । ମହାରାଜଙ୍କୁ ଦେଖି ମେନନ ସଙ୍ଗେ ସଙ୍ଗେ ଡାକବା ଘଣ୍ଟି ଦେବାରୁ ରାୟ ତତ୍‌କ୍ଷଣାତ୍ ହାଜର ହୋଇ ଯୁଣ୍ଟଭାବେ ସାଲ୍ୟୁଟ୍ ଦେବେ । ମେନନ୍ କହିଲେ, "Are you people ready for Kalahandi ?" ରାୟ କହିଲେ, "Ready Sir, only order please"

ମେନନ କହିଲେ, "Wait please", (ଅପେକ୍ଷାକର) ଏହାଦେଖି କଳାହାଣ୍ଡି ମହାରାଜ କହିଲେ, "ମୁଁ ସ୍ୱାକ୍ଷର ନ କଲେ ଆପଣ ପୋଲିସ ଫୋର୍ସ ପଠାଇ ରାଜ୍ୟର ଶାସନ ନେବା କଥା ଲେଖିଦେଇ ପାରିବେ କି ? ମେନନ ତତ୍‌କ୍ଷଣାତ୍ କହିଲେ, "Of course" ସଙ୍ଗେ ସଙ୍ଗେ ମେନନ ତାଙ୍କର ଷ୍ଟେନୋକୁ ଡକାଇ ଏହି ମର୍ମରେ ଡ଼ାକଦେଲେ—

My dear Maharaja,

I am glad that at last you have agreed to Sign the deed of merger. It is for you information that had you not signed we would have sent force to your state to take it over.

Yours Sincerely
V. P. Menon

ଏହା ଲେଖା ହୋଇ ଆସିବା ପରେ ମେନନ ଏଥିରେ ସ୍ୱାକ୍ଷର କରି ମହାରାଜଙ୍କୁ ବଢ଼ାଇ ଦେଲେ । ମହାରାଜ ସ୍ୱାକ୍ଷର କଲେ ଓ ସଙ୍ଗେ ସଙ୍ଗେ ତାଳଚେର ବୌଦ୍ଧ ଓ ସୋନପୁରର ରଜାମାନେ ସ୍ୱାକ୍ଷର କଲେ । ସେତେବେଳେ କେନ୍ଦୁଝର ଓ ବାମଣ୍ଡାର ରାଜାମାନେ ଅସୁସ୍ଥତାବଶତଃ ସ୍ୱାକ୍ଷର କରିପାରି ନ ଥିଲେ । ମୟୂରଭଞ୍ଜର ମହାରାଜା ପ୍ରାୟ ଏକ ବର୍ଷ ପରେ ମିଶ୍ରଣ ପତ୍ରରେ ସ୍ୱାକ୍ଷର କଲେ । ଓଡ଼ିଶାର ଶେଷୋକ୍ତ ୪ ଜଣ ରଜାଙ୍କ ସ୍ୱାକ୍ଷରିତ କାଗଜ ନେଇ ମେନନ ସଙ୍ଗେ ସଙ୍ଗେ ଭୁବନେଶ୍ୱର ବିମାନ ବନ୍ଦରଠାରୁ ପଟେଲଙ୍କ ସଙ୍ଗେ ରାୟପୁର ଅଭିମୁଖେ ଯାତ୍ରା କଲେ । ସେଠାରେ ସମବେତ ମଧ୍ୟପ୍ରଦେଶର ରଜାମାନଙ୍କୁ ସ୍ୱାକ୍ଷର କରିବାକୁ କହିବାରୁ ଖଏରାଗଡ଼ ରାଜା ବୀରେନ୍ଦ୍ର ବାହାଦୁର ସିଂ ପଚାରିଲେ, ଆପଣତ ଓଡ଼ିଶା ରାଜାମାନଙ୍କର ସ୍ୱାକ୍ଷର ପତ୍ର ଆଣିଛନ୍ତି କଳାହାଣ୍ଡି ମହାରାଜାଙ୍କର ସ୍ୱାକ୍ଷର ପତ୍ର କାହିଁ ?" ସଙ୍ଗେ ସଙ୍ଗେ ମେନନ ତାହା କାଢ଼ି ଦେଖାଇଦେବାରୁ ମଧ୍ୟପ୍ରଦେଶର ରଜାମାନେ ମିଶ୍ରଣ ପତ୍ରରେ ସ୍ୱାକ୍ଷର କଲେ ଖଏରାଗଡ଼ ରାଜା ଭାବିଥିଲେ, କଳାହାଣ୍ଡି ମହାରାଜ ଟିକେ ଟାଣୁଆ ସେ ସ୍ୱାକ୍ଷର କରି ନ ଥିବେ । କିନ୍ତୁ ତାଙ୍କର ସ୍ୱାକ୍ଷରିତ କାଗଜ ଦେଖି ସେ

ମିଶ୍ରଣ ପତ୍ରରେ ସ୍ୱାକ୍ଷର କରିବାରୁ ମଧ୍ୟପ୍ରଦେଶର ଅନ୍ୟ ସମସ୍ତ ରାଜା ସ୍ୱାକ୍ଷର କଲେ । ଏ ସମସ୍ତ ଧରି ପଟେଲ ଓ ମେନନ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ ଓଡ଼ିଶା ଓ ମଧ୍ୟପ୍ରଦେଶରୁ ରାଜତନ୍ତ୍ର ଶାସନ ଲୋପକରି ।

ଏହି ମର୍ମରେ ଓଡ଼ିଶାରୁ ରାଜତନ୍ତ୍ର ଶାସନର ଚିରଦିନ ପାଇଁ ଅବସାନ ହେଲା । ଓଡ଼ିଶାରେ ବିଶାଳ ଉତ୍କଳ ସୌଧର ମୂଳଭିତ୍ତି ପତନ—ମୁଖ୍ୟମନ୍ତ୍ରୀ ମହତାବ । ସେ ନିଜେ ରାଜା ହୋଇ (ଅଗରପଡ଼ାର ଜମିଦାର ହେଲେ ମଧ୍ୟ ତାଙ୍କୁ ସମସ୍ତେ ଅଗରପଡ଼ାର ରାଜା ବୋଲି କହନ୍ତି) ଓଡ଼ିଶାର ରାଜାମାନଙ୍କୁ ହଟାଇ ରାଜତନ୍ତ୍ର ଶାସନର ବିଲୋପସାଧନ କରି ବୃହତ୍ତର ଓଡ଼ିଶା ଗଠନ କଲେ । ବିଶାଳ ଉତ୍କଳ ଦେଖିବାକୁ ଦେଶପ୍ରାଣ ମନୀଷୀ-ମାନଙ୍କର ପ୍ରଚେଷ୍ଟା ଓ ସ୍ୱପ୍ନର ସଫଳତା ମୂଳରେ ବିଦ୍ୟମାନ ମହତାବଙ୍କର ମେଚଆଭେର୍ଲୀ ରାଜନୀତିକ ବୁଦ୍ଧି, ସାଧୁ ଉଦ୍ୟମ, ସିଂହ ବିକ୍ରମ ଓ ଧୈର୍ଯ୍ୟ । ସତ୍ୟ ଓ ତ୍ରେତାଯୁଗରେ ବିଖଣ୍ଡିତ ଭାରତର ରାଜାମାନଙ୍କୁ ଅସ୍ତ୍ରରେ ସଂହାର କରି ଦେଶକୁ ନିକ୍ଷତ୍ରୀୟ କଲେ ପରଶୁରାମ—ଦ୍ୱାପରରେ ସମସ୍ତ ରାଜାମାନଙ୍କୁ କୌଶଳରେ ବଶୀଭୂତ କରି ଓ ଅତ୍ୟାଚାରୀ ଦୁର୍ବୃତ୍ତ ରାଜାମାନଙ୍କୁ ନାଶ କରି ଭାରତରେ ଅଖଣ୍ଡ ଧର୍ମରାଜ୍ୟ ପ୍ରତିଷ୍ଠା କଲେ ଶ୍ରୀକୃଷ୍ଣ—୧୯୪୭-୪୮ ରେ ରାଜାମାନଙ୍କ ବିନା ରକ୍ତପାତରେ କୌଶଳରେ ତଡ଼ି ଅଖଣ୍ଡ ଭାରତ ଗଢ଼ିଲେ ସର୍ଦ୍ଦାର ଓ ତାର ମୂଳଦୁଆ ଦେଲେ ମହତାବ । ବୃହତ୍ତର ଉତ୍କଳର ନିର୍ମାତା କେବଳ ମାତ୍ର ସମ୍ଭବପର ହେଲା ମହତାବଙ୍କ ଯୋଗୁଁ—ଏଥିନିମନ୍ତେ ସେ ଧନ୍ୟାର୍ହ ।

# ମୁଁ ଯେପରି ଜାଣେ

## ନନ୍ଦିନୀ ଶତପଥୀ

ମହତାବ ବାବୁଙ୍କ ନାଁ ପିଲାବେଳୁ ଆମଘରେ ବାପା-ଜେଜେଇଙ୍କ ଠାରୁ ଶୁଣି ଶୁଣି ଆସିଥିଲି । ତାଙ୍କ ସରକାର ବିରୁଦ୍ଧରେ ଆନ୍ଦୋଳନ କରି ଗିରଫ ହୋଇ ଜେଲରେ ରହିଲି ପରେ ତାଙ୍କୁ ଟିକିଏ ଅଧିକ ଜାଣିବାର ସୁଯୋଗ ମିଳିଲା । ଯେତେବେଳେ ପୁଲିସ ମୋତେ ଗିରଫ କରିବାକୁ ଆମ ଘରକୁ ଆସିଲେ ସେତେବେଳେ ମୋ ବାପା ଘରେ ନଥିଲେ । ମହତାବ ବାବୁଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ବିଷୁବମିଳନ ଉତ୍ସବରେ ବକ୍ତୃତା ଦେଉଥିଲେ ।

ଏହାର ଅନେକ ପରେ ମହତାବ ବାବୁଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ହେଲା । ଛାତ୍ର ଆନ୍ଦୋଳନ ଓ ବାମପନ୍ଥୀ ଆନ୍ଦୋଳନରେ ଯୋଗ ଦେଇ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଅନେକଥର ଗିରଫ ହୋଇଛି । ମାସ ମାସ ଧରି ଜେଲରେ ରହିଛି । ମୋ ନାଁରେ ଅନେକ ମକଦ୍ଦମା ହୋଇଛି । କିନ୍ତୁ ଏସବୁ ସନ୍ଦର୍ଭରେ ମୁଖ୍ୟମନ୍ତ୍ରୀଙ୍କୁ ବା ତାଙ୍କ ମନ୍ତ୍ରୀମଣ୍ଡଳର କାହାରିକୁ ଯାଇ କୁହାବୋଲା କରି ମୁକୁଳି ଆସିବା ରୀତି ସେତେବେଳେ ପ୍ରଚଳନ ନଥିଲା । ପ୍ରଚଳିତ ଆଇନ ଯେଉଁମାନେ ଭାଙ୍ଗୁଥିଲେ ସେମାନେ ତାର ପରିଣତି ଜାଣିଥିଲେ— ତାହା ଭୋଗ କରିବାକୁ ପ୍ରସ୍ତୁତ ହୋଇ ସେମାନେ ଆନ୍ଦୋଳନ କରୁଥିଲେ । ଗୋଟିଏ ସମାଜ ବା ଶାସନ ବ୍ୟବସ୍ଥା ବଦଳାଇବାକୁ ହେଲେ ବହୁ ଦୁଃଖ କଷ୍ଟ ଭୋଗ କରିବାକୁ ହୁଏ ବୋଲି ଆମେ ବିଶ୍ୱାସ କରୁଥିଲୁ । ବିଭିନ୍ନ ସମୟରେ ସେ ବ୍ୟବସ୍ଥାର ଯେଉଁମାନେ ପ୍ରତୀକ ସେମାନଙ୍କ ବିରୁଦ୍ଧରେ ବ୍ୟକ୍ତିଗତ କ୍ରୋଧ ଘୃଣା ବା ଦ୍ୱେଷ ଆମ ମନକୁ ଆସୁ ନ ଥିଲା । ସେଇଥିପାଇଁ ସେଦିନଠାରୁ ଆଜିଯାଏଁ ଅନେକ ସମୟରେ ଅନେକ ଘଟଣା ଘଟିଥିଲେ ବି ମହତାବ ବାବୁଙ୍କ ପ୍ରତି ମୋର ଶ୍ରଦ୍ଧା ଓ

ସମ୍ମାନ ତଥାଉ ହୋଇଛନ୍ତି-କ୍ରୋଧ କି ଦୋଷ କେବେହେଲେ ହୋଇନାହିଁ । ବୟସ ବୃଦ୍ଧି, ଅଭିଜ୍ଞତା ବା ମାନ ମର୍ଯ୍ୟାଦାରେ କମ୍ ହୋଇ ଥିବା ବ୍ୟକ୍ତି ପ୍ରତି ତାଙ୍କର ଅସମ୍ମାନଜନକ ବ୍ୟବହାର କୌଣସି ସମୟରେ ମୁଁ ଦେଖି ନାହିଁ ।

ଆପଣ ବା ଖୁବ୍ ବେଶୀ ହେଲେ 'ତୁମେ' ବ୍ୟତୀତ ତୁ,ତା କରି ସେ କାହାରି ସହିତ କଥା ହୁଅନ୍ତି ନାହିଁ । ସବୁକ୍ଷେତ୍ରରେ ନିଜର ବଡପଣିଆ ଦେଖାହୋଇ ଅନ୍ୟମାନଙ୍କୁ ତୁଚ୍ଛ ତାଚ୍ଛଲ୍ୟ କରୁଥିବା ରାଜନୈତିକ ନେତାମାନଙ୍କ ଠାରୁ ଏ ଦିଗରେ ସେ ସମ୍ପୂର୍ଣ୍ଣ ଭାବରେ ଅଲଗା ସାନବଡ଼ ସବୁରି ସହିତ ସେ ଯେଭଳି ଧୈର୍ଯ୍ୟର ସହିତ ଆଲୋଚନା କରନ୍ତି ଏବଂ ସମସ୍ତଙ୍କର କଥା ଶୁଣନ୍ତି ଖୁବ୍ କମ ନେତା ସ୍ଥାନୀୟ ବ୍ୟକ୍ତିଙ୍କ ଠାରେ ସେ କଥା ପରିଲକ୍ଷିତ ହୁଏ । ସବୁ ଶ୍ରେଣୀର ଲୋକ, ଯୁବ, ଶିକ୍ଷକ, ବ୍ୟବସାୟୀ; ବୁଦ୍ଧିଜୀବୀ ତାଙ୍କୁ ସମ୍ମାନ କରନ୍ତି, ଶ୍ରଦ୍ଧା କରନ୍ତି ।

ଓଡ଼ିଶାର ସାହିତ୍ୟ ସଂସ୍କୃତି, କଳା ସଂଗୀତକୁ ବିକଶିତ ଓ ସମୃଦ୍ଧ କରିବା ଦିଗରେ ମହତାବ ବାବୁଙ୍କର ଯେତିକି ଅବଦାନ ରହିଛି ଏ ରାଜ୍ୟର ଐତିହ୍ୟ ଓ ପରମ୍ପରାକୁ ରକ୍ଷା କରିବା ଦିଗରେ ମଧ୍ୟ କିଛି କମ୍ ନୁହେଁ । ପୁଣି ଆଧୁନିକ ଓଡ଼ିଶା ନିର୍ମାଣ ପାଇଁ ମଧ୍ୟ କ୍ଷମତାରେ ଥାଇ ଏବଂ ନଥାଇ ବି ସତତ ତାଙ୍କର ପ୍ରଚେଷ୍ଟା ଚାଲିଛି । ଆଧ୍ୟାତ୍ମିକ ଜୀବନ ପ୍ରତି ମଧ୍ୟ ତାଙ୍କର ଆଗ୍ରହ ସେତିକି ପ୍ରଗାଢ଼ । ଏଇସବୁ କଥା ଭାବିଲା ବେଳକୁ ମନେହୁଏ କେବଳ ରାଜନୀତି ଗୋଟିଏ ପରିପୂର୍ଣ୍ଣ ମଣିଷ ତିଆରି କରିପାରେ ନାହିଁ— ଏସତ୍ୟକୁ ମହତାବ ବାବୁଙ୍କ ଭଳି ଆଉ କେହି ବୋଧହୁଏ ଏପରି ଭାବରେ ଉପଲବ୍ଧି କରିନାହାଁନ୍ତି ।

ଆଜିଯାଏଁ ଓଡ଼ିଶା ରାଜନୀତିରେ ଥିବା ଅନେକ ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତି ମହତାବବାବୁଙ୍କ ଦ୍ୱାରା ତିଆରି ହୋଇଛନ୍ତି, ସେମାନେ କଣ କରିଛନ୍ତି ବା ନକରିଛନ୍ତି ତାକୁ ତ କାଳ ବିଚାର କରିବ । କିନ୍ତୁ ଅନେକ ସମୟରେ ତାଙ୍କଦ୍ୱାରା ତିଆରି ହୋଇଥିବା ରାଜନୈତିକ ଲୋକଙ୍କର ଦୋଷତ୍ରୁଟିକୁ ସେ

ସର୍ବସାଧାରଣଙ୍କୁ ଦର୍ଶାଇ ଦେବାକୁ ପଶ୍ଚାଦ୍‌ପଦ ହୋଇ ନାହାନ୍ତି । କେତେ ତାଙ୍କର ସମାଲୋଚନା ଆହୁରି କଠୋର ହେଲେ ଭଲ ହୋଇ ଥାଆନ୍ତା ବୋଲି ଲୋକେ ବହୁ ସମୟରେ କଥାବାର୍ତ୍ତା ହୁଅନ୍ତି ।

ଏ ପ୍ରସଙ୍ଗରେ ଗୋଟିଏ କଥା ମୋର ମନେ ପଡ଼ି ଯାଉଛି । ଥରେ ପଣ୍ଡିତ ନେହେରୁଙ୍କ ଘରେ ମୁଁ, ତାଙ୍କ ଝିଅ ଇନ୍ଦିରାଜୀ (ସେ ସେତେବେଳେ ପ୍ରଧାନମନ୍ତ୍ରୀ ନଥିଲେ) ଗୋଟିଏ ଆଲୋଚନା ବେଳେ କହିଥିଲେ— ପଣ୍ଡିତଜୀ ଆଉ ଟିକିଏ ଶକ୍ତ ହୁଅନ୍ତେ ତେବେ ଅନେକ କଥା ଠିକ୍ ହୋଇଯାଆନ୍ତା । ସଙ୍ଗେ ସଙ୍ଗେ ଇନ୍ଦିରାଜୀ କହିଲେ— ତୁମେ କହିଲା ଭଳି ସେ ହୋଇଥିଲେ ସେ ପଣ୍ଡିତଜୀ ହୋଇନଥାନ୍ତେ । ମହତାବଜୀ ହିଁ ମହତାବଜୀ । ଆମ ଛାଞ୍ଚରେ ତାଙ୍କୁ ପକାଇବାକୁ ଚେଷ୍ଟା କରିବା ଭୁଲ ହେବ । ମତେ ଥରେ ଗୋଟିଏ ଚିଠି ୧୯୭୨ ନଭେମ୍ବରରେ ସେ ମର୍ମରେ ଲେଖିଥିଲେ । ତାଙ୍କର ଅନୁମତି ନ ନେଇ ଏଠାରେ ମୁଁ ସେ ଚିଠି ଉଦ୍ଧାର କରି ପାରୁନାହିଁ ।

ବଡ଼ ବଡ଼ ଲୋକଙ୍କର ବାହାରଆ କାମଛଡ଼ା ଆଉ କଣ ବା ଆମେ ଜାଣି ପାରୁ ? କାହା ଭିତରେ କି ଦୁଃଖ ରହିଛି, କି ଭାବନା ରହିଛି, କେଉଁଠି ତା ହୃଦୟର ସ୍ପର୍ଶକାତର ସ୍ଥାନ ଆମେ କଣ ସେତିକି ସହାନୁଭୂତି ନେଇ ସେଗୁଡ଼ିକ ଖୋଜିବାକୁ, ବୁଝିବାକୁ, ଦେଖିବାକୁ ଚାହୁଁ ? ସେତକ କରି ନପାରିଲେ କେହି କଣ 'ସମ୍ପୂର୍ଣ୍ଣ ବ୍ୟକ୍ତି'ଟିକୁ ବୁଝି ପାରିବ ? ନ ପାରିଲେ ବିଚାର କରିବାର ଧୃଷ୍ଟତା ନକରୁ !

ଓଡ଼ିଶା ଜନ ଜୀବନକୁ ଆହୁରି ବହୁ ବର୍ଷ ଯାଏଁ ମହତାବ ବାବୁ ପ୍ରଭାବିତ କରିବେ । ରାଜ୍ୟବାସୀଙ୍କୁ ଆଲୋକିତ ଜୀବନ ଆଡ଼କୁ ନେବା ପାଇଁ ସେ ସାହାଯ୍ୟ କରନ୍ତୁ ଏତିକି ଆଜି ମୋର ଈଶ୍ୱରଙ୍କଠାରେ ପ୍ରାର୍ଥନା ।

# ସଂଗ୍ରାମ ଓ ସଂଗଠନର ପ୍ରତୀକ ମହତାବଜୀ

ଶ୍ରୀହର୍ଷ ମିଶ୍ର

**ମ**ହତାବଜୀ ରାଜୁଡ଼ା ବଂଶରେ ଜନ୍ମଗ୍ରହଣ କରିଛନ୍ତି । ଉଚ୍ଚ ଶିକ୍ଷା ଗ୍ରହଣ ନିମନ୍ତେ ତାଙ୍କର ପିତା ସେତେବେଳେ ତରୁଣ ହରେକୃଷ୍ଣଙ୍କୁ ରେଭେନ୍ସା କଲେଜରେ ନାମ ଲେଖାଇଲେ ଜମିଦାର ବଂଶର ତତ୍କାଳୀନ ବିଧାନ ଅନୁଯାୟୀ ଉଚ୍ଚ ସରକାରୀ କର୍ମଚାରୀ ପଦ ଗ୍ରହଣ କିମ୍ବା ଇଂରେଜ କର୍ତ୍ତୃପକ୍ଷଙ୍କ ଅନୁଗ୍ରହ ଭାଜନହିଁ ଲକ୍ଷ୍ୟ ରଖିଥିଲେ ।

କିନ୍ତୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ପୁତ୍ରଙ୍କ ମାନସିକ ଚିନ୍ତାଧାରା ଭିନ୍ନ ଆକାର ଧାରଣ କରିଥିଲା । ଜମିଦାରର ଜ୍ୟେଷ୍ଠପୁତ୍ର ଭାବରେ 'ରାଜା' ପଦ ଗ୍ରହଣ କରିବା ପରିବର୍ତ୍ତେ ସେ ପ୍ରାରମ୍ଭରୁ······ ଗୋଷ୍ଠୀର ସେବାବ୍ରତୀ ହେବାରେ ଅଗ୍ରଣୀ ହୋଇଥିଲେ । ବୈଦେଶିକ ଶାସନରୁ ମୁକ୍ତିଲାଭ କରିବା ନିମନ୍ତେ ଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ ବ୍ୟାପକ ଖଣ୍ଡଯୁଦ୍ଧମାନ ଚାଲିଥିଲା ମହତାବଙ୍କ ଜନ୍ମବେଳକୁ ତାହା ଗଣ ଆନ୍ଦୋଳନରେ ପରିଣତ ହେବାରେ ଲାଗିଥିଲା । ମହତାବ ମହାବିଦ୍ୟାଳୟ ଶିକ୍ଷା ସମାପ୍ତ କରିବାର ଅବ୍ୟବହିତ ପୂର୍ବରୁ ଦେଶରେ ଏକ ନୂଆ ଧରଣର ବିପ୍ଳବ ସୃଷ୍ଟି ହେଲା । ଏହା ଥିଲା 'ଅହିଂସ ବିପ୍ଳବ' ।

ଗୁଜରାଟର ପୋରବନ୍ଦର ନାମକ କ୍ଷୁଦ୍ର କରଦ ରାଜ୍ୟର ଜଣେ ଦେଓ୍ୱାନଙ୍କ ପୁଅ ବିଲାତରେ ବାରିଷ୍ଟରୀ ଶିକ୍ଷା ସମାପ୍ତ କରିବା ପରେ ଦକ୍ଷିଣ ଆଫ୍ରିକାରେ ବ୍ୟବସାୟ କରୁଥିବା କେତେ ଜଣ ଗୁଜରାଟି ହିନ୍ଦୁ

ମୁସଲମାନ ମହକିଲଙ୍କ ସପକ୍ଷରେ ମକଦ୍ଦମା ଲଢ଼ିବା ପାଇଁ ତାଙ୍କୁ ସୁଯୋଗ ମିଳିଲା । ସେ କାଳର ଅନ୍ୟତମ ବଶିଷ୍ଟ ଦେଶସେବୀ ଶ୍ରୀ ଗୋପାଳକୃଷ୍ଣ ଗୋଖଲେଙ୍କ ଉଦ୍ୟମରେ ଗାନ୍ଧୀଜୀ ଦକ୍ଷିଣ-ଆଫ୍ରିକା ଯାତ୍ରା କରିଥିଲେ । ଗୋଖଲେ ଓ ଗାନ୍ଧୀ ଉଭୟେ ସେଠାରେ ଭୟାବହ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । ସେ ଦେଶରେ ଗୋରାକଳା ଭେଦଭାବ ଏଭଳି ଉଗ୍ର ଆକାର ଧାରଣ କରିଥିଲା ଯେ ୟୁରୋପୀୟ ବ୍ୟକ୍ତି ଅନ୍ୟ ଯେ କୌଣସି ଦେଶର ଅଧିବାସୀଙ୍କୁ ଗୋରାଙ୍କ ସହିତ ଯିବା ଆସିବା ପାଇଁ ମଧ୍ୟ ସୁଯୋଗ ମିଳୁ ନଥିଲା । ମନୁଷ୍ୟ ପ୍ରତି ମନୁଷ୍ୟର ଏଭଳି ଘୃଣ୍ୟ ବ୍ୟବହାରରେ ଗାନ୍ଧିଜୀ ମର୍ମାହତ ହୋଇ ପଡ଼ିଥିଲେ ସୁଦ୍ଧା ଦକ୍ଷିଣ ଅଫ୍ରିକା ତ୍ୟାଗ କରିବା ପାଇଁ ଆଦୌ ଚାହୁଁ ନଥିଲେ । ଗୋରାଙ୍କ ଏଭଳି ଅମାନୁଷିକ ବ୍ୟବହାରର ବିଲୁପ୍ତିକରଣ ପାଇଁ ସେ ଏକପ୍ରକାର ପ୍ରତିଜ୍ଞାବଦ୍ଧ ହେଲେ । ଦକ୍ଷିଣ ଆଫ୍ରିକାର ସେହି ସ୍ଥାନରେ ସତ୍ୟାଗ୍ରହର ଅପୂର୍ବ ପ୍ରାରମ୍ଭ ହେଲା ।

ପ୍ରଥମ ମହାଯୁଦ୍ଧ ସମାପ୍ତି ବେଳକୁ ଗାନ୍ଧିଜୀ ଭାରତକୁ ଫେରି ଆସି ବର୍ଣ୍ଣ ବିଦ୍ୱେଷ ନୀତିର ବିରୁଦ୍ଧାଚରଣ ପାଇଁ ସେ ଯେଉଁ ଅହିଂସ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଥିଲେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ତାହା ପ୍ରଧୂମିତ ହେବାକୁ ଲାଗିଲା ।

ଏହି ସମୟରେ ବହୁ ଯୁବକ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ନିର୍ଭୀକ ଭାବେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଓଡ଼ିଶାର ସର୍ବପ୍ରଥମ ସତ୍ୟାଗ୍ରହୀଙ୍କ ମଧ୍ୟରେ ଯେଉଁ କେତେଜଣ ସ୍ଥାନ ଗ୍ରହଣ କରିଥିଲେ ମହତାବଜୀ ଥିଲେ ସେମାନଙ୍କ ମଧ୍ୟରୁ ଅନ୍ୟତମ ।

ଏହା ମଧ୍ୟରେ ତାଙ୍କର ସଂଗ୍ରାମୀ ଜୀବନର ୬୦ ବର୍ଷରୁ ଅଧିକ ସମୟ ବିତିଗଲାଣି । ସ୍ୱାଧୀନତା ସଂଗ୍ରାମରେ ଜଣେ ସୈନିକଠାରୁ ଆରମ୍ଭ କରି ସେ ସେନାପତି ପଦରେ ଉନ୍ନୀତ ହୋଇ ପାରିଥିଲେ ।

୧୯୨୧ର ଲବଣ ସତ୍ୟାଗ୍ରହ, ୧୯୩୨ର ଆଇନ ଅମାନ୍ୟ, ୧୯୪୧ର ବ୍ୟକ୍ତିଗତ ସତ୍ୟାଗ୍ରହ ପରେ ୧୯୪୨ର 'କର ବା ମର' ରୂପୀ ଶେଷ ସଂଗ୍ରାମରେ ସେ ଯୋଗଦେଇ ସାର୍ଥକ କରି ପାରିଛନ୍ତି ।

ମହତାବଙ୍କର ଅନ୍ୟ ଏକ ବିଶେଷତ୍ୱ ସେ କେବଳ ସଂଗ୍ରାମୀ ନୁହନ୍ତି, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ମଧ୍ୟ ପ୍ରବୀଣତମ ବ୍ୟକ୍ତି, ମଧ୍ୟ ପ୍ରଦେଶର ସାଗର, ତାମିଲନାଡୁର ଅନ୍ନାମାଲାଇ ଏବଂ ବିଶାଖାପାଟଣାର ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କୁ 'ଡକ୍ଟରେଟ' ପଦବୀରେ ଭୂଷିତ କରିଛନ୍ତି । ଏହି ପଦବୀ ଗୁଡ଼ିକ କେବଳ ପୂର୍ବତନ କେନ୍ଦ୍ରମନ୍ତ୍ରୀ କିମ୍ବା ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଅଳଙ୍କାର ସ୍ୱରୂପ ନୁହେଁ, ଡକ୍ଟରେଟ୍ ପାଇଁ ପ୍ରଦତ୍ତ ତାଙ୍କର ନିବନ୍ଧସମୂହ ଗଭୀର ଜ୍ଞାନଗର୍ଭକ ତଥା ପାଣ୍ଡିତ୍ୟର ପ୍ରତୀକ ।

ସର୍ବୋପରି ଗାନ୍ଧିଜୀଙ୍କ ମହାନ୍ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜନୀତିକ ସ୍ୱାଧୀନତା ଲାଭ ପାଇଁ ସଂଗ୍ରାମ ସହିତ ଅର୍ଥନୀତିକ ସଂଗଠନ ପାଇଁ ମଧ୍ୟ ସେ ସମାନ ଭାବରେ ଅଗ୍ରଗତି କରିବାରେ ଲାଗିଛନ୍ତି । ସ୍ୱାଧୀନତା ଲାଭ ପରେ ଦେଶର ସ୍ୱଚ୍ଛଳତା ପ୍ରତି ମଧ୍ୟ ଯେପରି ଉଦ୍ୟମ ଅବ୍ୟାହତ ରହେ ଏ ପର୍ଯ୍ୟନ୍ତ ତାହାହିଁ ତାଙ୍କର ମୂଳ ଲକ୍ଷ୍ୟ ହୋଇ ରହିଛି ।

କହିବାକୁ ଗଲେ ଉତ୍କଳୀୟ ଜାତୀୟତାର ପ୍ରତିଷ୍ଠା ମୂଳରେ ମନସ୍ୱୀ ମଧୁସୂଦନ ଯେଉଁଭଳି ମୁଖ୍ୟ ଥିଲେ, ସ୍ୱାଧୀନତା ଲାଭର ଉନ୍ମେଷରେ ମଧ୍ୟ ଗୋପବନ୍ଧୁଙ୍କ ଭଳି ସେ ଅଗ୍ରଣୀ ଥିଲେ । ବିଶେଷତଃ ଗାନ୍ଧିଜୀଙ୍କ ପରବର୍ତ୍ତୀ ଓଡ଼ିଶାର ସଂଗଠନରେ ମହତାବଜୀ ଯଥାର୍ଥରେ ପ୍ରାଧାନ୍ୟ ଅର୍ଜନ କରି ପାରିଥିଲେ ।

ଆମେ ଯେଉଁମାନେ ଗାନ୍ଧୀଯୁଗରେ ମହତାବଙ୍କ ସହଯୋଗୀ ହେବାର ସୁଯୋଗ ଅର୍ଜନ କରି ପାରିଛୁ, ନିଜ ନିଜକୁ ଧନ୍ୟ ମନେ ନ କରି ରହି ପାରିନାହୁଁ । ସେ ଏକକାଳୀନ ଗାନ୍ଧୀ, ମଧୁସୂଦନ, ଗୋପବନ୍ଧୁଙ୍କ କର୍ମ ଜୀବନରେ ସମନ୍ୱୟ ସାଧନ କରି ପାରିଛନ୍ତି ।

କେବଳ ସଂଗ୍ରାମୀ ବା ପାଣ୍ଡିତ୍ୟ ନୁହେଁ, ମନୁଷ୍ୟ ଗଠନରେ ମଧ୍ୟ ସେ ଧୁରନ୍ଧର ବ୍ୟକ୍ତି ।

ଏ ଭଳି ବହୁ ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କ ପ୍ରତି ମହତାବଙ୍କଙ୍କ ସହଯୋଗ ବିନା ରାଜନୀତି କ୍ଷେତ୍ରରେ ଉଚ୍ଚ ପଦାରୂଢ଼ ହେବା ସେମାନଙ୍କ ପକ୍ଷରେ ଅସମ୍ଭବ ଥିଲା । ବସ୍ତୁତଃ ମହତାବଙ୍କ କୁହୁକ ସ୍ପର୍ଶରେ ମାଟି ସୁନା ପାଲଟି ଯାଉଛନ୍ତି ।

ଆଜି ତାଙ୍କର ୮୨ତମ ବୟସରେ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରେ ସେ ଦୀର୍ଘଜୀବୀ ହୋଇ ଦେଶ ତଥା ଦଶର ସମୃଦ୍ଧ ଉନ୍ନୟନରେ ଅବିରତ ରହିଥାନ୍ତୁ ।

# ପ୍ରଥମ ଓ ଦ୍ୱିତୀୟ ପର୍ବର ନାୟକଙ୍କ ଦୃଷ୍ଟିରେ ତୃତୀୟ ପର୍ବର ଦୃଶ୍ୟ

ବଭୂତ ପଟ୍ଟନାୟକ

"ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା ୧୯୨୧ ସାଲରେ । ଏ ସମୟରେ କେତେକ ଜେଲ୍ ଯାଇଥିଲେ । ଏମାନଙ୍କ ଭିତରୁ ଯେଉଁମାନେ ପଢ଼ା ଛାଡ଼ିଦେଇ ଆସିଥିଲେ ସେମାନଙ୍କ ମଧ୍ୟରୁ ଅନେକ ପରେ ପୁଣି ସ୍କୁଲ କଲେଜରେ ନାମ ଲେଖାଇ ଭିନ୍ନଭିନ୍ନ ଜୀବିକାର ଆଶ୍ରୟ ନେଲେ, ଓକିଲ, ବ୍ୟବସାୟୀ, ଶିକ୍ଷକ, ଅଧ୍ୟାପକ, ସରକାରୀ କର୍ମଚାରୀ ଇତ୍ୟାଦି । କିନ୍ତୁ ଏମାନେ ଏକ ସମୟରେ ଜେଲ୍ ଯାଇଥିଲେ, ତେଣୁ ଏମାନେ ସ୍ୱାଧୀନତା ସଂଗ୍ରାମୀ, ସେହିପରି ୧୯୩୦ ସାଲ ଲବଣ ସତ୍ୟାଗ୍ରହରେ ବହୁ ସଂଖ୍ୟାରେ ଲୋକେ ଜେଲ୍ ଯାଇଥିଲେ, ସେଥିମଧ୍ୟରୁ ଅନେକ ପରେ ବିଭିନ୍ନ କ୍ଷେତ୍ରକୁ ଚାଲିଯାଇଥିଲେ ମଧ୍ୟ ଏମାନେ ସ୍ୱାଧୀନତା ସଂଗ୍ରାମୀ । ତାପରେ ୧୯୪୨ ସାଲର ଭାରତଛାଡ଼ ଆନ୍ଦୋଳନ । ସେଥିରେ ଜେଲ୍ ଯାଇଥିବା ଅନେକ ବ୍ୟକ୍ତି ପରେ ବିଭିନ୍ନ କ୍ଷେତ୍ରକୁ ଚାଲିଯାଇଥିଲେ ମଧ୍ୟ ସେମାନେ ସ୍ୱାଧୀନତା ସଂଗ୍ରାମୀ । ଭାରତର ସ୍ୱାଧୀନତା ଇତିହାସର ଦୁଇଟି ପର୍ବ ଶେଷ ହୋଇ ବର୍ତ୍ତମାନ ତୃତୀୟ ପର୍ବ ଚାଲିଛି । ୧୯୨୧ ରୁ ୧୯୪୭ ପର୍ଯ୍ୟନ୍ତ ପଚିଶ ବର୍ଷର ଏ ଏକ ପର୍ବ । ସେଥିର ବିଷୟବସ୍ତୁ ତିନୋଟି ମୁଖ୍ୟ ସଂଗ୍ରାମ ବା ସତ୍ୟାଗ୍ରହ । ପୁଣି ୧୯୪୭ ରୁ ୧୯୭୧ ଏ ପଚିଶବର୍ଷ ହେଉଛି ଦ୍ୱିତୀୟ ପର୍ବ, ଯାହାର ବିଷୟବସ୍ତୁ ହେଉଛି ସ୍ୱାଧୀନତା ସଂଗ୍ରାମୀ-ମାନଙ୍କ ହାତରେ ଶାସନର ପରିଚାଳନା । ତୃତୀୟ ପର୍ବ ହେଉଛି ସେ ଶାସନର ପରିଣତି । କେଉଁଠି ସେ ପର୍ବ ଶେଷ ହେବ ଜଣା ନାହିଁ ।"(୧)

ଡକ୍ଟର ହରେକୃଷ୍ଣ ମହତାବଙ୍କ "ଚୃତୀୟ ପର୍ବ" ହେଉଛି ୧୯୭୧ ମସିହାରୁ ୧୯୭୫ ମସିହାରେ ଇମର୍ଜେନ୍‌ସିଜାରୀ ହେବା ପର୍ଯ୍ୟନ୍ତ [ଓଡ଼ିଶାର ଅସ୍ଥିର, ବିକ୍ଷୁବ୍ଧ ରାଜନୈତିକ ସାମାଜିକ ଜୀବନର ଆଶ୍ଚର୍ଯ୍ୟ, ସୁନ୍ଦର ଦଲିଲ୍ ଏବଂ ସେହି ସଙ୍କଟମୟ କାଳର ବିଶ୍ୱସ୍ତ ବାଙ୍ମୟ ରୂପ ।

'ତୃତୀୟ ପର୍ବ' ଉପନ୍ୟାସ ରଚନା ପୂର୍ବରୁ ଶ୍ରୀଯୁକ୍ତ ମହତାବ 'ପ୍ରତିଭା' ଓ 'ଟାଉଟର' ପ୍ରଭୃତି ଉପନ୍ୟାସ ରଚନା କରି ଓଡ଼ିଆ ରାଜନୈତିକ ଉପନ୍ୟାସର ମୂଳଦୁଆ ପକାଇ ସାରିଥିଲେ । 'ତୃତୀୟ ପର୍ବ' ସେହି ସୁଦୃଢ଼ ଭିତ୍ତିଭୂମି ଉପରେ ଏକ ଅମଳିନ କୀର୍ତ୍ତିସ୍ତମ୍ଭ । ଭାରତବର୍ଷର ରାଜନୈତିକ ଜୀବନର ଇତିହାସରେ ଆପଦକାଳୀନ ଅବସ୍ଥାଜାରି ଏକ ସୁଦୂରପ୍ରସାରୀ ଗୁରୁତ୍ୱପୂର୍ଣ୍ଣ ଘଟଣା । ଆପଦକାଳୀନ ଅବସ୍ଥା ଜାରିର ପ୍ରତିକ୍ରିୟା ଓ ପରିଣତିକୁ ନେଇ କେବଳ ଓଡ଼ିଆ ସାହିତ୍ୟ ନୁହେଁ; ବିଭିନ୍ନ ଭାରତୀୟ ଭାଷାରେ ଗଳ୍ପ, କବିତା, ଉପନ୍ୟାସ ଓ ସମ୍ବାଦଭାଷ୍ୟ ରଚିତ ହୋଇଛି । ଏସବୁ ଇମର୍ଜେନ୍‌ସି ସାହିତ୍ୟ ଭାବରେ ପାଠକ ଓ ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିଛି । କିନ୍ତୁ କେଉଁ ପରିସ୍ଥିତି ଓ ପରିବେଶରେ ଭାରତର ରାଜନୈତିକ ଆକାଶରେ ଇମର୍ଜେନ୍‌ସିର ଧୂମକେତୁ ଦେଖା ଦେଇଥିଲା ; ଓଡ଼ିଶାର ତତ୍କାଳୀନ ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତିର ସୂକ୍ଷ୍ମ ବିଶ୍ଳେଷଣରେ ଶ୍ରୀଯୁକ୍ତ ମହତାବ ଯେପରି ତାହା 'ତୃତୀୟ ପର୍ବ' ଉପନ୍ୟାସରେ ଫୁଟାଇଛନ୍ତି ; ସମ୍ଭବତଃ ତାହା ଅନ୍ୟ କୌଣସି ଲେଖକଙ୍କ ଲେଖାରେ ସମ୍ଭବ ହୋଇନାହିଁ । ତାର କାରଣ ନିଜେ ଇମର୍ଜେନ୍‌ସି ସମୟରେ କାରାରୁଦ୍ଧ ହୋଇ ଦୁଃଖଭୋଗ କରିଥିଲେ ସୁଦ୍ଧା ତାଙ୍କର କାହାରି [ଉପରେ ଆକ୍ରୋଶ କିମ୍ବା ଅଭିଯୋଗ ନାହିଁ । ଆଶ୍ଚର୍ଯ୍ୟ–ନିର୍ଲିପ୍ତ ଦୃଷ୍ଟିଭଙ୍ଗୀ ନେଇ ସେ ସେହି ସମୟର ଘଟଣା ଓ ପରିବେଶକୁ ନିଜସ୍ୱ ଦୃଷ୍ଟିରେ ବିଶ୍ଳେଷଣ ଓ ଅଭିଜ୍ଞତାର ମାପକାଠିରେ ପରିମାପ କରିଛନ୍ତି । ରାଜନୀତିଜ୍ଞର ଯୁଗଳ-ଦୃଷ୍ଟିରେ ନୁହେଁ; ଶିଳ୍ପୀର ନିରପେକ୍ଷ ତୃତୀୟ ନୟନରେ ସମଗ୍ର ଘଟଣାକୁ ଦେଖିବା ପାଇଁ ଚେଷ୍ଟା କରିଥିବା ହେତୁ, "ତୃତୀୟ ପର୍ବ" ଏକ ସାର୍ଥକ ଶିଳ୍ପ ସୃଷ୍ଟିରେ ପରିଣତ ହୋଇଛି ।

ଉପନ୍ୟାସର ଗଠନ କୌଶଳ ଦୃଷ୍ଟିରୁ ବିଚାର କଲେ ଏଥିରେ କୌଣସି ଚମଘନ ନଟଖୋଳ କାହାଣୀ ନାହିଁ । ସ୍ୱାଧୀନତା ସଂଗ୍ରାମୀ ବୃଦ୍ଧ ରାମଶଙ୍କର କନ୍ୟା ଯୁବକ ବିପ୍ଳବୀ (ଏଠାରେ ବିପ୍ଳବର ସଜ୍ଞା ହେଲା, "ଅଚ୍ଛୁ ଯାହା ତାକୁ ହଟାଇ ଦେବା···"); (୨) ବୀରକିଶୋର ଏହି ଉପନ୍ୟାସର ଦୁଇଟି ପ୍ରଧାନ ଚରିତ୍ର ହେଲେ ମଧ୍ୟ, ସେମାନେ କେହି ଉପନ୍ୟାସର ପ୍ରଧାନ ନାୟକ ନୁହନ୍ତି । ଏ ଉପନ୍ୟାସର ପ୍ରଧାନ ନାୟକ ହେଉଛି ୧୯୭୧-୭୫ ମସିହାର ସେଇ ଅସ୍ଥିର-ବିକ୍ଷୁବ୍ଧ ସମୟ; ଯେଉଁ ସମୟର ବନ୍ଧ୍ୟା ମୃତ୍ତିକାରେ ଯେତେ ଉତ୍କୃଷ୍ଟ ରାସାୟନିକ ସାର ଦେଇ ବୀଜବପନ କଲେ ବି ଦୁଇପତ୍ର ମେଲି ବୃକ୍ଷଗଛ ଭୂଇଁରୁ ମୁଣ୍ଡ ଉଠାଇ ନ ଥିଲା ! ଅଥବା ଯଦ୍ୟପି ସେଇ ଦୁଃସମୟର କଠିନ ମୃତ୍ତିକାରେ କେଉଁଠି କେଉଁଠି ଗୋଟିଏ ଦୁଇଟି ଆମ୍ବଗଛ ଆକାଶକୁ ମୁଣ୍ଡ ଟେକି ଠିଆ ହୋଇଥିଲା, ସେ ଆମ୍ବଗଛରେ ଯାହା ଫଳୁଥିଲା ତାହା ଆମ୍ବ ନୁହେଁ ; ଆମ୍ବଡ଼ା !

ସେହି ବିକ୍ଷୁବ୍ଧ ସମୟର ଅଶାନ୍ତ ରୂପ ବ୍ଲୁଜନର ଦରବୃଦ୍ଧି ଏବଂ ସେଥିପାଇଁ ଦୋକାନ ଲୁଟି; ଚାଷୀ ଉପରେ ସରକାରଙ୍କ ଜବରଦସ୍ତ ଧାନ ଲେଭି ଓ କଡ଼େଇରେ ଉଜା ହେଉଥିବା ମାଛଭଳି ଛଟପଟ ହେଉଥିବା ଚାଷୀ ସେଥିଲାଗି ନିଜ ଖାଇବା ଧାନ ନରଖି ମଧ୍ୟ ବେଶୀ ଦରରେ ବ୍ଲାକରେ ଧାନ ବିକ୍ରୀ କରିବା; ସବ୍‌ଡେପୁଟି କଲେକ୍ଟର ପାଇଁ ପବ୍ଲିକ୍ ସର୍ଭିସ୍ କମିଶନ ସଭ୍ୟମାନଙ୍କୁ ଲାଞ୍ଚ ଦେଇ ମଧ୍ୟ କାର୍ଯ୍ୟ ନ ହେବା; ବ୍ୟବସାୟୀମାନଙ୍କଠାରୁ ଚାନ୍ଦା ଆଦାୟ କଲାବେଳେ ପୋଲିସର ଜୁଲମ ଏବଂ ଚାନ୍ଦା ମାଗୁଥିବା ଲୋକଙ୍କ ନାମରେ ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ପୋଲିସର ମିଥ୍ୟା ମକଦ୍ଦମା ଦାଏର; ଏହିସବୁ ବ୍ୟାପକ ଜନ-ଅସନ୍ତୋଷର ସୁବିଧା ନେଇ କୋରାପୁଟ-ଗୁଣୁପୁର ଅଞ୍ଚଳରେ ନକ୍ସାଲପନ୍ଥୀମାନଙ୍କ ହିଂସ୍ର ଆନ୍ଦୋଳନ ଏବଂ ଭୂଦାନ ଆନ୍ଦୋଳନର ବ୍ୟର୍ଥତାର ଚିତ୍ର ମଧ୍ୟରେ ଔପନ୍ୟାସିକ ଫୁଟାଇ ଦେଇଛନ୍ତି । ଏଭଳି ଚିତ୍ର କାଳ୍ପନିକ ନୁହେଁ; ଏକାନ୍ତ ବାସ୍ତବ । ଯେଉଁମାନେ ପ୍ରାକ୍-ଇମର୍ଜେନ୍‌ସି କାଳର ଓଡ଼ିଆ ସମ୍ବାଦପତ୍ର ପଢ଼ିଛନ୍ତି; ସେମାନେ ଏ ଘଟଣାର ସତ୍ୟତା ଜାଣନ୍ତି । କିନ୍ତୁ 'ତୃଷ୍ଣାର ପର୍ବ' ଉପନ୍ୟାସରେ ଏହି ସମ୍ବାଦଧର୍ମୀ

ଘଟଣା ଉପରେ ଜନଅସନ୍ତୋଷର ଜନ୍ମ ହୋଇଥିଲା ଏବଂ ତାର ପ୍ରତିକ୍ରିୟା ସ୍ୱରୂପ ସ୍ୱାଧୀନତା ଆନ୍ଦୋଳନରେ ଭାଗନେଇ ନଥିବା ଏକ ନବୀନ ଯୁବକଗୋଷ୍ଠୀ ବୀରକିଶୋରଙ୍କ ନେତୃତ୍ୱରେ 'ସଂଗ୍ରାମୀ ଯୁବ ପରିଷଦ' ଗଠନ କରି ଶାସନକଳ ସହିତ ଉପରି ସଂଘର୍ଷ ଲାଗି ଜନସମର୍ଥନ ଲାଭ କରିଥିଲେ, ତାର ଏକ ବିଶ୍ୱାସ-ଯୋଗ୍ୟ ଚିତ୍ର ଔପନ୍ୟାସିକ ଅଙ୍କନ କରିଛନ୍ତି ।

ବୀର କିଶୋର ଏବଂ ତାଙ୍କର ଯୁବ ବନ୍ଧୁମାନେ ଥିଲେ ଏହି ଅସ୍ଥିର, ଉଦ୍‌ବେଳିତ ସମୟର ସନ୍ତାନ । ସେମାନେ ଶାସନ କଳର ବ୍ୟର୍ଥତା, ଶୋଷଣ ଅତ୍ୟାଚାର ବିରୁଦ୍ଧରେ ନିଜକୁ ହତିଆର୍ ଭଳି ବ୍ୟବହାର କରି ଏକ ନୂତନ ସମାଜ-ବିପ୍ଳବର ସ୍ୱପ୍ନ ଦେଖୁଥିଲେ; କିନ୍ତୁ ସେ ବିପ୍ଳବର ସମ୍ପୂର୍ଣ୍ଣ ଯାନଚିତ୍ର ସେମାନଙ୍କ ଦୃଷ୍ଟିର ପରିଧିରେ ଧରା ଦେଉ ନଥିଲା । ଲକ୍ଷ୍ୟ ନିର୍ଦ୍ଦିଷ୍ଟ ନଥିବା ହେତୁ, ସଂଗଠିତ ଯୁବଶକ୍ତି ନିଷ୍ଫଳ ପ୍ରତିବାଦରେ ପରିଣତ ହେବାର ଆଶଙ୍କା ଥିଲା । "ପାଣି ଫୁଟିଲେ ବାମ୍ଫ ବାହାରି ଉଡ଼ିଯାଏ ; କିନ୍ତୁ ସେ ବାମ୍ଫ ଯଦି ଇଞ୍ଜିନ୍ ଭିତରେ ଦେଇ ବାହାର କରାଯାଏ ତେବେ ସେ ରେଳଗାଡ଼ି ଟାଣିନିଏ ।";(୩) ଏହି ଯୁବଶକ୍ତିର ବାମ୍ଫକୁ ବ୍ୟବହାର କରି ବିପ୍ଳବର ଇଞ୍ଜିନ୍‌କୁ ଟାଣି ନେବାପାଇଁ ସ୍ୱାଧୀନତା ସଂଗ୍ରାମୀ ରାମଶଙ୍କର ଆଗଭର ହୋଇ ବାହାରି ଆସିଲେ ।

ରାମଶଙ୍କର ଔପନ୍ୟାସିକଙ୍କ ବର୍ଣ୍ଣିତ ପ୍ରଥମ ପର୍ବର ନାୟକ । ଦ୍ୱିତୀୟ ପର୍ବର ନାୟକ ଭାବରେ ଦେଶର ଶାସନ ପରିଚାଳନା ଦାୟିତ୍ୱ ସେ ବହନ କରିଥିବା କଥା ଔପନ୍ୟାସିକ ଅସ୍ୱୀକାର କରିଥିଲେ ସୁଦ୍ଧା, ସେ' ଯେ ଓଡ଼ିଶାର ଶାସନ ଦାୟିତ୍ୱ ବହନ କରିଥିବା ମନ୍ତ୍ରୀମାନଙ୍କର ଦୀକ୍ଷା-ଗୁରୁ ଥିଲେ ଏକଥା ଗୋପନ କରି ନାହାନ୍ତି । ଏହି ଆଶ୍ରମବାସୀ ପ୍ରବୀଣ ଜନନେତାଙ୍କ ସହିତ ମନ୍ତ୍ରୀ ଜଗଦାନନ୍ଦଙ୍କ ନିବିଡ଼ ସମ୍ପର୍କ; ମୁଖ୍ୟମନ୍ତ୍ରୀଙ୍କର ତାଙ୍କ ମତାମତ ପ୍ରତି ଗଭୀର ସମ୍ମାନ ଏବଂ ଜିଲ୍ଲା କଲେକ୍ଟରମାନଙ୍କ ଭୟ ଓ ଭକ୍ତିଭାବ ମଧ୍ୟରେ ଏହି ସତ୍ୟ ଫୁଟି ଉଠିଛି ।

ଦ୍ୱିତୀୟ ପର୍ବର ଶେଷ ଏବଂ ତୃତୀୟ ପର୍ବର ଆରମ୍ଭରେ ଓଡ଼ିଶାର ଶୋଚନୀୟ ଅର୍ଥନୈତିକ ଦୁର୍ଗତି, ଶାସନକଳର ଶିଥିଳତା ଲକ୍ଷ୍ୟ କରି ରମାଶଙ୍କର ବୁଝି ପାରିଥିଲେ, "ଏହି ପଚାଶ ବର୍ଷରେ ସଜାଡ଼ା ହୋଇଥିବା ବଗିଚାରେ ଘାସ, ପାଣି ନପାଇ ସୁନ୍ଦର ଫୁଲଗଛ ଗୁଡ଼ିକ ଝାଉଁଳି ପଡ଼ିଲାଣି । ପୁଣି ଏ ବଗିଚାକୁ ସଫା କରି ପାଣି ଦେଇ ସଜାଡ଼ିବାକୁ ହେବ ।" (୪) ସେଥିପାଇଁ ଓଡ଼ିଶା ଶାସନ ଦାୟିତ୍ୱରେ ଥିବା ଘାସମାନଙ୍କୁ ମୂଳୋତ୍ପାଟିତ କରି ଶାସନ ବ୍ୟବସ୍ଥାର ଉଦ୍ୟାନକୁ ସଜାଡ଼ିବା ପାଇଁ ସେ ବୀରକିଶୋରଙ୍କ "ସଂଗ୍ରାମୀ ଯୁବ ପରିଷଦ" ସହିତ ସାମିଲ୍ ହୋଇଗଲେ । ଆଶ୍ରମର ରାଜନୀତି-ନିରପେକ୍ଷ ଜୀବନ ପରିତ୍ୟାଗ କରି ସେ ପୁଣି ପ୍ରତ୍ୟକ୍ଷ ରାଜନୀତି ମଧ୍ୟକୁ ଲମ୍ଫ ଦେଲେ । ଯୁବଶକ୍ତି ସହିତ ସ୍ୱାଧୀନତା ସଂଗ୍ରାମର ଅଭିଜ୍ଞତା ଓ ତ୍ୟାଗର ସମ୍ମିଶ୍ରଣ ଘଟିଲା । ବୀରକିଶୋରଙ୍କ ତାରୁଣ୍ୟ ଓ ସଂଗଠନ ଶକ୍ତି ସହିତ ରମାଶଙ୍କରଙ୍କ ଦେଶ ସେବା, ତ୍ୟାଗ ଓ ଲୋକ-ପ୍ରିୟତାର ମିଶ୍ରଣ ଘଟିବା ଫଳରେ ଜନସାଧାରଣଙ୍କଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ପଡ଼ିଥିବା ଓଡ଼ିଶାର କ୍ଷମତାସୀନ ଶାସକଗୋଷ୍ଠୀ କେବଳ ଅକାରଣରେ ଯେ ଉତ୍ଖାତ ହୋଇପଡ଼ିଲେ ତା ନୁହେଁ; 'ତୃତୀୟ ପର୍ବ' ଉପନ୍ୟାସର କାହାଣୀ ବିନ୍ୟାସରେ ମଧ୍ୟ ଏକ ନୂତନ ଗତି ସଞ୍ଚାରିତ ହେଲା ।

ସଂଗ୍ରାମୀ ଯୁବ ପରିଷଦର ବୀରକିଶୋର ଏବଂ ତାଙ୍କର ଯୁବ ସହକର୍ମୀମାନେ ଥିଲେ ଉଚ୍ଚଶିକ୍ଷିତ; ସହରବାସୀ ବିପ୍ଳବୀ । ଯେଉଁ ଶାସକ-ମାନଙ୍କ ଅପାରଗତା ଯୋଗୁ ବେକାରି, ଦୁର୍ନୀତି, ଦାରିଦ୍ର୍ୟ, ପୋଲିସ ଅତ୍ୟାଚାର ବଢ଼ିଛି; ସେମାନଙ୍କୁ ଗାଦିରୁ ଓହ୍ଲାଇ ଦେଇ ତଳେ ଠିଆ କରାଇଦେବା ଥିଲା ସେମାନଙ୍କର ଲକ୍ଷ୍ୟ । କିନ୍ତୁ ଏ ଲକ୍ଷ୍ୟ ହାସଲ କରିବା ପାଇଁ ଯେଉଁ ଗଣସଂଗଠନର ଅଭିଜ୍ଞତା ଓ ତ୍ୟାଗ ଆବଶ୍ୟକ; ତାହା ସେମାନଙ୍କର ନ ଥିଲା । ସେଥିପାଇଁ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ଲୋକପ୍ରିୟ ଗାନ୍ଧିବାଦୀ ଜନନେତା ରମାଶଙ୍କରଙ୍କ ନେତୃତ୍ୱ ସେମାନେ ମାନି ନେଇଥିଲେ । କିନ୍ତୁ ତାଙ୍କ ନେତୃତ୍ୱ ପ୍ରତି ଆନୁଗତ୍ୟ ସେମାନଙ୍କର ସର୍ତ୍ତହୀନ ନ ଥିଲା । କାରଣ ସେମାନେ ପରସ୍ପରର ବନ୍ଧୁ ଥିଲେ ସୁଦ୍ଧା ସେମାନଙ୍କ ମତ ଓ ଗତି

ଥିଲି ବିଭିନ୍ନ । ଅହିଂସ ଆନ୍ଦୋଳନ ପ୍ରତି ସେମାନଙ୍କର ଥିଲା ପ୍ରଚ୍ଛନ୍ନ ସନ୍ଦେହ; କାରଣ ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲା ବେଳେ ସେମାନେ କେହି ଜନ୍ମ ହୋଇ ନ ଥିଲେ । ସଂଗ୍ରାମୀ ଯୁବ ପରିଷଦର ନେତା ବୀରକିଶୋର ଅନେକ ପରିମାଣରେ ରାମଶଙ୍କରଙ୍କ ଅନୁଗତ ଥିଲେହେଁ ତାଙ୍କର ଅନ୍ୟ ଦୁଇ ସହକର୍ମୀ ବ୍ରଜନାଥ, ପ୍ରଦ୍ୟୋତ ଥିଲେ ନକ୍‌ସାଲପନ୍ଥୀ । ଦୋଳଗୋବିନ୍ଦ ନିର୍ବାଚନମୁଖୀ । ତାରିଣୀ ଅରବିନ୍ଦଙ୍କ ଦର୍ଶନରେ ବିଶ୍ୱାସୀ । ମୋଟାମୋଟି ଭାବରେ ସ୍ୱାଧୀନତା-ଉତ୍ତର କାଳରେ ଯୁବଗୋଷ୍ଠୀ ମଧ୍ୟରେ ଯେଉଁ ସବୁ ବିଭିନ୍ନ ମତବାଦ ଗଢ଼ି ଉଠିଥିଲା; ସଂଗ୍ରାମୀ ଯୁବ ପରିଷଦର କର୍ମୀମାନେ ଥିଲେ ସେହି ମତାଦର୍ଶର ଗୋଟିଏ ଗୋଟିଏ ପ୍ରତୀକ ।

ସେମାନଙ୍କ ମନରେ ଦେଶର ପ୍ରକୃତ ଅବସ୍ଥା ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ଦେବା ପାଇଁ ଓ ଗାଁ ଗହଳରେ ରହୁଥିବା ନିପୀଡ଼ିତ ମଣିଷମାନଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆଣିବା ଲାଗି ରାମଶଙ୍କର ସେମାନଙ୍କୁ ରାଜଧାନୀ ଭୁବନେଶ୍ୱରରୁ ଆଦିବାସୀ ଅଧ୍ୟୁଷିତ କୋରାପୁଟ, ଗୁଣୁପୁର, ମାଲ୍‌କାନ୍‌ଗିରି ଅଞ୍ଚଳକୁ ନେଇ ଗସ୍ତରେ ଯାଇଥିଲେ । ଏହି ଗସ୍ତର ଅଭିଜ୍ଞତା ମଧ୍ୟ ଦେଇ 'ତୃତୀୟ ପର୍ବ' ଉପନ୍ୟାସର କାହାଣୀ ଏକ ନାଟକୀୟ ପରିବେଶ ମଧ୍ୟରେ ପ୍ରବେଶ କଲା ।

କୋରାପୁଟ-ଗୁଣୁପୁର-ମାଲ୍‌କାନଗିରିର ସବୁଜ ଅରଣ୍ୟ ପ୍ରକୃତି, ତାର ପାହାଡ଼-ମେଖଳା-ଶିଖା ପ୍ରାକୃତିକ ସୌନ୍ଦର୍ଯ୍ୟ ସେଦିନ ବନ୍ୟ ଫୁଲର ସୁରଭିରେ ସୁରଭିତ ନୁହେଁ, ବାରୁଦର ଗନ୍ଧରେ ଉତ୍ତେଜିତ, ଉତ୍ତପ୍ତ ହୋଇ ଉଠିଥିଲା । ଏହି ଅଞ୍ଚଳର ଆଦିମ ଆଦିବାସୀମାନେ ଦାରିଦ୍ର୍ୟ ଓ ଶୋଷଣର କଷାଘାତରେ ଜର୍ଜରିତ । ସରକାରୀ ହିସାବ ଅନୁସାରେ କାଗଜ ପତ୍ରରେ ଆଦିବାସୀମାନଙ୍କର ଯେତେ ଉନ୍ନତି ହୋଇଥାଉନା କାହିଁକି; ସ୍ୱାଧୀନତାର ଅଠେଇଶି ବର୍ଷ ପରେ, ୧୯୭୫ ମସିହା ବେଳକୁ ଏ ଅଞ୍ଚଳର ଆଦିବାସୀ-ମାନେ ଅଜ୍ଞାନତା, ଦାରିଦ୍ର୍ୟ ଓ ନିପୀଡ଼ନର ଅନ୍ଧକାରରେ ସେଇଭଳି ରହି ଯାଇଥିଲେ ।

ଆଦିବାସୀମାନଙ୍କ ପାଇଁ ଏସବୁ ଅଞ୍ଚଳରେ ଯେଉଁସବୁ କଲେଜ ଖୋଲାଯାଇଛି, ସେ କଲେଜରେ ଖୁବ୍ ଅଳ୍ପ ସଂଖ୍ୟକ ଆଦିବାସୀ ଛାତ୍ର ପାଠ ପଢ଼ନ୍ତି । ଅଧ୍ୟାପକମାନେ ଆଦିବାସୀ ଛାତ୍ରମାନଙ୍କୁ ଆପଣାର କରିପାରନ୍ତି ନାହିଁ । ଫଳରେ ଲେଖକଙ୍କ ଭାଷାରେ, "ଏ କଲେଜଟି ହେଉଛି ଟେବୁଲ ଉପରେ ଥୁଆ ହୋଇଥିବା ଏକ ଫୁଲଦାନୀ । ଏ ଫୁଲଗଛ ନୁହେଁ; ଏହାର ଚେର ମାଟିରେ ନାହିଁ ।,(୫)

ସାବାଳକ ଭୋଟପ୍ରଥା ପ୍ରଚଳନ ପରେ ଆଦିବାସୀମାନେ ମଧ୍ୟ ନିଜ ସଂପ୍ରଦାୟର ପ୍ରତିନିଧିଙ୍କୁ ଓଡ଼ିଶା ବିଧାନସଭା ଓ ଦିଲ୍ଲୀ ଲୋକସଭାକୁ ପଠାନ୍ତି । ସେମାନେ କିନ୍ତୁ ନିଜ ସଂପ୍ରଦାୟର ଅବହେଳିତ ଲୋକଙ୍କୁ ଟେକି ଉଠାଇବା ବଦଳରେ ନିଜେ ଦିଲ୍ଲୀ ଭୁବନେଶ୍ୱରରେ ରହୁଥିବା ଉନ୍ନତ ଶ୍ରେଣୀର ଲୋକଙ୍କ ସହିତ ସମାନସ୍କନ୍ଧ ହେବା ପାଇଁ ଚେଷ୍ଟା କରନ୍ତି । ସେମାନେ ଶିକ୍ଷିତ; କିନ୍ତୁ ଅଶିକ୍ଷିତ ଆଦିବାସୀମାନଙ୍କୁ ଆପଣାର କରିବା ପାଇଁ ସେମାନଙ୍କ ମଧ୍ୟରେ ଚେଷ୍ଟାର ଅଭାବ । ସେମାନେ ନିଜକୁ ଏକ ଅଲଗା ଶ୍ରେଣୀର ଲୋକଭଳି ମନେ କରନ୍ତି । ଲେଖକଙ୍କ ଭାଷାରେ", ଶିକ୍ଷାର ମନ୍ଥନ ଫଳରେ ସେମାନେ ଯେପରି ସମାଜ ସମୁଦ୍ରରୁ ଛିଟିକି ଯାଇ କୂଳରେ ପଡ଼ି ଯାଇଛନ୍ତି, ଏହିପରି ସେମାନଙ୍କର ଆଚରଣ ।(୬)

ଆଦିବାସୀମାନଙ୍କ ଉନ୍ନତି ପାଇଁ ଯେଉଁ ଭୂଦାନ କର୍ମୀମାନେ ଏ ଅଞ୍ଚଳରେ କାର୍ଯ୍ୟ କରୁଛନ୍ତି ସେମାନେ ନିଜ ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ବ୍ୟସ୍ତ । ଆଦିବାସୀମାନଙ୍କୁ ଶୋଷଣ କରୁଥିବା କୁମୁଟି, ସାହୁକାରମାନେ ଭୂଦାନ କର୍ମୀମାନଙ୍କୁ ସନ୍ତୁଷ୍ଟ କରିବା ଦ୍ୱାରା ଆଦିବାସୀମାନଙ୍କ କୋପ ଦୃଷ୍ଟିରୁ ନିଜକୁ ବଞ୍ଚାଇବା ପାଇଁ ତତ୍ପର । ଭୂଦାନ ଆନ୍ଦୋଳନର ବ୍ୟର୍ଥତାକୁ ଲକ୍ଷ୍ୟ କରି ଔପନ୍ୟାସିକଙ୍କ ମନ୍ତବ୍ୟ, " ବୌଦ୍ଧଗୁରୁ ଗୌଡ଼ପାଦଙ୍କ ଶିଷ୍ୟ ଶଙ୍କରାଚାର୍ଯ୍ୟ ଯେପରି ବୌଦ୍ଧଧର୍ମର ସମାଧିର କାରଣ ହେଲେ. ସେହିପରି ଗାନ୍ଧିଜୀଙ୍କ ପଟ୍ଟ ଶିଷ୍ୟ ବିନୋବାଜୀ; ଗାନ୍ଧିଜୀଙ୍କ କାର୍ଯ୍ୟକ୍ରମକୁ ସମାଧି ଦେଇ ଦେଲେ । (୭)

ସରକାର, ଭୂଦାନ କର୍ମୀ ଓ ନିଜ ସମ୍ପ୍ରଦାୟର ନିର୍ବାଚିତ ପ୍ରତିନିଧି-ମାନେ ଯେତେବେଳେ ସେମାନଙ୍କ ସ୍ୱାର୍ଥରକ୍ଷା କରିବା ପାଇଁ ବ୍ୟର୍ଥ ହେଲେ, ଆଦିବାସୀମାନଙ୍କ ଦୃଷ୍ଟି ଫେରି ଯାଇଛି ନକ୍ସାଲପନ୍ଥୀ ଉଗ୍ର ବାମପନ୍ଥୀ ଆନ୍ଦୋଳନକାରୀମାନଙ୍କ ଆଡ଼କୁ । ସେମାନେ ଆଦିବାସୀମାନଙ୍କର ଆଉ କିଛି ଉପକାର କରନ୍ତୁ କି ନକରନ୍ତୁ; ଯେଉଁ କୁମୁଟି, ସାହୁକାର ମାନେ ଆଦିବାସୀମାନଙ୍କୁ ଶୋଷଣ କରନ୍ତି; ସେମାନଙ୍କ ମୁଣ୍ଡକାଟି କଟାମୁଣ୍ଡର ରକ୍ତରେ ସାହୁକାରମାନଙ୍କ କାନ୍ଥରେ ସତର୍କବାଣୀ ଲେଖି ଆଦିବାସୀମାନଙ୍କ ବନ୍ଧୁ ବୋଲି ପ୍ରତ୍ୟୟ ସୃଷ୍ଟି କରି ପାରିଥିଲେ । ଏଥିପାଇଁ ସେମାନଙ୍କୁ ପୋଲିସ ଅତ୍ୟାଚାରର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ନକ୍ସାଲପନ୍ଥୀ ବୋଲି ସନ୍ଦେହ କରି ପୋଲିସ ବହୁ ନିରୀହ ଲୋକଙ୍କୁ ମଧ୍ୟ ହତ୍ୟା କରୁଥିଲା ।

ବୀରକିଶୋର, ବିନୟ ଓ ପ୍ରଦ୍ୟୋତ ରାୟଗଡ଼ା ଗୁଣୁପୁର ଅଞ୍ଚଳକୁ ଯାଇ ଜଣେ କୁମୁଟି ବ୍ୟବସାୟୀଙ୍କ ଘରେ ଅତିଥି ହୋଇଥିବାବେଳେ, ବିନୟ ସହିତ ପୂର୍ବରୁ ସମ୍ପର୍କ ଥିବା ଜଣେ ନକ୍ସାଲପନ୍ଥୀ ଯୁବକ କମଳା-କାନ୍ତ ସେମାନଙ୍କୁ ଦେଖା କରିବାକୁ ଆସିଥିଲେ । କିନ୍ତୁ ସାକ୍ଷାତ ପରେ ଘରକୁ ଫେରିଲା ବେଳେ ବନ୍ଧୁକର ଆବାଜ ଶୁଣା ଗଲା । ପରେ ଜଣା ପଡ଼ିଲା ପୋଲିସ ଗୁଳିରେ କମଳାକାନ୍ତ ନିହତ !

ପୋଲିସ ବନ୍ଧୁକର ଆବାଜ୍, ବାରୁଦର ଗନ୍ଧ, ନିରୀହ କମଳାକାନ୍ତର ମୃତ୍ୟୁ, 'ହୃଦୟ ପର୍ବ' ଉପନ୍ୟାସକୁ ଏକ ପ୍ରଶ୍ନାତ୍ମକ ପରିଣତି ଆଡ଼କୁ ଟାଣି ନେଇଛି । ଏପର୍ଯ୍ୟନ୍ତ ଉପନ୍ୟାସର କାହାଣୀ ଶିଥିଳ ଗତିରେ ସମତଳ ଭାବରେ ଅଗ୍ରଗତି କରୁଥିବା ବେଳେ, ଏହି ବନ୍ଧୁକର ଶବ୍ଦ କାହାଣୀକୁ ଦ୍ରୁତ ବେଗରେ ଏକ ନାଟକୀୟ ପରିବେଶକୁ ଠେଲି ଦେଇଛି ।

କମଳାକାନ୍ତର ମୃତ୍ୟୁ ଅତ୍ୟାଚାରୀ ପୋଲିସର ଛଦ୍ମବେଶ ଖୋଲି ଦେଇଛି । ବୀର କିଶୋରଙ୍କ ବିପ୍ଳବୀ ଚେତନାକୁ ଏହା କରିଛି ଆହୁରି ଶାଣିତ, କିନ୍ତୁ ତାଙ୍କର ଅନ୍ୟ ବନ୍ଧୁମାନଙ୍କ ମଧ୍ୟରେ ଏହା ଭ୍ରାନ୍ତି ସଞ୍ଚାର କରିଛି । ବିନୟ ଗାନ୍ଧିବାଦୀ ନେତା ମୁନ୍ସି ପାଲଟି ଦେୱାରମାନ୍ ସୀତା-

ସ୍ୱାମୀଙ୍କ ସାହାଯ୍ୟରେ ମୃତ କମଳାକାନ୍ତର ପତ୍ନୀକୁ ସ୍କୁଲର ଶିକ୍ଷୟିତ୍ରୀ ଓ ତାର ମାଆକୁ ଡାକ୍ତରଖାନାର ଧାଈ କାର୍ଯ୍ୟରେ ନିଯୁକ୍ତ ଦେଇଛି । କିନ୍ତୁ ସ୍ୱାମୀଙ୍କର, ବୀର କିଶୋରଙ୍କ ନେତୃତ୍ୱରେ ସରକାରବିରୋଧୀ ଆନ୍ଦୋଳନ କ୍ରମଶଃ ପ୍ରବଳରୁ ପ୍ରବଳତର ହେଉଥିବା ବେଳେ ସେ ନିଜେ କମଳା-କାନ୍ତର ବିଧବାପତ୍ନୀ ଉର୍ବଶୀକୁ ବିବାହ କରି ସରକାରୀ ଦଳର ଯୁବ ସଂଗଠନରେ ଯୋଗ ଦେଇଛି ।

ବିନୟ ଚରିତ୍ର ଚିତ୍ରଣ ମଧ୍ୟରେ ଔପନ୍ୟାସିକ ବିପ୍ଳବ ପାଇଁ ଉଚ୍ଚ କଣ୍ଠରେ ଧ୍ୱନି ଦେଉଥିବା ନକ୍ସଲ ବିପ୍ଳବୀ ଯୁବନେତାମାନଙ୍କ ସ୍ୱାର୍ଥପରତା; ଦାୟିତ୍ୱହୀନତା ଓ ବ୍ୟକ୍ତିକେନ୍ଦ୍ରିକତାର ମୁଖା ପାଠକମାନଙ୍କ ଆଖିରେ ଖୋଲି ଧରିଛନ୍ତି । ଯେଉଁମାନେ ସରକାରୀ ସ୍ୱୈରାଚାର ବିରୁଦ୍ଧରେ ଲଢେଇ କରନ୍ତି; ସେମାନେ ନିଜେ କିପରି ସଙ୍କୀର୍ଣ୍ଣ ସ୍ୱାର୍ଥର ଶିକାର ହୋଇ ବିପ୍ଳବକୁ ପଛରୁ ଛୁରିମାରନ୍ତି; ବିନୟ ତାର ଏକ ଉଜ୍ଜ୍ୱଳ ଉଦାହରଣ ହୋଇ ଏ ଉପନ୍ୟାସରେ ଠିଆ ହୋଇଛି ।

ହୋଳି ଗୋବିନ୍ଦ ମଲ୍ଲିକଙ୍କ ନିର୍ବାଚନ ଲଢ଼ିବା ପ୍ରବୃତ୍ତି; ପକ୍ଷ ପରିବର୍ତ୍ତନ କରି ବିନୟ ଯୁବକଂଗ୍ରେସରେ ଯୋଗ ଦେବାପରେ ମଧ୍ୟ ପୂର୍ଣ୍ଣାଙ୍ଗ ବିପ୍ଳବର ସଫଳତା ପାଇଁ; (ଯେଉଁ ପୂର୍ଣ୍ଣାଙ୍ଗ ବିପ୍ଳବର ଅର୍ଥ ନିଜେ ସ୍ୱାମୀଙ୍କର ମଧ୍ୟ ଜାଣିନଥିଲେ !) ସ୍ୱାମୀଙ୍କର ଓ ବୀରକିଶୋରଙ୍କ ନେତୃ-ତ୍ୱରେ ଓଡ଼ିଶାରେ ବ୍ୟାପକ ଆକାର ଧାରଣ କଲା । ଅନ୍ୟ ବିରୋଧୀ ଦଳମାନେ ମଧ୍ୟ ଏହି ଆନ୍ଦୋଳନରେ ଯୋଗ ଦେଲେ । ଫଳରେ ସରକାରୀ ଦଳ ଆତଙ୍କିତ ହୋଇ ଉଠିଲେ । ଏହି ଆତଙ୍କର ଶିହରଣ ଗୁଜୁରାଟ, ମହାରାଷ୍ଟ୍ର, ବିହାର, ଓଡ଼ିଶାରୁ ସଂକ୍ରମିତ ହୋଇ ଦିଲ୍ଲୀର ମେରୁଦଣ୍ଡ ଦୋହଲାଇ ଦେଲା । ଫଳରେ ଦେଶରେ ଜାରି ହେଲା ଇମର୍ଜେନ୍ସି । ସ୍ୱାଧୀନତା ସଂଗ୍ରାମୀ ସ୍ୱାମୀଙ୍କର, ବିପ୍ଳବୀ ଯୁବ ପରିଷଦର ବୀରକିଶୋରଙ୍କ ଠାରୁ ଆରମ୍ଭ କରି ପକ୍ଷ ପରିବର୍ତ୍ତନ କରି ଯୁବ କଂଗ୍ରେସରେ ଯୋଗ ଦେଇଥିବା ବିନୟ ପର୍ଯ୍ୟନ୍ତ ସମସ୍ତେ ଅନ୍ଧକାରର କାରାଗୃହରେ କ୍ଷିପ୍ତ ହେଲେ ।

ପ୍ରଥମ ପର୍ବରେ ଗାନ୍ଧିଜୀଙ୍କ ଆହ୍ୱାନଥିଲା, ଲୋକେ ଜେଲ୍ ଭରନ୍ତୁ । ଦ୍ୱିତୀୟ ପର୍ବରେ ସରକାର ନିଜେ ଜେଲ ଭରିବାର କାର୍ଯ୍ୟକ୍ରମ ହାତକୁ

ନେଲେ । ତତ୍କାଳୀନ ଅବସ୍ଥାରେ ଅନ୍ଧକାର ଦୂର କରିବା ପାଇଁ ଗାନ୍ଧିଜୀ ପ୍ରଥମ ପର୍ବରେ ଯେଉଁ ତୈଳଦୀପଟି ଜାଳି ଥିଲେ ତାହା ଦ୍ୱିତୀୟ ପର୍ବରେ ଉଜ୍ଜ୍ୱଳ ବିଦ୍ୟୁତାଲୋକରେ ପରିଣତ ହେଲା । ତୃତୀୟ ପର୍ବରେ ତାହା ସର୍ବ ସର୍ଜିତ, ବିଦ୍ୟୁତ ତାରର ବିଭ୍ରାଟ ଘଟି ଦେଶସାରା ଏକ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟି କଲା । ଏ ବିଶୃଙ୍ଖଳାରେ ଯେଉଁଠି ମାଳିକାର ପ୍ରଚଳନ ବେଶି, ସେଠି ଭାଗବତର ଦ୍ୱାଦଶ ସ୍କନ୍ଧ ପଢ଼ା ଗାଁରେ ଲୋକେ ଭୟେ ଭୟେ କଥାବାର୍ତ୍ତା ହେଲେ, "ଘୋର କଳିକାଳ ଆସିଗଲା । ସାଧୁ ସନ୍ଥମାନଙ୍କୁ ଦେହଛପା ଦେଇ ରହିବାକୁ ହେବ ? ପର୍ବତ ଗୁମ୍ଫାରେ ବା ଚତୁର୍ଭୁଜମୟ କାରା-ଗାରରେ ।" ପ୍ରଥମ ପର୍ବର ଯେଉଁ ବୟସ୍କ ବ୍ୟକ୍ତିମାନେ କୌଣସି କାରଣରୁ ପୋଲିସ ସନ୍ଦେହ ଚକ୍ଷୁରେ ପଡ଼ିଲେ ନାହିଁ; ସେମାନେ ଶାରଳା ଦାସଙ୍କ କଳ୍ପିତ ସ୍ତମ୍ଭ ଉପରେ ଅବସ୍ଥାପିତ ବେଲାଳସେନଙ୍କ ଛିନ୍ନମସ୍ତକ ଯେପରି ଦିବ୍ୟଚକ୍ଷୁରେ ମହାଭାରତ ଯୁଦ୍ଧ ଦେଖୁଥିଲା, ସେହିପରି ସେମାନେ ତୃତୀୟ ପର୍ବର ଘଟଣାବଳୀ ଲକ୍ଷ୍ୟକଲେ ।" (୮)

## ପାଦଟୀକା

(୧) 'ତୃତୀୟ ପର୍ବ' ପୃଷ୍ଠା—୧୯୮
(୨) " " —୨୧୯
(୩) " " —୬
(୪) " " —୪୩
(୫) " " —୬୭
(୬) " " —୯୭
(୭) " " —୫୦
(୮) " " —୨୪୧

ମୁଖ୍ୟ ଅଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରାଜଧାନୀ କଲେଜ
ଭୁବନେଶ୍ୱର-୯

# ମୟୁରଭଞ୍ଜ ମିଶ୍ରଣ ଓ ଡ଼ଃ ମହତାବ

ରାଧାଶ୍ୟାମ ଦାସ

୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭକଲା ପରେ ଗଡ଼ଜାତ ଆନ୍ଦୋଳନ ପୁଣି ତେଜି ଉଠିଲା । କୁହୁଳୁଥିବା ପାଉଁଶରୁ ଉଠିଲା ଅଗ୍ନି ସ୍ଫୁଲିଙ୍ଗ । ଗୁଳିକୁ ଲୋକେ ଛାତି ପତେଇ ଦେଲେ । ଦୁର୍ଭେଦ୍ୟ ପାଚେରି ଅଜାଡ଼ି ହୋଇପଡ଼ିଲା । ହଜାର ହଜାର ଲୋକେ ଗଡ଼ଜାତ ଛାଡ଼ି ବାହାରକୁ ପଳାଇ ଆସିଲେ ।

ଏତିକବେଳେ ଓଡ଼ିଶାର ବରେଣ୍ୟ ନେତା ଉତ୍କଳ କେଶରୀ ଡ଼ଃ ମହତାବ ତାଙ୍କ ଦୂରଦର୍ଶିତା ଓ ଅଭୂତପୂର୍ବ ରାଜନୈତିକକୂଟନୀତି କୌଶଳ ପ୍ରୟୋଗ କରି ତାଙ୍କ ସାଥିମାନଙ୍କୁ ସଂଗଠିତ କରି ଧୈର୍ଯ୍ୟ ଓ ବୁଦ୍ଧିମତା ପ୍ରଦର୍ଶନ କରି ଆନ୍ଦୋଳନକୁ ସୁସଂଯତ ଭାବରେ ଆଗେଇ ନେଲେ । ଏଣେ ଗଡ଼ଜାତର ରଜା ମହାରଜା, ପଲିଟିକାଲ ଡ଼ିପାର୍ଟମେଣ୍ଟ ଓ ସର୍ବୋପରି ଭାରତ ସରକାରଙ୍କ ସହିତ ଘନଘନ ଆଲୋଚନା କରି ଗଡ଼ଜାତ ଆନ୍ଦୋଳନର ପରିସମାପ୍ତି ପାଇଁ ତତ୍ପର ହେଲେ । ପ୍ରସିଦ୍ଧ 'ବରଦୋଲି' ସତ୍ୟାଗ୍ରହର ସଂଗଠକ ଓ ସେନାପତି ମହାତ୍ମାଜୀଙ୍କ ଅହିଂସା ଆନ୍ଦୋଳନର ନାୟକ ସର୍ଦ୍ଦାର ପଟେଲ ଡ଼ଃ ମହତାବଙ୍କ ସହ ପରାମର୍ଶ କରି ୧୯୪୭ ମସିହାରେ ଓଡ଼ିଶା ଆସିଲେ । ରାଜା ମହାରାଜାମାନଙ୍କ ସଙ୍ଗେ ସାର୍ବଭୌମ୍ୟ ଭାରତ ସରକାରଙ୍କ ସମ୍ପର୍କ, କ୍ଷମତା ଓ ଲକ୍ଷ ବିଷୟ ଆଲୋଚନା କରି ପ୍ରସ୍ତୁତ କରାଯାଇଥିବା ମିଶ୍ରଣ-ପତ୍ରରେ ସ୍ୱାକ୍ଷର କରିବାକୁ ପରାମର୍ଶ ଦେଲେ ଓ ସମସ୍ତେ ସେଥିରେ ଦସ୍ତଖତ ଦେବାଛଡ଼ା ଅନ୍ୟ ଉପାୟ ନଥିଲା । ଆଇନ ସମ୍ମତ ଭାବରେ ଏହା କରାଗଲା ପୁଣି ବିନା ରକ୍ତପାତରେ । ଗଡ଼ଜାତସମୂହ ୧୯୪୮ ମସିହାରେ ଓଡ଼ିଶା ପ୍ରଦେଶ ସଙ୍ଗେ ମିଶିଲା ଯାହା

କ ଭାରତର ଅନ୍ୟାନ୍ୟ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣକୁ ବାଟ ଦେଖାଇ ଦେଲା ।

ଏହି ରାଜନୈତିକ ଦୂରଦୃଷ୍ଟି ଅଭାବରେ ମୟୂରଭଞ୍ଜ ରାଜ୍ୟରେ ଯେଉଁ ଅଶାନ୍ତିର ବାତାବରଣ ସୃଷ୍ଟି ହେଲା, ଏଥିପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଯେଉଁମାନେ ଦାୟୀ, ଇତିହାସ ତାହା ପ୍ରକାଶ କରିବ । ସରଳ, ନିରୀହ ଆଦିବାସୀମାନଙ୍କୁ ହାତବାରିସୀ କରି ଓଡ଼ିଶା ବିରୁଦ୍ଧରେ ଯୁଦ୍ଧଂଦେହୀ ଡାକରା ଦେବାକୁ ଉତ୍ସାହିତ କରାଗଲା । ସ୍ୱତନ୍ତ୍ର ରାଜ୍ୟ ଗଠନ ପାଇଁ ବା ମୟୂରଭଞ୍ଜ ଅଲଗା ରହିବା ପାଇଁ ଶିକ୍ଷିତ ସମାଜକୁ ଆହ୍ୱାନ ଦିଆଗଲା । ରାଜକୋଷରୁ ଅଜସ୍ର ଅର୍ଥହାନି ହେଲା । ଅଫିସର-ମନ୍ତ୍ରୀ ଓ ଆଇନଜ୍ଞମାନେ ଦିଲ୍ଲୀ ଦୌଡ଼ିଲେ । ସର୍ଦ୍ଦାର ପଟେଲ ସେମାନଙ୍କୁ କହିଲେ, "ଏ ଯେଉଁ ଭାରତର ମାନଚିତ୍ର କାନ୍ଥରେ ଝୁଲୁଛି, ଦେଖୁଥିବେ, ଏହି ବିରାଟ ଭାରତବର୍ଷରେ ମୟୂରଭଞ୍ଜର ସ୍ଥିତି ଗୋଟିଏ ବିନ୍ଦୁ ଭଳି । କିପରି ଆଶା କରୁଛନ୍ତି ଯେ ମୟୂରଭଞ୍ଜ ଅଲଗା ହୋଇ ରହିବ ।

ବାରିପଦାର ଶିକ୍ଷିତ ଉତ୍ସାହୀ ଯୁବକଙ୍କଦ୍ୱାରା ମୟୂରଭଞ୍ଜ ରାଜ୍ୟରେ ଉପୁଜିଥିବା ସମସ୍ୟା, ଗଣ୍ଡଗୋଳ ଓ ରାଜନୈତିକ ଗୁଳିବାଜିର ଖେଳ ବିଷୟରେ ଡଃ ମହତାବଙ୍କୁ ବରାବର ଅବହିତ କରାଯାଉଥାଏ । ରାଜ୍ୟରେ ଅଶାନ୍ତି, ଅସନ୍ତୋଷ ଲୁହୁଳିଥିଲେ ମଧ୍ୟ, ପାଲଟା ବିସ୍ଫୋରଣ ଲାଗି ମଧ୍ୟ ଚେଷ୍ଟା କରାଯାଉଥାଏ । ମନେ ହେଉଥିଲା ମୟୂରଭଞ୍ଜ ରାଜତନ୍ତ୍ରର ପ୍ରତିଷ୍ଠିତ ସ୍ୱାଧୀନ ଭାରତ ଓଡ଼ିଶା ସରକାରଙ୍କ ବିରୁଦ୍ଧରେ ଏହା ଏକ ପ୍ରକାଶ୍ୟ ଯୁଦ୍ଧ ଘୋଷଣା ଏବଂ ମିଶ୍ରଣ ବିଳମ୍ବ ହେବା ଦ୍ୱାରା ପ୍ରତିଦିନ ଗୋଟିଏ ଗୋଟିଏ ନୂଆ ସମସ୍ୟା ଉପୁଜୁଥାଏ ।

ଭାରତ ସରକାର ମି: ଡେରେକ୍ଙ୍କୁ ଶାସନ ପରିଚାଳନା କରିବାକୁ ମୟୂରଭଞ୍ଜ ପଠାଇଲେ । ଡେରେ ଆସିବା ଦିନ ବାରିପଦା କଚେରୀପାଖ ରାସ୍ତା କଡ଼ରେ ଗୋଟାଏ ବଡ଼ ପୋଷ୍ଟର କିଏ ମାରିଦେଇଥାଏ । ସେଥିରେ ଜଣେ ମନ୍ତ୍ରୀଙ୍କ ଗାଡ଼ିକୁ ଡେରେଙ୍କ ଚପ୍ରାଶୀ ଦେଖା କରିବାକୁ ଛାଡୁ ନ ଥିବାରୁ ଚିଠି କରାଯାଇଥିଲା ।

ମି. ଶ୍ରୀଙ୍କ ଶାସନ କାଳରେ ମଧ୍ୟ ଠାଏ ଠାଏ ନାନା ଗଣ୍ଡଗୋଳ ମୁଣ୍ଡ ଟେକିଲା । ଶ୍ରୀ ସୋନାରାମ ସୋରେନ୍ ତାଙ୍କ ଆଦିବାସୀମାନଙ୍କୁ ସଂଗଠିତ କରିବାରେ ଲାଗିଲେ । ସଭା କଲେ । ଗରମ ଗରମ ବକ୍ତୃତା ଦେଲେ । ଗୀତ ଗାଇଲେ ଯେ "ପୋଖରୀ ହୁଡ଼ାରେ ଯେପରି ଧଳା ବଗମାନେ ବସିଛନ୍ତି— ପୋଖରୀରୁ ମାଛ ଖାଇବା ପାଇଁ, ଓଡ଼ିଶାରେ ମିଶିଲେ ସେମାନେ ଆମକୁ ବଗ ପରି ଗିଳି ଦେବେ । ବଗକୁ ଘଉଡ଼ାଅ ।"

ନାନା ଚକ୍ରାନ୍ତ ଆରମ୍ଭ ହେଲା । ଲୋକମତକୁ ବିଭ୍ରାନ୍ତ କରିବାକୁ ଚେଷ୍ଟା କରାଗଲା ।

ସାରା ମୟୂରଭଞ୍ଜର ଆଦିବାସୀମାନେ ସାନ୍ତାଳ ନୁହଁନ୍ତି । ପୁଣି ସବୁ ସାନ୍ତାଳ ଯେ ସଂଗଠନରେ ଯୋଗଦେଇଥିଲେ ତା ମଧ୍ୟ ନୁହେଁ । ଯେଉଁମାନେ ଗଣ୍ଡଗୋଳ କରିବାକୁ ଏକାଠି ହେଲେ ସେମାନଙ୍କ ସଂଖ୍ୟା ସମସ୍ତ ସାନ୍ତାଳ ସଂଖ୍ୟାର କେତେ ଓ ମୋଟ ଆଦିବାସୀ ସଂଖ୍ୟାର କେତେ ଏ ବିଷୟ ଆଲୋଚନାକୁ ଆଣିଲେ ଦେଖାଯିବ ଯେ ଅତିକମ୍ । ରାଜ୍ୟର ମୋଟ ଲୋକସଂଖ୍ୟା ତୁଳନାରେ ଏମାନେ କିଛି ନୁହେଁ । ତେଣୁ ପ୍ରତିଷ୍ଠିତ ଓଡ଼ିଶା ସରକାର ଏଥିରେ ଦୋହଲି ଯିବାର ଯେଉଁ କଳ୍ପନା ତାହା ପଣ୍ଡ ହୋଇ ଯାଇଥିଲା ।

ମୟୂରଭଞ୍ଜର ଚିଫ୍ ମିନିଷ୍ଟର ଶ୍ରୀ ଶରତ ଚନ୍ଦ୍ର ଦାସ ଜଣେ କଂଗ୍ରେସର ନେତୃସ୍ଥାନୀୟ ବ୍ୟକ୍ତି ଓ ସେ ମଧ୍ୟ ପ୍ରଜାମଣ୍ଡଳ ଆନ୍ଦୋଳନର ଜଣେ ନେତା । ତାଙ୍କ ସଙ୍ଗରେ ମୋର ବ୍ୟକ୍ତିଗତ ପରିଚୟ ଥିବାରୁ ଥରେ ତାଙ୍କୁ ଦେଖା କରି ମୟୂରଭଞ୍ଜରେ ଲାଗି ରହିଥିବା ଆନ୍ଦୋଳନ ଓ ଅଶାନ୍ତି ବିଷୟରେ ପଚାରିଲି । ମାତ୍ର ସେ ଏ ସବୁକୁ ଗୁଜବ ବୋଲି କହିଲେ ।

ଆଉ ଥରେ ଗୋଟିଏ ଫୁଟବଲ ମ୍ୟାଚ୍‌ରେ ସେ ଶିଲ୍ଡ ଦେବାକୁ ଆସିଥିଲେ । ମତେ ଡାକନେଇ ପାଖରେ ବସାଇଲେ । ସେତେବେଳକୁ

ମୟୂରଭଞ୍ଜ ମିଶ୍ରଣ ପାଖେଇ ଆସୁଥାଏ । ଉତ୍ସବ ଶେଷରେ ସେ ଗଳ୍ପ-ବେଳକୁ କେତେକ ଯୁବକ ମୟୂରଭଞ୍ଜ ଓଡ଼ିଶା ସାଙ୍ଗରେ କେବେ ମିଶୁଛି ପଚାରିଲେ । ଉତ୍ତରରେ ସେ କହିଲେ "ରାଧାଶ୍ୟାମ ବାବୁଙ୍କୁ ପଚାର ।"

ଉତ୍ତରରେ ମୁଁ କହିଲି ଯେ "ଆପଣମାନେ ଶୀଘ୍ର ଏକାଠି ବସିବେ ଆମେ ସେଇ ଅପେକ୍ଷାରେ ରହିଲୁ ।"

ଉଚ୍ଚ ଶିକ୍ଷିତ ସମ୍ଭ୍ରାନ୍ତ ମୂଳଆ ଲୋକେ ଓ ସର୍ଦ୍ଦାରମାନଙ୍କ ମଧ୍ୟରୁ କେତେକ ରାଜ୍ୟର ଏ ଗୋଳମାଳିଆ ଅବ୍ୟବସ୍ଥା ଓ ଗଣ୍ଡଗୋଳର ଆଶଂକା ଦେଖି ମହତାବଙ୍କ ସଙ୍ଗେ ପରାମର୍ଶ ମଧ୍ୟ କରିବାକୁ ସ୍ଥିର କରି ସାରିଲେଣି ।

ରାଇରଂଗପୁର ସବ୍‌ଡ଼ିଭିଜନରେ ସାଧାରଣ ସଭାମାନ ଅନୁଷ୍ଠିତ ହେଲା । ଡାକବାଜ ଯନ୍ତ୍ର ବ୍ୟବହାର ସଭାମାନଙ୍କରେ କରାଗଲା । ବର୍ତ୍ତମାନ ଓଡ଼ିଶା ସଙ୍ଗେ ମିଶିବା ପାଇଁ ମୟୂରଭଞ୍ଜରେ ଲୋକମତ ପ୍ରବଳ ଭାବେ ପ୍ରକାଶ ପାଇଲା । ଆଦିବାସୀମାନଙ୍କ ମଧ୍ୟରେ ମଧ୍ୟ ବିଭେଦ ଓ ଦ୍ୱିମତ ଦେଖାଗଲା । ବାଦାମପାହାଡ଼ ଅଞ୍ଚଳର ଗାନ୍ଧିବାଦୀ ଆଦିବାସୀ ନେତା ଶ୍ରୀ କାହ୍ନୁ ମାଝି ଅହିଂସା ସଂଗ୍ରାମର ଗୀତ ଗାଇ ବୁଲିଲେ । ସୋମନାଥ ବାବୁଙ୍କ ତଥାକଥିତ ଦୁର୍ଗ ବାମନଘାଟିରେ ସୋମନାଥ ବାବୁଙ୍କ ବିରୁଦ୍ଧରେ କେତେକ ଆଦିବାସୀ ସ୍ୱର ଉଠାଇଲେ ।

ରାଇରଙ୍ଗପୁରରେ ଅନେକ ଯୁବକ ଓ୍କଳ ଥିଲେ । ମାତ୍ର ସେମାନେ ଖୋଲା ଖୋଲି ପଦାକୁ ବାହାରୁ ନଥିଲେ । ଓଡ଼ିଶା ସଙ୍ଗେ ନମିଶିଲେ ମୟୂରଭଞ୍ଜର ଅବସ୍ଥା କ'ଣ ହେବ ସେମାନେ ଅନୁମାନ କରି ପାରୁଥିଲେ ।

ଏପରି ଏକ ଅବସ୍ଥାରେ ରଗେ ସାହେବ ରାଇରଙ୍ଗପୁର ଅବସ୍ଥା ଅନୁଧ୍ୟାନ କରିବାକୁ ଆସିଲେ । ପୋଲିସ ସାହେବ ୬ ଶ୍ରୀ ରାମଚନ୍ଦ୍ର ଦାଶ ମଧ୍ୟ ତାଙ୍କ ସହ ଯାଇଥିଲେ । ରାଇରଙ୍ଗପୁରର ଓ୍କଳମାନେ ଗୋଟିଏ ଶୋଭାଯାତ୍ରା କରି ରଗେ ସାହେବଙ୍କୁ ତାଙ୍କ ବଙ୍ଗଳାଠାରେ ଭେଟିଲେ ।

ଶ୍ରୀ ସୁଧୀର ଘୋଷ ଓ ମୁଁ ଥରେ ବାଲେଶ୍ୱର ଯାଇଥିଲୁ । ସେଠାରୁ ଶୁଣିଲି ସୋନାରାମ ବାବୁ ବଣେଇଆଡ଼କୁ ସଦଳବଳେ ବହୁତ ଆଦିବାସୀ ଦଳଙ୍କୁ ନେଇ ସଭା କରିବାକୁ ଆସୁଛନ୍ତି । ମୁଁ ସୁଧୀର ବାବୁଙ୍କୁ କହିଲି, ଏହା ଗୋଟିଏ ସୁଯୋଗ ଓ ଆମେ ଶ୍ରୀ ସୋରେନ୍‌ଙ୍କ ସହ ଦେଖା କରିବା । ହଠାତ୍ ବାହାରିଲୁ । ବଣେଇ ପାଖରେ ଦେଖାଗଲା ପ୍ରାୟ ଦୁଇତିନି ହଜାର ଲୋକ ଧାଡ଼ି କରି ଚାଲିଛନ୍ତି । ଆଗରେ ଗୋଟିଏ ଶ୍ୱେତ ଘୋଡ଼ା ଉପରେ ତାଙ୍କର ନେତା ଶ୍ରୀ ସୋରେନ୍ ବସିଥାନ୍ତି । ସେ ଗୋଟିଏ ସବୁଜ ରଙ୍ଗର ପୋଷାକ ପିନ୍ଧିଥାନ୍ତି । ପ୍ରାୟ ଶହେଗଜ ଦୂରରେ ଗାଡ଼ି ରଖି ଆମେ ତାଙ୍କୁ ଦେଖା କରିବାକୁ ଠିଆ ହେଲୁ । ସୋନାରାମ ବାବୁ ଦେଖା ହେଲେ । କଥାବାର୍ତ୍ତା ପରେ ମୁଁ ସୁଧୀର ବାବୁଙ୍କୁ ଚିହ୍ନାଇ ଦେଲି । ତାଙ୍କୁ କଥା ପ୍ରସଙ୍ଗରେ କହିଲି ଯେ ଏ ବାବୁ କଟକରୁ ଆସିଛନ୍ତି—ଟିକିଏ କଥା ଅଛି । ସେ ଆମ ମଟର ପାଖକୁ ଆସିଲେ ଓ ଆମେ ତାଙ୍କୁ କଥା ପ୍ରସଙ୍ଗରେ କହିଲୁ ଯେ, "କଟକରୁ ଖବର ଆସିଛି ଯେ ଆପଣ ସାରା ଓଡ଼ିଶାର ଆଦିବାସୀ ଉନ୍ନୟନର ଭାର ନିଅନ୍ତୁ । ତାହାଦ୍ୱାରା ଆପଣ ବହୁତ ଆଦିବାସୀ ସମାଜର ସେବା କରିପାରିବେ । କେବଳ ମୟୂରଭଞ୍ଜରେ ଆନ୍ଦୋଳନ କଲେ ତ ତା' ପାଇପାରିବେ ନାହିଁ । ମୟୂରଭଞ୍ଜ ଓଡ଼ିଶାର—ଏଥିରେ କିଛି ସନ୍ଦେହ ନାହିଁ ।"

ସେ କହିଲେ, "ମୁଁ ବିଚାର କରି ମତାମତ ଜଣାଇବି ।" ତା'ପରେ ଆମ ସହ ହାତ ମିଳାଇ ହସି ହସି ବିଦାୟ ନେଲେ ।

କିନ୍ତୁ ଏହାଦ୍ୱାରା ଗୋଟିଏ ବଡ଼ ପ୍ରଚାର ତାଙ୍କ ଘାଟି ଅଞ୍ଚଳରେ ହୋଇଗଲା ଯେ ସୋନାରାମ ବାବୁ ଓଡ଼ିଶାରେ ମିଶିବା ପାଇଁ ପ୍ରସ୍ତୁତ ଓ ତାର କଥାବାର୍ତ୍ତା ହୋଇଗଲାଣି ।

+ + +

ହଠାତ୍ ଦରକାର ପଡ଼ିଲା କରଞ୍ଜିଆ ଯିବାକୁ । ରାତିରେ ଜଣେ ଚିହ୍ନା ଟ୍ରକ୍ ଡ୍ରାଇଭର ସଙ୍ଗେ ଗଲି । ରାତି ୧୨ଟାରେ ପହଞ୍ଚି ସେଠାକାର କେତେକ ବନ୍ଧୁ ଓ ଶ୍ରୀ ଗିରିଶ୍ ଚନ୍ଦ୍ର ଦାସଙ୍କ ସଙ୍ଗେ ମିଶ୍ରଣ ବିଷୟରେ

କଥାବାର୍ତ୍ତା କରି ସକାଳେ ଟ୍ରକ୍‌ରେ ବାଦାମପାହାଡ଼ ଖଣି ଅଞ୍ଚଳକୁ ଗଲି । ସେଠାକାର ଠିକାଦାର ଯେଉଁମାନେ ଚହ୍ନା : ପରିଚୟ ଥିଲେ ତାଙ୍କ ସଙ୍ଗେ ମିଶ୍ରଣ ସମ୍ପର୍କରେ ବହୁ କଥାବାର୍ତ୍ତା ହେଲ । ତାଙ୍କପାଖେ ବହୁ ଆଦିବାସୀ କୁଲି କାମ କରନ୍ତି । ସେମାନେ ଓଡ଼ିଶା ବିରୁଦ୍ଧରେ ଯେପରି ସୋନାରାମ ବାବୁଙ୍କ ଦଳ ସହ ନ ମିଶନ୍ତି ତା ନେଇ ମଧ୍ୟ ଆଲୋଚନା କଲି । କାହ୍ନୁ ମାଝି ଆସିଲେ । ସେ ଜଣେ ନଷ୍ଠାପର ଗାନ୍ଧିବାଦୀ । ୮।୧୦ ଜଣ ତାଙ୍କର କର୍ମୀ କାମ କରିବାକୁ ବାହାରି ଆସିଲେ ଓ ମିଶ୍ରଣ ସପକ୍ଷରେ ମତପ୍ରଚାର କରିବାକୁ ସମସ୍ତେ ଶପଥ କଲେ ।

ସେଠୁ ଗୋରୁମହିଷାଣୀ ଗଲି । ଆଗରୁ ବହୁବାର ଗୋରୁମହିଷାଣୀ ଆସେ । ଆଜ କିନ୍ତୁ ଗୋଟାଏ ଅଚିହ୍ନା ଲୋକପରି ଏଣେତେଣେ ବୁଲିଲି— ଏ ଭୂଇଁ ଏ ଯାଏଁ ଆମର ହୋଇନି—ଅଥଚ କାଳକାଳରୁ ଏହା ଆମର— ମିଶ୍ରଣ ହିଁ ବର୍ତ୍ତମାନ ଏକମାତ୍ର କାମ୍ୟ ।

କେତେକ ଲୋକଙ୍କ ସହ ସମ୍ପର୍କ ରଖିଲି । ଦେଖିଲି ସମସ୍ତେ ଓଡ଼ିଶାରେ ମିଶିବା ପାଇଁ ଆଗ୍ରହୀ । ହେଲେ ଖୋଲଖୋଲି ମତପ୍ରକାଶର ସାହସ ନାହିଁ । ସେମାନେ ଭାବନ୍ତି ଯେ "ମତପ୍ରକାଶ ଅର୍ଥ ମହାରାଜାଙ୍କ ବିରୁଦ୍ଧରେ ଯିବା ।"

"ମୟୂରଭଞ୍ଜର ସାଧାରଣ ଲୋକେ ମତପ୍ରକାଶ ନ କଲେ ଭାରତ ସରକାର କ'ଣ ପାଇଁ ମୟୂରଭଞ୍ଜକୁ ଓଡ଼ିଶାରେ ମିଶାଇବା ପାଇଁ ମତ ଦେବେ ?" ମିଶ୍ରଣ ପାଇଁ ଲୋକେ ଚାହୁଁଛନ୍ତି ବୋଲି ମହାରଜା ଜାଣିପାରୁ ନାହାନ୍ତି । ତାଙ୍କ ମନ୍ତ୍ରୀମଣ୍ଡଳ ଏ ଖବର ତାଙ୍କୁ ଦେଉନାହାନ୍ତି । ମହାରଜା ପ୍ରଜାଙ୍କ ମତାମତ ମିଶ୍ରଣ ସପକ୍ଷରେ ଜାଣିଲେ ଓଡ଼ିଶାରେ ମୟୂରଭଞ୍ଜ ମିଶିବା ସିଦ୍ଧାନ୍ତ ହୋଇଯିବ ।

+ + +

ମୟୂରଭଞ୍ଜର ପ୍ରକୃତ ପରିସ୍ଥିତି ବିଷୟରେ ଡ଼ଃ ମହତାବ ସବୁକଥା ଜାଣୁଥିଲେ । ମଝିରେ ମଝିରେ ତାଙ୍କ ସଙ୍ଗେ ବିଭିନ୍ନ କାର୍ଯ୍ୟ ଯୋଗୁ ଦେଖା କରିବାକୁ ପଡ଼େ । ତାଙ୍କୁ କୌଣସି କାର୍ଯ୍ୟରେ ବିବ୍ରତ ହେବାର ଦେଖିନାହିଁ ।

ସେ ସର୍ଦ୍ଦାର ପଟେଲ ଓ ମହାରାଜାଙ୍କ ସହ ବରାବର ସମ୍ପର୍କ ରଖିଥାନ୍ତି । ମୟୂରଭଞ୍ଜର ବିଭିନ୍ନ ଶ୍ରେଣୀର ଜନମତ ପ୍ରତି ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଅତି ଧୈର୍ଯ୍ୟର ସହ ସେ ପରିସ୍ଥିତିକୁ ଲକ୍ଷ୍ୟ କରୁଥାନ୍ତି । ତାଙ୍କ କର୍ମୀ ପ୍ରତି ବ୍ୟବହାର, ଖୋଲା ମନୋଭାବର କଥାବାର୍ତ୍ତା, ନାନା ଉତ୍ସାହ ପ୍ରଦାନ ଓ ଶ୍ରଦ୍ଧା ପ୍ରକୃତରେ ଉଚ୍ଚକୋଟୀର । ତାହାଁ ସଙ୍ଗେ କର୍ମୀର ବ୍ୟକ୍ତିଗତ ଦୁଃଖ କଷ୍ଟରେ ତାଙ୍କର ଯଥେଷ୍ଟ ଅନୁଭୂତି ଥାଏ । ଲୋକସମ୍ପର୍କ ପ୍ରତିଷ୍ଠା ଦିଗରେ ତାଙ୍କପରି ଆଉ କିଏ ନେତା ଅଛନ୍ତି କି ନାହିଁ ମୁଁ ଜାଣେ ନାହିଁ । ଅସଂଖ୍ୟ ଲୋକଙ୍କ ସଙ୍ଗେ, ଏପରିକି ଗାଁ ଗଣ୍ଡାରେ ମଧ୍ୟ ତାଙ୍କର ବ୍ୟକ୍ତିଗତ ସମ୍ପର୍କ ଥାଏ । ଚିଠି ଖଣ୍ଡେ ଲେଖିଲେ ନିଜେ ତାର ଉତ୍ତର ଦିଅନ୍ତି । ଜେଲରେ ଥାଇ ମଧ୍ୟ ବିଭିନ୍ନ ଅଞ୍ଚଳର ଖବର ସେ ରଖିପାରୁଥିଲେ । ଶେଷଥର ଜେଲରୁ ଫେରି (ଭଞ୍ଜନଗର ଜେଲ) ଯେଉଁସବୁ କଥା ଗାଁଗହଳରେ ହେଉଛି ତାର ଠିକନଖି ବିବରଣୀ ତାଙ୍କ ସହ ଦେଖା କରୁଥିବା ଲୋକଙ୍କୁ କହି ପାରିଛନ୍ତି । ମୁଁ ମଧ୍ୟ ଦେଖା କରିବାକୁ ଯାଇ ଶୁଣିଛି । ଖାଲି ସେତିକି ନୁହେଁ, ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାବେଳେ ସେ ଜେଲ୍‌ରୁ ଫେରି ବିଶ୍ୱସ୍ତ ସୂତ୍ରରୁ ଖବର ନେଇ ମଧ୍ୟ ଜାଣିଥିଲେ ଯେ କମିଶନର ମି: ଫିଲିପ୍‌ସ ଓଡ଼ିଶାକୁ ବିହାରର ଗୋଟିଏ ସବ୍‌ପ୍ରଭିନ୍‌ସ ଭାବେ ରଖିବାର ପରାମର୍ଶ ବ୍ରିଟିଶ୍ ସରକାରଙ୍କୁ ଦେଇଥିଲେ । ସେ ନେଇ ବହୁ ଉଣ୍ଠାଚକଟା ଲାଗିଲା । ଅବଶ୍ୟ ତାହା ପଣ୍ଡ ହୋଇଗଲା । ରଣପୁରର ପଲିଟିକାଲ ଏଜେଣ୍ଟ ମି: ବେଜେଲ୍‌ଗେଟ୍‌ଙ୍କୁ ଲୋକେ ମାରିଦେବା ପରେ ସେ ମଧ୍ୟ ସଙ୍ଗେ ସଙ୍ଗେ ରାତିରେ ସେଠା ଲୋକଙ୍କୁ ସଂଗଠିତ କରିବାକୁ ଯାଇ ସେହିଦିନ ଓଡ଼ିଶା ବାହାରକୁ ଟ୍ରେନ୍‌ରେ ଯାଇଥିଲେ । ତାଙ୍କୁ ଷଡଯନ୍ତ୍ରରେ ସମ୍ପୃକ୍ତ କରିବାର ଚେଷ୍ଟା ଚାଲିଥିଲା । ମାତ୍ର ଜଣେ ଉଚ୍ଚ ମିଲିଟାରୀ ଅଫିସର ଟ୍ରେନ୍‌ରେ ଡଃ ମହତାବ ତାଙ୍କ ସହ ଯାଉଥିବା କଥା କହିଲାରୁ ତାଙ୍କ ବିରୁଦ୍ଧର ଅଭିଯୋଗ ପ୍ରମାଣିତ ହେଲା ନାହିଁ । ନଚେତ୍ ଇତିହାସ ବଦଳି ଯାଇଥାନ୍ତା ।

ମୁଁ ଡଃ ମହତାବଙ୍କୁ ବିଗତ ଅର୍ଦ୍ଧଶତାବ୍ଦୀ ଉପରେ ଜାଣେ । ତାଙ୍କ ସଙ୍ଗେ କାର୍ଯ୍ୟ କରିବାର ନାନା କ୍ଷେତ୍ରରେ ସୁଯୋଗ ପାଇଛି । ନେତୃତ୍ୱ ଦେଇ ସେ ନାନା କାର୍ଯ୍ୟ ପରିଚାଳନା ଓ ସମାପ୍ତି କରିଛନ୍ତି । ଆଜିବି ସେ

ରାଜ୍ୟର ଶିକ୍ଷା, ସଂସ୍କୃତି ଓ ବିଭିନ୍ନ ସମସ୍ୟା ସହ ନିଜକୁ ଓତପ୍ରୋତଃ ଭାବେ ମିଶାଇ ଦେଇଛନ୍ତି ।

ତାଙ୍କ ସଙ୍ଗେ ଅନେକ ଲୋକ କାମ କରିବାର ସୁଯୋଗ ପାଇଛନ୍ତି । ଅନେକ ତାଙ୍କ ସଙ୍ଗେ ଯାଇ ନ ପାରି ଅଧାବାଟରୁ ରହିଯାଇଛନ୍ତି । ଯେ ଯାଇ ନ ପାରିଲା ତା'ପାଇଁ ସେ ଅପେକ୍ଷା କରି ନାହାନ୍ତି—ଦୁଃଖ କରି ନାହାନ୍ତି କି ଖେଦୋକ୍ତି ପ୍ରକାଶ କରିନାହାନ୍ତି । ନିଜେ ସ୍ଥିତପ୍ରଜ୍ଞ ଭଳି ଆଗେଇ ଯାଇଛନ୍ତି ।

ମୟୂରଭଞ୍ଜରେ ଯେଉଁ ବଡ ବଡ଼ ସରକାରୀ କର୍ମଚାରୀ ମିଶ୍ରଣ ଆନ୍ଦୋଳନରେ ବିପକ୍ଷରେ କାମ କରୁଥିଲେ ସେହିମାନେ ମିଶ୍ରଣ ପରେ ଓଡ଼ିଆ ସରକାରରେ ବଡ଼ ବଡ ସ୍ଥାନରେ ରହିଲେ । ରାଜନୈତିକ କୌଶଳରେ ତାଙ୍କର କାର୍ଯ୍ୟ ବିଚିତ୍ର । ମୟୂରଭଞ୍ଜରେ ଏପରି ଗୋଳମାଳ ଚାଲିଥିବା ବେଳେ ମହାରାଜାଙ୍କ ସହ ମଧ୍ୟ ତାଙ୍କର ଅତ୍ୟନ୍ତ ଭଲ ଭାବ-ଥିଲା । ବିଚକ୍ଷଣ ଫନ୍ଦରେ ସେ ଜୀବନରେ ବହୁ ଅସାଧ୍ୟ ସାଧନ କରି ପାରିଛନ୍ତି ।

ଏ ସମ୍ବନ୍ଧରେ ଆଜି ଗୋଟିଏ କଥା ମୋର ମନେ ପଡୁଛି । ଓଡ଼ିଶା ସଙ୍ଗେ ମୟୂରଭଞ୍ଜ ମିଶ୍ରଣ ପୂର୍ବରୁ ଭାରତ ସରକାର ମି: ଭି. ପି. ମେନନ୍‌ଙ୍କୁ ହଠାତ୍ ବାରିପଦା ପଠାଇଲେ ଲୋକମତ ନେବାକୁ । ଶୁଣାଗଲା ନିଷ୍ପତ୍ତି ହୋଇଯିବ । ସୋମନାଥ ବାବୁ ପୂର୍ଣ୍ଣ ସହଯୋଗ କଲେ ନାହିଁ । ଶ୍ରୀ କାହ୍ନୁ ମାଝୀ ପ୍ରମୁଖ ଅନ୍ୟ ଆଦିବାସୀ ନେତାମାନେ ତାଙ୍କୁ ଦେଖା କଲେ ଓ ଆଦିବାସୀମାନେ ମିଶ୍ରଣ ଚାହାନ୍ତି ଏବଂ ହିଂସାକାଣ୍ଡରେ ବିଶ୍ୱାସ କରନ୍ତି ନାହିଁ ବୋଲି କହିଲେ ।

୧୯୪୯ ଜାନୁୟାରୀ ୧ ତାରିଖ ଦିନ ମୟୂରଭଞ୍ଜ ଓଡ଼ିଶା ପ୍ରଦେଶ ସଙ୍ଗେ ମିଶିଗଲା । ଓଡିଶା ସରକାର ରାଜ୍ୟର ଶାସନ କ୍ଷମତା ଭାରତ ସରକାରଙ୍କ ଠାରୁ ଗ୍ରହଣ କଲେ । ଏହାର ପୂର୍ବଦିନ ଶୁଣାଗଲା ଯେ ପଚିଶ ହଜାର ଆଦିବାସୀ ଧନୁଶର ଧରି ବାରିପଦାରେ ଓଡ଼ିଶା ସରକାରଙ୍କ

ସଙ୍ଗେ ମୁକାବିଲା କରିବାକୁ ଆସୁଛନ୍ତି । ମତେ ଓଡ଼ିଶାର ତତ୍କାଳୀନ ଚିଫ୍ ସେକ୍ରେଟାରି ଶ୍ରୀ ବି. ମୁଖାର୍ଜି ପଚାରିଲେ "ଏକଥା କ'ଣ ସତ ଯେ ପଚିଶ ହଜାର ଆଦିବାସୀ ଧନୁଶର ଧରି ବାରିପଦା ଆକ୍ରମଣ କରିବାକୁ ଆସୁଛନ୍ତି ! ମୁଁ କହିଲି, "ପଚିଶ ହଜାର ନୁହଁ, ଦୁଇ ତିନି ହଜାର ଆଦିବାସୀ ରାଣୀ-ବାଗ୍‌କୁ କ'ଣ ଶହୀଦ ପୂଜା କରିବାକୁ ଆସୁଛନ୍ତି ।"

କିନ୍ତୁ ପୂର୍ବଦିନ ରାତିରେ ବିଶୋଇଠାରେ ଥିବା ପ୍ରାୟ ୫୦ହଜାର ଆଦିବାସୀ ସକାଳକୁ କିପରି ଦୁଇ ହଜାରରେ ରହିଲେ ତାହା ଡଃ. ମହତାବ ଓ ତାଙ୍କର କେତେଜଣ କର୍ମୀଙ୍କ ବ୍ୟତୀତ ଆଉ କେହି ଜାଣି ନାହାନ୍ତି । ତାହା ଇତିହାସର ଏକ ଗୋପନୀୟ ସତ୍ୟ ।

ମିଶ୍ରଣ ହୋଇଗଲା ସେଦିନ ଅତି ସ୍ୱାଭାବିକ ଭାବରେ ।

ଡଃ ମହତାବଙ୍କ ଜୀବନରେ ଅନେକ ମୁହୂର୍ତ୍ତ ଆସିଛି ଯେଉଁଥିରେ ତାଙ୍କ ଜୀବନରେ ପୁଣି ନୂତନ ନୂତନ କାର୍ଯ୍ୟକରି ଜୀବନକୁ ସାର୍ଥକ ଓ କର୍ମମୁଖର ପାଇଁ ସେ ସର୍ବଦା ଭଗବାନଙ୍କ ଆଶୀର୍ବାଦ ପାଇଛନ୍ତି । ଏବଂ ଆଜ ଭଗବାନଙ୍କ ପାଖରେ ପ୍ରାର୍ଥନା ସେ ଏହି ଭଗବତ୍ ପ୍ରେରଣା କାଳ କାଳକୁ ପାଉଥାନ୍ତୁ ।

୩, ବାପୁଜୀ ନଗର
ଭୁବନେଶ୍ୱର



# ମା ସୁଭଦ୍ରା ଦେବୀ ଓ ଡକ୍ଟର ମହତାବ

ବିଜୟଲକ୍ଷ୍ମୀ ଲେଙ୍କା

ରାଜନୈତିକ କ୍ଷେତ୍ରରେ ଧର୍ମଗୁରୁ, ସାହିତ୍ୟସଂସ୍କୃତିର ଯୁଗପ୍ରବର୍ତ୍ତକ; ସର୍ବୋପରି ସାମାଜିକ ଓ ସାମ୍ବାଦିକ ଯୁଗ ପ୍ରବର୍ତ୍ତକ ଡକ୍ଟର ହରେକୃଷ୍ଣ ମହତାବ ଆଜି ୮୧ ବର୍ଷ ଅତିକ୍ରମ କରି ୮୨ ବର୍ଷରେ ପଦାର୍ପଣ କରୁଛନ୍ତି । ଓଡ଼ିଶାର ପୁରପଲ୍ଲୀଠାରୁ ଆରମ୍ଭ କରି ସହରମାନଙ୍କରେ ତାଙ୍କର ଜନ୍ମ ଜୟନ୍ତୀ ମହାସମାରୋହରେ ପାଳିତ ହେଉଛି ।

ପ୍ରତିଭା ପୂଜା । ଯୋଗଜନ୍ମା ଏ ଯୁଗର ପିତୃବ୍ୟ ଡକ୍ଟର ମହତାବ । ମାତୃ ପ୍ରତିମ ସ୍ୱର୍ଗୀୟ ସୁଭଦ୍ରା ଦେବୀ ଯେପରି ଅନେକ ଅପରିଚିତଙ୍କ ହୃଦୟରେ ପିତୃତ୍ୱ ଓ ମାତୃତ୍ୱର ଆସନ ମାଡ଼ି ବସିଛନ୍ତି । ମୋ ଜୀବନରେ ଥରେ ଦୁଇ ଥର ସୁଭଦ୍ରା ଦେବୀଙ୍କୁ ଦୂରରୁ ଦେଖିବାର ସୁଯୋଗ ମିଳିଥିଲା । ସତେ ଯେମିତି ମୋ ପରି ମାତୃହୀନାଙ୍କର ସେ ଯେପରି ମା' ହେବା ପାଇଁ ଆବିର୍ଭାବ ହୋଇ ଥିଲେ ।

ଡକ୍ଟର ମହତାବଙ୍କର 'ପ୍ରତିଭା' ଉପନ୍ୟାସ ପଢ଼ିଥିଲି । ଥରେ ନୁହେଁ, ଅନେକ ଥର । ପରେ ତାଙ୍କ ବିଷୟରେ ଅଧିକରୁ ଅଧିକ ଜାଣିବା ପରେ ମନେହେଲା ଡକ୍ଟର ମହତାବ ହେଉଛନ୍ତି 'ପ୍ରତିଭା' ଉପନ୍ୟାସର ନାୟକ ନବୀନ ଓ ସୁଭଦ୍ରା ଦେବୀ ନାୟିକା ପ୍ରତିଭା ।

ସେ ଅଗରପଡ଼ା ଜମିଦାରଙ୍କ ପୁଅ । ପ୍ରତିଭା ଦେବୀ ଜମିଦାରଙ୍କ ବୋହୂ । ବ୍ରିଟିଶ ଅମଳର ବାତାବରଣ । ଜମିଦାରଙ୍କର ଆନୁଗତ୍ୟ । ବ୍ରିଟିଶ ଶାସନର ଅତ୍ୟାଚାର ଓ କଳା ପୁଲିସର ଧର୍ଷଣର ଚିତ୍ର ପ୍ରତିଭା ଉପନ୍ୟାସରେ ପ୍ରକଟିତ ହୋଇଛି ।

ଯୌବନରେ ଉତ୍କଳ ମହତାବ ଦେଶକାମରେ ନିଜକୁ ହଜାଇ ଦେଇ ଥିଲେ । ସୁଭଦ୍ରା ଦେବୀ ଜମିଦାର ଉଆସରେ ସ୍ୱାମୀଙ୍କର ଭାବଧାରାରେ ନିଜକୁ ସଜାଡ଼ି ନେଇ ସ୍ୱାଧୀନତା ସଂଗ୍ରାମରେ ସଂଗଠନ କାମରେ ସମସ୍ତ ଅତିବାହିତ କଲେ ।

ସ୍ୱାଧୀନତା ପରେ ମଧ୍ୟ ପ୍ରିୟତମା ପତ୍ନୀଙ୍କର ସୁହାଗ ସ୍ନେହ ଆରା- ଧନାରେ ସନ୍ତୁଷ୍ଟ ହେଲେ ମଧ୍ୟ ସ୍ୱାଧୀନୋତ୍ତର ଦେଶ ଗଠନ କାମର ବ୍ୟସ୍ତତା ଭିତରେ ଉତ୍କଳର ମହତାବ ମା' ସୁଭଦ୍ରା ଦେବୀଙ୍କୁ ଯଥାଯଥ ପାରିବାରିକ ବନ୍ଧନରେ ବାନ୍ଧି ହୋଇ ନ ଥିଲେ ।

ବହୁ ବର୍ଷ ଅତିକ୍ରମ ପରେ ସୁଭଦ୍ରା ଦେବୀ ଓଡ଼ିଶା ବିଧାନ ସଭାର ସଭ୍ୟା ହେଲେ । ସାମାଜିକ ସେବାରେ ଭୁବନେଶ୍ୱର ନାରୀମହଲରେ ମଧ୍ୟ ବିଶେଷ ଭାବରେ ପରିଚିତା ହୋଇଥିଲେ ।

ଏମରଜେନ୍ସି ଆସିଲା । ଉତ୍କଳର ମହତାବ ପୁଣି ଜେଲବରଣ କଲେ । ମା ସୁଭଦ୍ରା ଦେବୀ ଅସୁସ୍ଥ ହୋଇ ପଡ଼ିଲେ । ମୁଣ୍ଡରେ ସିନ୍ଦୂର; ହାତରେ ଶଙ୍ଖା ଥାଇଁ ସେ ସ୍ୱର୍ଗାରୋହଣ କଲେ ।

ନାରୀର ଏ ସୌଭାଗ୍ୟ ଠାରୁ ବଡ଼ ସୁଯୋଗ କଣ ଥାଇପାରେ ? "ଅସ୍ତି ସୁଲକ୍ଷଣୀ ହୋଇଥାଆ ମା"- ଜୀବନରେ ତାଙ୍କର ତପସ୍ୟା ସଫଳ ହୋଇଛି ।

ଉତ୍କଳର ମହତାବଙ୍କ ତପସ୍ୟା, ସାଧନା, ନିରବଚ୍ଛିନ୍ନ ଭାବରେ ପରିବାରରେ ସୀମାବଦ୍ଧ ହୋଇନାହିଁ । ବସୁଦେବ କୁଟୁମ୍ବକଂ......... ଓଡ଼ିଶାଟା ଯାକର ଝିଅ, ପୁଅ ତାଙ୍କର ଦାୟାଦ । କିଏ ରାଜନୀତି କ୍ଷେତ୍ରରେ କିଏ ବା ସାମାଜିକ କ୍ଷେତ୍ରରେ ଅଥବା ସାହିତ୍ୟ, ସଂସ୍କୃତି ଅଙ୍ଗନରେ ତାଙ୍କର ପଦାନୁସରଣ କରୁଛନ୍ତି ।

ଜୀବନସାରା ତାଙ୍କର ଜପୟଯାତ୍ରା ଚାଲିଛି ଅବିରାମ ଗତିରେ । ମୁଁ ଜୀବନରେ ଆକୃଷ୍ଟ ହୋଇଥିଲି ଲେଖାଲେଖି କରିବା ପାଇଁ । ସ୍କୁଲ ଜୀବନରେ ତାଙ୍କର ପ୍ରକାଶିତ ପ୍ରଜାତନ୍ତ୍ରରେ ଶିଶୁଜଗତ, ପରେ ନାରୀଜଗତ କାର୍ଯ୍ୟକ୍ରମକୁ ମନୋନିବେଶ ସହକାରେ ଅଧ୍ୟୟନ କରିଛି । ନାରୀ ଜଗତ ଓ ଶିଶୁଜଗତ ଅନେକଙ୍କୁ ଲେଖକ ହେବାକୁ ବାଟ ଦେଖାଇଛି । ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ତାଙ୍କର ଅକଳନ ଉଦ୍ୟମ ଏ ଜାତି ପାସୋରି ପାରିବ ନାହିଁ । ସାଂସାରିକ ବନ୍ଧନରେ ଛନ୍ଦି ହୋଇ ଅବସର ସମୟରେ 'ପ୍ରଜାତନ୍ତ୍ର' ଉପରେ ଆଖି ପକାଇଲି ବେଳେ ଉତ୍କଳର ମହତାବଙ୍କ ଛବି ମୋ ଆଖି ଆଗରେ ଉକୁଟି ହେବା ପୂର୍ବରୁ ମା ସୁଭଦ୍ରା ମହତାବଙ୍କର ମୂର୍ତ୍ତି ଭାସିଉଠେ ।

ସେ ଦମ୍ପତି ଯୁଗଳଙ୍କ ପାଖରେ ନତମସ୍ତକ ହୋଇ ଠାକୁରଙ୍କୁ ଡାକେ "ଠାକୁରେ ! ମା ଚାଲି ଗଲେ । ବାବାଙ୍କୁ ଆମର ଶତପରମାୟୁ ଦିଅନ୍ତୁ ।"

o

# କାକା ମହତାବ୍ ଓ ମୀନାବଜାର

**ରବୀନ୍ଦ୍ରନାଥ ଦାସ**

ଆମେ ସେତେବେଳେ ସ୍କୁଲରେ ତଳ କ୍ଲାସରେ ପାଠ ପଢୁଥାଉ—ଓଣେଇଶଶ' ପଞ୍ଚାବନ କି ଛପନ ମସିହା ହେବ । ଆମକୁ ସେତେବେଳେ ଯଦି ସ୍କୁଲରେ କିଏ ପଚାରୁଥାଏ ବମ୍ବେର ରାଜ୍ୟପାଳ କିଏ ? ଆମେ ଗର୍ବର ସହ ଛାତି ଫୁଲେଇ ଉତ୍ତର ଦେଉଥାଉ—କାକା ମହତାବ । ତା'ପରେ ପରେ ଆମର କାକା ମହତାବ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇ ଆସିଲେ—ଆମର ଆନନ୍ଦ ଦେଖେ କିଏ ! ଆମ ପାଖରେ ତାଙ୍କର ପରିଚୟ ଡକ୍ଟର ହରେକୃଷ୍ଣ ମହତାବ ନ ଥିଲା । ସେ ଥିଲେ ଆମର ଏକାନ୍ତ ପ୍ରିୟ, ପୂଜ୍ୟ ଆଦରଣୀୟ କାକା ମହତାବ—ଚାଚା ନେହରୁଙ୍କ ପରି କାକା ମହତାବ ଥିଲେ ଆମ ପରି ଅଗଣିତ ମୀନା ଶିଶୁମାନଙ୍କର ଅତି ଆପଣାର—ସେତେବେଳକୁ ଆମେ ମହତାବଙ୍କୁ ଜଣେ ବରିଷ୍ଠ ଐତିହାସିକ, ଶ୍ରେଷ୍ଠ ସାହିତ୍ୟିକ, ପ୍ରବୀଣ ରାଜନୀତିଜ୍ଞ ଭାବରେ ଜାଣି ନ ଥାଉ । ସେ ଆମ ସଭିଙ୍କର ମନ କିଣି ନେଇଥାଆନ୍ତି କାକା ମହତାବ ଭାବରେ । ଆମର ଥାଏ ଦୁଇଟି ପ୍ରିୟ ସ୍ଲୋଗାନ—'ଚାଚା ନେହରୁ ଆଉ କାକା ମହତାବ ।'

ଆଜକୁ ପଚାଶ ବର୍ଷ ତଳକୁ ଫେରିଯାଆନ୍ତୁ । ସେତେବେଳେ ମାସିକ ଶିଶୁ ପତ୍ରିକା ପ୍ରାୟ ବାହାରୁ ନ ଥିଲା କହିଲେ ଚଳେ । ସେଇଥିପାଇଁ ଗୁରୁବାର ପ୍ରଜାତନ୍ତ୍ରର କ୍ରୋଡ଼ପତ୍ର 'ମୀନାବଜାର' ଖଣ୍ଡିକ ଥିଲା ଆମମାନଙ୍କର ଏକାନ୍ତ ପ୍ରିୟ ।

ସେହି କାଗଜ ଖଣ୍ଡିକର କି ପ୍ରଭାବ ଭାବିଲେ ଆଶ୍ଚର୍ଯ୍ୟଲାଗେ—ଏତେ ବଡ଼ ରାଜ୍ୟର ସବୁ ମୀନା ଭାଇଭଉଣୀମାନେ ଯେମିତି ସ୍ନେହ ମମତା ସୂତାରେ ବାନ୍ଧି ହୋଇଯାଇଥିଲେ । କାକା ମହତାବ କ'ଣ ମ୍ୟାଜିକ୍

ଜାଣନ୍ତି ? ସବୁ ଯେମିତ ତାଙ୍କର କୁହୁକବାଡ଼ିଦ୍ୱାରା ସମ୍ଭବପର ହୋଇଯାଉଛି । ସେ ବୋଧେ ଠିକ୍ ଭାବରେ ଜାଣିଥିଲେ ଏହି ପିଲମାନେ ଦେଶର ଭବିଷ୍ୟତ ! ସେମାନଙ୍କ ଭିତରେ ପ୍ରଚଣ୍ଡ ପ୍ରତିଭା ଲୁଚି ରହିଛି ।

ବିଭିନ୍ନ ଲେଖା ଉପରେ ପ୍ରତିଯୋଗିତା ହୋଇ ଯେଉଁମାନେ ସବୁ ପୁରସ୍କାର ପାଆନ୍ତି, ସେ ନାଁ ସବୁ ମୀନାବଜାର ପୃଷ୍ଠାରେ ଛପା ହୋଇ ଯାଉଥିଲା—ଆମକୁ ଏଥିପାଇଁ ଯେଉଁ ସାର୍ଟିଫିକେଟ୍ ମିଳୁଥିଲା—ସେଥିରେ ଚେୟାରମ୍ୟାନ ହିସାବରେ କାକା ମହତାବ ଦସ୍ତଖତ କରୁଥିଲେ—ଆମେ ସେହି ସାର୍ଟିଫିକେଟ୍‌କୁ ଅମୂଲ୍ୟନିଧି ହିସାବରେ ସାଇତି ରଖୁଥିଲୁ । ମୋର ମନେ ଅଛି, ମୀନାବଜାରରେ କିପରି ନିରପେକ୍ଷ ଭାବରେ ଫଳାଫଳ ବିଚାର କରାଯାଉଥାଏ, ସେ ସମ୍ପର୍କରେ ଗୋଟିଏ ଘଟଣାଟିଏ—ମୁଁ ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ଆମ ମୀନାମଣ୍ଡଳୀ ତରଫରୁ ମୀନାବଜାର ଗଳ୍ପ ପ୍ରତିଯୋଗିତାକୁ ଗପଟିଏ ପଠାଇଥିଲି । ତା ନାଁ "ଭିକାରୀ"—ମୁଁ ଆଶ୍ଚର୍ଯ୍ୟ ହେଲି ମୋ ସାଙ୍ଗଟିଏ ମୋତେ ଖବର ଦେଲା, ମୀନାବଜାରର 'ଖ' ଶ୍ରେଣୀ ଗଳ୍ପ ପ୍ରତିଯୋଗିତାରେ ମୋ ଗପ ଦ୍ୱିତୀୟ ହୋଇଛି ।

ଏହାର ପରବର୍ତ୍ତୀ ଜୀବନରେ ମୁଁ ମୀନାବଜାର ସହ ଅଧିକ ଅନ୍ତରଙ୍ଗ ହୋଇପାରିଥିଲି । ଜହ୍ନମାମୁଁଇ, ମାହାର ଅପାଙ୍କ ସାନ୍ନିଧ୍ୟରେ ଆସିଲି । ମଝିରେ ମଝିରେ ଅନୟମିତ ହେଲେ ବି ମୀନାବଜାର ମାସିକିଆ ରୂପ ନେଇ ଜନ୍ମଲାଭ କରୁଥିଲା । କାକା ମହତାବ ଗପ ଲେଖୁଥିଲେ—ସେଦିନର ମୀନାବଜାର ମୋ ପାଖରେ ନାହିଁ । ମୋର ଯାହା ମନେ ପଡୁଛି—ରାଧାନାଥ ଟ୍ରେନିଂ କଲେଜରେ ଯେଉଁ ତିନଦିନିଆ ମୀନାମେଳା ଅନୁଷ୍ଠିତ ହୋଇଥିଲା ସେହି ଉପଲକ୍ଷେ ମୀନାବଜାରର ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ ପାଇଥିଲା—ସେଥିରେ କାକା ମହତାବଙ୍କ ଗଳ୍ପଟିର ନାଁ ଥିଲା 'ବିଶ୍ୱମ୍ଭରର ମତିଭ୍ରମ'—ସେଥିରେ ମହତାବଜୀ ଗପ ଛଳରେ ସାନ ସାନ କେତୋଟି ଉପଦେଶ ଦେଇଥିଲେ, ଯାହାକି ଭଲ ମଣିଷ ହେବାପାଇଁ ଏକାନ୍ତ ଦରକାର । ତା'ପରେ ନିଆଁଖୁଣ୍ଟାରେ ଏହି ଗଳ୍ପ ଉପରେ ଏକ ବ୍ୟଙ୍ଗ ରଚନା ବାହାରିଥିଲା । ମୋର କହିବାର ତାତ୍ପର୍ଯ୍ୟ ହେଲା ଯେ

ସେତେବେଳେ ମହତାବଜୀ ପିଲାଙ୍କ ପାଇଁ ଯାହା ଲେଖୁଥିଲେ, ତାହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା ।

ସାହିତ୍ୟିକ ମହତାବଙ୍କ ପ୍ରତିଭା 'ପ୍ରତିଭା' ଭିତରେ ଚିରଦିନ ପାଇଁ ଅମଳିନ ରହିବ । ନାଟ୍ୟକାର ମହତାବଜୀ 'ଯୁଗ ସଙ୍କେତ' ଭିତରେ ବଞ୍ଚି ରହିବେ । ଐତିହାସିକ ମହତାବଙ୍କୁ ଡକ୍ଟରେଟ୍ ଦିଆଯାଇଛି, ଭବିଷ୍ୟତରେ କେହି ଗବେଷକ ଗାଁ ମଜଲିସ ଉପରେ ପି.ଏଚ୍‌ଡ଼ି. କରିବେ—ଓଡ଼ିଶାର ସୁଖ ସମୃଦ୍ଧି ତଥା ନୂତନ ଓଡ଼ିଶା ଗଠନ ଦିଗରେ ମହତାବଜୀଙ୍କ ଅବଦାନ କ'ଣ ? ହୀରାକୁଦ ବନ୍ଧ—ନା ଭୁବନେଶ୍ୱରର କ୍ୟାପିଟାଲ, ନା ଆଉ କ'ଣ, ସେ କଥା ଐତିହାସିକମାନେ ମୂଲ୍ୟାୟନ କରିବେ ।

ମହତାବଜୀ, ମୋପରି ସେଦିନ ଏ ଦେଶର ଅସଂଖ୍ୟ କୁନି କୁନି ଭାଇ ଭଉଣୀମାନଙ୍କୁ ଏକାଠି କରି କେତେ ଆପଣାର ଭାବରେ,'ତୁମେ ଆମକଥାକୁ ତୁମ ତୁଣ୍ଡରେ କହିଥିଲ, ଆମେ ସବୁ ସେଦିନର ମୀନା, ଯେଉଁମାନେ ଦିନେ ତୁମରି କମିଆଁରେ ଭୁଲି 'ମଣି' ହେବାର ସ୍ୱପ୍ନ ଦେଖୁଥିଲୁ, ଆଜିସବୁ ଜୀବନର ନିର୍ମମ ବାସ୍ତବତା ଭିତରେ ଦଳି, ଚକଟି, ପେଷି ହେଲେ ବି ତୁମର ଆଦର୍ଶ, ତୁମର ପ୍ରେରଣାକୁ ପାଥେୟ କରି ଆଗେଇ ଚାଲିଛୁ—ଏହି ଜୀବନ ସଂଘର୍ଷ ଭିତରେ ଆମେ ଭିକ୍ଷା କରୁଛୁ ତୁମର ଆଶୀର୍ବାଦ । ତୁମେ ଏକ ଉଜ୍ଜ୍ୱଳ ବର୍ତ୍ତିଖଣ୍ଡ ପରି ଦିଗହରା ତରୀକୁ ବାଟ ଦେଖାଇ ଲକ୍ଷ୍ୟସ୍ଥଳରେ ପହଞ୍ଚାଅ ।

କାକା ମହତାବ ଦୀର୍ଘାୟୁ ହୁଅ !

କାକା ମହତାବ—ଜିନ୍ଦାବାଦ !



# 'ମହତାବ ପରିକ୍ରମା' ଶେଷରେ

## ବଂଶୀଧର ଭୂୟାଁ

ମଧୁ ଗୋପବନ୍ଧୁଙ୍କ ପରେ ଓଡ଼ିଆ ଜାତି ତାର ସାହିତ୍ୟ, ସଂସ୍କୃତି ତଥା ଦେଶସେବାର ପୁନରୁତ୍‌ଥାନ ପାଇଁ ଯଦି ଆଉ କାହାକୁ ସ୍ମରଣ କରିବ ତ ସେ ହେଉଛନ୍ତି ଗତ ଅର୍ଦ୍ଧ ଶତାବ୍ଦୀର ଏକ ବିବଦମାନ ବ୍ୟକ୍ତିତ୍ୱ ଡକ୍ଟର ହରେକୃଷ୍ଣ ମହତାବ ।

ଏ 'ପରିକ୍ରମା'ର ବହୁ ଲେଖକ ମହତାବଙ୍କୁ ଏକ ଗାହାଡ଼ ତଥା ଖରସ୍ରୋତା ନଦୀ ସହିତ ତୁଳନା କରି ପାହାଡ଼ ଓ ନଦୀର ନିଷ୍ଠୁରତା, ହିଂସ୍ରତା ସାଙ୍ଗକୁ ତାର କଲ୍ୟାଣମୟୀ ସ୍ୱଭାବ ମହତାବଙ୍କ ଚରିତ୍ରରେ ପ୍ରତିବିମ୍ବିତ କରିଛନ୍ତି । ସେହି ଦୃଷ୍ଟିରୁ 'ମହତାବ ପରିକ୍ରମା' ଏକ ସ୍ୱଚ୍ଛ ଦର୍ପଣ ସଦୃଶ ମହତାବ ପ୍ରତିଭା ପରି ପ୍ରତି ଓଡ଼ିଆ ପାଖରେ ଏକ ନିର୍ଭରଶୀଳ ପୋଥି ରୂପେ ପୂଜା ପାଇବ ।

ମହତାବ ସତରେ ଜଣେ ଏତେ ବିରାଟ—ଏତେ ମହାନ୍—ଓଡ଼ିଆର ଶାଗ ପଖାଳ ପରି ଏତେ ଅପରିହାର୍ଯ୍ୟ !!!

ମୁଁ କେବେ ମହତାବଙ୍କୁ ଦେଖିନାହିଁ । ଏଣୁ ତାଙ୍କର ବିରାଟତ୍ୱ କଳିବା ବା ତାଙ୍କୁ ପରିକ୍ରମା କରିବା ଦୁଃସାହସ ମୋର ନାହିଁ ।

ସ୍ୱାଧୀନତାପରେ ଓଡ଼ିଆ ଜାତିର ନେତା ଦାତା ତ୍ରାତା ରୂପେ ତାଙ୍କୁ, ସେଇ ମାଳମାଳମଣ୍ଡିତ ପାହାଡ଼ ଓ ସାହିତ୍ୟ-ସଂସ୍କୃତିର ସ୍ରୋତସ୍ୱିନୀ ନଦୀର କଲୋଚ୍ଛ୍ୱାସକୁ ଦୂରରୁ ଅବଲୋକନ କରିଛି ମାତ୍ର । ଏଇ ପରିପ୍ରେକ୍ଷୀରେ 'ମହତାବ ପରିକ୍ରମା'ର ବିଜ୍ଞ ଲେଖକମାନଙ୍କ ପରି ମୋର ବ୍ୟକ୍ତିଗତ ଅନୁଭୂତି, ଉପଲବ୍‌ଧି ବା ସମ୍ୟକ ଧାରଣା କିଛି ନାହିଁ ।

ଅନେକଙ୍କର ନାହିଁ, ମୋର ବି ନାହିଁ । ଖଦଡ଼ ନ ପିନ୍ଧିଲେ ଦେଶସେବାର ଅଧିକାର ନଥିବା କଥା ଯେପରି ଅଳୀକ, ମହତାବଙ୍କ ସଂପର୍କରେ ନ ଆସିଲେ ତାଙ୍କୁ ନ ଜାଣିବା ବା ଚିହ୍ନିବା ସେହିପରି ଅବାସ୍ତବ ଚିନ୍ତାଧାରା ନୁହେଁ କି ?

ସତ କହିବାକୁ ଗଲେ ଡକ୍ଟର ମହତାବଙ୍କ ରାଜନୈତିକ ସତ୍ତା ବ୍ୟତୀତ ଅନ୍ୟ ଯେଉଁ ଗୁଣ ପାଇଁ ସେ ଏତେଟା ସମ୍ମାନିତ, ଏଇ ଆଦର୍ଶ ଏବଂ ଧ୍ୟେୟ ପାଇଁ ମୁଁ ଆଜୀବନ ସଂଘର୍ଷ କରିଛି । ଏବେ ବି କରୁଚି । ଆନୁପାତିକ ଗୁଣରେ ଯାହା କମ୍ ବେଶି, ସେତିକି ।·

ଓଡ଼ିଆ ସାହିତ୍ୟ ଏବଂ ସାମ୍ବାଦିକତା କ୍ଷେତ୍ରରେ ପ୍ରଜାତନ୍ତ୍ର ଏବଂ ଝଂକାରର ଅବଦାନ କଥା ଚିନ୍ତା କଲାବେଳେ ମୋ' ସଂପାଦିତ 'ଜନସାହିତ୍ୟ'ର ଭୂମିକା ଗୁଣ୍ଡିଚମୂଷାର ଅବଦାନ ପରି ନଗଣ୍ୟ ହେଲେ ମଧ୍ୟ ଓଡ଼ିଆ ଜାତିର ଯେ କିଛିଟା ସେବା କରି ପାରିଚି ଏଥିରେ ଦ୍ୱିଧାର ଅବକାଶ ନାହିଁ ।

ମହତାବଙ୍କୁ ଯଦି ବାସ୍ତବରେ ଏକ କୂଳପ୍ଲାବିନୀ ନଦୀ ସହିତ ତୁଳନା କରାଯାଏ, ସେଇ ନଦୀସୃଷ୍ଟ 'ନାଳ'ର କ୍ଷୀଣ ଧାର ପରି 'ବଂଧ'ର ଏପାଖ ସେପାଖ ହୋଇ ସମାନ୍ତରାଳ ଗତିରେ ଛୁଟି ଚାଲିଛି ମୁଁ ଅନନ୍ତ ସାହିତ୍ୟ-ସାଗରରେ ଲୀନ ହେବାକୁ ।

ଏଇଠି ମୋର ସେଇ ଋଷିପ୍ରତିମ ବ୍ୟକ୍ତିତ୍ୱର ଆଦର୍ଶ ସହିତ କିଛିଟା ସାମ୍ୟ ବିଦ୍ୟମାନ କହିଲେ ସତ୍ୟର ଅପଳାପ ହେବନାହିଁ ।

ମହତାବଙ୍କ ପ୍ରତିଭା, ରାଜନୈତିକ ପ୍ରତ୍ୟୁତ୍ପନ୍ନମତିତା ମତେ ଦୂରରୁ ଆକୃଷ୍ଟ କରିଛି ଏବଂ ବାରମ୍ବାର ମୁଁ ଅନୁଭବ କରିଛି ସେଇ ସତ୍ତାକୁ ପୂର୍ଣ୍ଣ କରିବା ପାଇଁ ବନ୍ଧୁତ୍ୱ ମିଳନରେ ଏକୀଭୂତ ହେବାକୁ, କିନ୍ତୁ ସେ ସୁଯୋଗ ମୁଁ କେବେ ପାଇନି । ଏଣୁ ମହତାବଙ୍କ ଚୁମ୍ବକ ଶକ୍ତି ପାଖରୁ ମୁଁ ଏଯାବତ୍ ଦୂରତ୍ୱ ବଜାୟ ରଖି ପାରିଛି ।

ଜନ ସାହିତ୍ୟର ରଜତ ଜୟନ୍ତୀ ବର୍ଷରେ ମୁଁ ବାରମ୍ବାର ମୋ ଜାତିର ଏଇ ମହାନ ସଂସ୍କୃତିସମ୍ପନ୍ନ ବ୍ୟକ୍ତିଙ୍କ କଥା ସ୍ମରଣ କରୁଛି । ରଜତ ଜୟନ୍ତୀ ଉତ୍ସବରେ ତାଙ୍କର ପୌରହିତ୍ୟ ପାଇଲେ ବାସ୍ତବରେ ଜନ-ସାହିତ୍ୟ ତାର ସମ୍ଭାବାପନ୍ନ ଏକ ଆଦର୍ଶ-ସ୍ରୋତରେ ନିମଜ୍ଜିତ ହୋଇ ପାରନ୍ତା। ଏ କଳ୍ପନାକୁ ରୂପରେଖ ଦେବାର ସୁଯୋଗ ଏବେବି ଆସିନି— ଉତ୍ସବର ସ୍ୱପ୍ନ ଏବେ ବି ସେଇ ସ୍ୱପ୍ନରେ ରହିଛି ।

ପୁରାଣର ସେଇ ଆଖ୍ୟାନ କଥା ମନେ ପକେଇ ଏ ପରିକ୍ରମା ଶେଷ କରିବି । ମହାଦେବ ତନୟ ଗଣେଶ ଓ କାର୍ତ୍ତିକଙ୍କ ବିଶ୍ୱ ବ୍ରହ୍ମାଣ୍ଡ ପରିକ୍ରମା ପରି ମୁଁ ମହତାବଙ୍କ ବ୍ୟକ୍ତିତ୍ୱ ସହିତ ଘନିଷ୍ଠ ନ ହେଲେ ମଧ୍ୟ ବହୁ ଚିନ୍ତାଶୀଳ ଲେଖକମାନଙ୍କ ଭଳି ମୋର ଅନୁଭୂତି ନଥିଲେ ମଧ୍ୟ ଏଇ 'ମହତାବ ପରିକ୍ରମା' ମାଧ୍ୟମରେ ତାଙ୍କୁ ଯେତିକ ଜାଣିଛି, ଚିହ୍ନିଛି, ସେତିକ ମୋ ପାଇଁ ଯଥେଷ୍ଟ ।

ଅଦେଖା ମହତାବଙ୍କୁ ମୋର ଏଇ କ୍ଷୁଦ୍ର ଲେଖା ଭିତରେ ମୁଁ ଦର୍ଶନ କରୁଛି ଏତିକ ମୋର ସାନ୍ତ୍ୱନା । ତାଙ୍କର ଆଶୀର୍ବାଦ ଭିକ୍ଷା କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିର ଏ ଦୁର୍ଦ୍ଦିନରେ ଈଶ୍ୱର ତାଙ୍କୁ ଦୀର୍ଘଜୀବୀ କରନ୍ତୁ ସେତିକ ପ୍ରାର୍ଥନା କରୁଛି ।



# ନମସ୍କାର

ଚନ୍ଦ୍ରାମଣି ବେହେରା

ଐଶ୍ୱର୍ଯ୍ୟ ପରିହରି
ବରି ଦିନେ ସଂଗ୍ରାମର ପଥ
ତୁମେଇ'ତ ଗଢ଼ିଥିଲ
ମୁକ୍ତି-ସୂର୍ଯ୍ୟ ସପ୍ତାଶ୍ୱର ରଥ ।

ବିଜୟର ପର୍ବ ଶେଷେ
ଏ ଜାତିର ଅଭ୍ୟୁଦୟ ପାଇଁ
କେତେ କ'ଣ ନ କରିଛ !
ସେ ସୃଷ୍ଟିର ସମାନ୍ତର କାହିଁ ?

ଇତିହାସ ଲେଖି ନାହିଁ
ସୃଷ୍ଟି କରି ନିଜେ ଇତିହାସ
ପାଇଟିଛ ଯୋଗଜନ୍ମା,
ହେ କୋଣାର୍କ ବେଗବାନ୍ ଅଶ୍ୱ !

ଜନ୍ମଭୂମି ଯୋଗ୍ୟପୁତ୍ର
ନବୋତ୍କଳ ନିର୍ମାତା ହେ ବୀର
ଘେନ ଆଜି ଶୁଭ ଜନ୍ମଦିନେ
କୋଟି ହୃଦ ଶ୍ରଦ୍ଧା-ନମସ୍କାର ।

ସାରସ୍ୱତ ସାଧକ ତ ତୁମେ
ସତ୍ୟାଗ୍ରହୀ, ଜାଗ୍ରତ ବିବେକ
କହିବ କି ହେ ବ୍ୟାସ-ପୁରୁଷ
ହେବ କେବେ ଧର୍ମ-ଅଭିଷେକ ?

ହେ ଅଭୀକି ଆତ୍ମା !
ସାଧନାର ଶେଷ ପର୍ଯ୍ୟାୟରେ
ଶୁଣାଅ ଯେ କ୍ରାନ୍ତଦର୍ଶୀ ବାଣୀ
ଶୁଣୁଛି କି, ଶୁଣିବ କି
ବର୍ତ୍ତମାନ, ଉତ୍ତର-ଦାୟାଦ ?
ତାହା ହିଁ ମୁଁ ମନେ ହୁଏ ଗୁଣି ।



# ଯୋଗଜନ୍ମା ସେ.........

ଗଣେଶ ପ୍ରସାଦ କର ଶର୍ମା

ଯୁଗଂତ ଏହି ଜାତିର ଦେହରେ ବିଦ୍ରୋହ ନିଆଁ ଜାଳି
ମହାକାଳ ଯେବେ ଗ୍ରହିଁଲା ତାହାର ରକ୍ତ ଚକ୍ଷୁ ମେଲି—

ସେହି ସେ ଲଗନେ, ଜନ୍ମିଲା ଯେଉଁ
ପୁରୁଷ ସିଂହ ସାଳନ୍ଦୀ ତୀର
ଅଟବୀ କୁଞ୍ଜ ବନେ
ଇତିହାସର ସେ ଝଂଜାଦୀପ୍ତ
ରକ୍ତ ଲୋହିତ କ୍ଷଣେ ।
ମହା ପ୍ରତାପୀ ସେ ରକ୍ତବୀର୍ଯ୍ୟ
ଯେକାଳେ ଛୁଇଁଲା ଧରା,
ମହା ରବେ ତା'ର ସ୍ତବ୍ଧ ହୋଇଲା
ବିଦେଶୀ ଚିନ୍ତାଧାରା,
ପର ତଂତ୍ରର ପଦତଳେ ଯେବେ
ଦଳିତ ଦୂର୍ବା ସମ—
ବିଦଳିତ ହେଉଥିଲା, ଏ ଜାତିର
ଗୌରବ ଅଭିମାନ

ସେହି ସେ ଲଗନେ ସିଂହ ଶାବକ ବଜ୍ରଶପଥ ନେଇ
ଜନ୍ମିଲା ସେ'କି ବନ୍ଦିନୀ ମାତା ଦୁଃଖ ଫେଡ଼ିବା ପାଇଁ ।

ଗଉତମେ ସମ ପଦାଘାତ କରି ରାଜକୀୟ ସୁଖଭୋଗ
ଦେଶମାତୃକା ମୁକ୍ତି ସାଧନେ ପ୍ରକାଶିଲା ଅନୁରାଗ,

ଜନପଦେ ଆଉ ନଗରେ ନଗରେ
ସବୁରି କଣ୍ଠେ ମୁକ୍ତି ମନ୍ତ୍ର କହି
ଦେଶ ମୁକ୍ତିର ଯଜ୍ଞେ ନିଜର ସ୍ୱାର୍ଥ ଆହୂତି ଦେଇ,

ଗାଇଲ ଦର୍ପେ ନିର୍ଭୀକ ହୋଇ ଏ ମାଟିର ଜୟଗାନ
ଯାହା ଶୁଣି ହେଲ ଥରହର ଯେହି ବିଦେଶୀର
ପ୍ରଶାସନ ।
ରାଜପୁର ଠାରୁ ବହୁଦୂରେ ଯେଉଁ ଅନ୍ଧାରୀ କାରାଗାର
ସେହି ସିନା ହେଲ ସାଧନାର ପୀଠ 'ସାଧନାର ପଥେ' ତା'ର,
ଫିଟାଇଲ ଏକ ନବ ଦିଗନ୍ତ
ଦେଖାଗଲ ଯହିଁ ମାନବିକତାର ରାହା
କାରାଗାର କ୍ଷେତ୍ରେ ପାଇଟି ଗଲକି ବାଣୀ ଅର୍ଚ୍ଚନା ତାର ?

ରାଜନୀତି ଆଉ ସାହିତ୍ୟ ନେଇ ଗଢ଼ାଯା'ର ପଞ୍ଚବୃକ୍ଷ
ଲେଖନୀ ଯାହାର ସର୍ଜ୍ଜନା କଲ
ଏ ଜାତିର ଇତିହାସ
ଧନଞ୍ଜୟ ସେ ଉଜ୍ଜଳ ସିଂହ ସ୍ୱାଧୀନତା ସଂଗ୍ରାମେ
ଏ ମୋର ଲେଖନୀ ଶତବାର ଆଜି
ପଦତଳେ ତା'ର ନମେ

ସେ ଯେ ଏ ଜାତିର ଚଳନ୍ତି ଇତିହାସ,
ଯୋଗଜନ୍ମା ସେ ଏ ମହା ଜାତିର,
ଧନ୍ୟ ତା' ଲାଗି ଦେଶ ।

❋

# ଧାନ୍ତାରିଂ ସର୍ବ ପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ

ଜୟନ୍ତକୁମାର ମହାନ୍ତି

ଉଣେଇଶ ଶହ ପଇଁଚାଳିଶ...
ଭଦ୍ରକ ହାଇସ୍କୁଲ ।
ଡେଇଁପଡ଼ି ସ୍କୁଲ ପାଚିରୀକୁ
ଅଷ୍ଟମଶ୍ରେଣୀର ମୋର ସହପାଠୀ କେତେ
'ଇନ୍‌କିଲାବ ଜିନ୍ଦାବାଦ୍' ଧ୍ୱନିଦେଇ ପଳାଇଲେ
କ୍ଲାସରୁମ୍ ଛାଡ଼ି ।

ବାପା ପାଟି କଲେ
ହେଡ଼ମାଷ୍ଟ୍ରଙ୍କ ମାଡ଼ଖାଇ ସ୍କୁଲ ରେକର୍ଡରେ ଲେଖାହେଲା
ସେମାନଙ୍କ ନାଆଁ ।

ଖଦଡ଼ ପିନ୍ଧା ମୋ ସାଙ୍ଗସବୁ ଗାନ୍ଧି ଟୋପି ପିନ୍ଧି
ସେଦିନ ଯେତେବେଳେ ପାଟିକରି ରାସ୍ତାରେ ଯାଉଥିଲେ
'କଂଗ୍ରେସିଆଙ୍କ ସାଙ୍ଗେ ପଡ଼ି ଏ ଗୁଡ଼ାକ ବି କଡ଼ାର ହେଲେ'
କେତେ କିଏ ଟିପ୍‌ପଣୀ କରିଲେ ।

× × ×

ଦୁଇବର୍ଷ ପରେ ଗୋଶାଳା ସାମନା ପୂର୍ବପାଖ ପଡ଼ିଆରେ
ସଭାକଲେ ଜଣେ ବଡ଼ ନେତା ।
ଜଣେ କିଏ ମଞ୍ଚପରେ ଠିଆହୋଇ ମାଇକ୍ ପାଖେ
ଗାଉଥିଲେ—

"ଏବେ ଜଣାଗଲା ତୁମ କଥା ବିଲତ ବାଇ
ବେଳ ଆସିଲାଣି ବାନ୍ଧ ତୁମ ପେଡ଼ି ପୁଟୁଳି"
ପୁଣି ବର୍ଷେ ପରେ
ଖଡ଼ିଆଳ ରଜା ଆର୍ତ୍ତତ୍ରାଣ ହାଇସ୍କୁଲରେ
ମୋର ଏକାଦଶ ଶ୍ରେଣୀ ।
ପରିଦର୍ଶନରେ ଯାଇଥିଲେ ମୁଖ୍ୟମଂତ୍ରୀ
ସ୍ୱାଧୀନତା ପ୍ରାପ୍ତିପରେ—
ମନେ ପଡ଼ିଗଲା ମୋର ଭଦ୍ରକ ଗୋଶାଳା ପାଖ ପଡିଆରେ
ସେଇ ନେତାଙ୍କର ସଭା କରିବା କଥା ।

\+ +

ଊଣାଇଶ ଶହ ଅଣଂଚାଶ
ଭଦ୍ରକ ହାଇ ହାଇସ୍କୁଲ ପଡ଼ିଆର ଦକ୍ଷିଣ ପାଖରେ
ଏକ ଗୁଳ ଘରେ
ପ୍ରଥମ ବାର୍ଷିକ କଳାଶ୍ରେଣୀ ଛାତ୍ର
ଅଧ୍ୟକ୍ଷ ମୋ ଅବସରପ୍ରାପ୍ତ ଇଂରାଜି ଅଧ୍ୟାପକ
ବାଉଦପରବାସୀ 'ନାରାୟଣ ମୋହନ ଦେ' ।

ପୁଣି ଦିନେ ଭଦ୍ରକ ଡ଼ାକ ବଙ୍ଗଳା ସାମନା ପଡିଆରେ
ଭିଡ ଜମାଇଲେ କେତେ ଜଗନ୍ନାଥପୁରବାସୀ
ମୋ ମାମୁଁ ଘର ଗାଁ ଲୋକେ
ସେଠି ଯଦି ହେବ କଲେଜର କୋଠା ମିଆଁ ବାଡ଼ିରେ
ସାଳନ୍ଦି କୂଳରେ ତାଙ୍କ ଘର ପଛଆଡେ ଠିଆ ହେଲେ
କାଲେଜଟା
ସେ ହୋଇବେ ବଡ ହଟହଟା ।

ସେ ଦିନ କେତେ ଯେ ସାଙ୍ଗ ହେଲେ କୃତ କୃତ୍ୟ
ଉଚ୍ଚଶିକ୍ଷା ଲଭ ସ୍ୱପ୍ନ ତାଙ୍କ ହେଲା ରୂପାୟିତ
ଯା'ର ଇଏ ଥିଲା ଅବଦାନ ?
ଧନ୍ୟ ସେଇ ହୃଦୟ ମହାନ୍ ।

ଏକ ନେତା ଇତିହାସ ସୃଷ୍ଟିକରେ ଅନେକଙ୍କ ପାଇଁ
ଅନେକ ଯେ ବୁଝନ୍ତି ଓଲଟା ।
'ଖର ବର୍ଷା ସହି କଲେ ହଳ ବେଉଷଣ
ଫସଲର ହସ ହସେ ଅଶିଣ କାର୍ତ୍ତିକେ
ପଉଷରେ ପୁରେ ଅମାରଟା ।'

\+ +

ହୀରାକୁଦ ବୁଡ଼ି ଅଞ୍ଚଳର ଲୋକେ ରୁଣ୍ଡ ହୋଇ
ପାଟି ତୁଣ୍ଡ କଲେ—
କିନ୍ତୁ ଗଢ଼ା ହେଲା ବନ୍ଧ
ଜଣକର ଖାଲି କଣ ଆଖି ଥିଲା ?
ଆଉ ସବୁ ଅନ୍ଧ ?

ପରେ ପରେ ନୂଆ ରାଜଧାନୀ
ପୁଣି ଇସ୍ପାତ ନଗରୀ—
ରାଉରକେଲା ।

\+ +

ମୁଁ ସେତେବେଳେ ପାଠପଢ଼ି ଚାକିରି କରିଣି
ଭୁବନେଶ୍ୱରରେ ଲମ୍ବା କୋଠା ହସିଲା ସେଦିନ ।

ସାମନାର ପଡ଼ିଆରେ ସଭା ହେଲା
ବଙ୍ଗଳାର ମୁଖ୍ୟମଂତ୍ରୀ ବିଧାନ ରାୟ
ସାଥେ ତାଙ୍କ କେନ୍ଦ୍ର ସ୍ୱରାଷ୍ଟ୍ର ମଂତ୍ରୀ
ଗୋବିନ୍ଦ ବଲ୍ଲଭ ପନ୍ଥ ।
ଦେଖିଲି ସେଦିନ
        ୧୯୪୫ ରେ ଯାଙ୍କୁ ଦେଖିଥିଲି
ଭଦ୍ରକର ସେଇ ନେତା ।

+ +

'କଳ୍ପନା' କୁ ଆସୁଥିଲି ରିକ୍‌ସାରେ ସେଦିନ
ସାଙ୍ଗେ ଥିଲା ଛ' ବର୍ଷର ସାନ ପୁଅ 'ପପୁ'
ରାସ୍ତାର ଦକ୍ଷିଣ ପାର୍ଶ୍ୱ ପଡ଼ିଆକୁ ଚାହିଁ
ପଚାରିଲା ସିଏ—
'ଏଇ କାହାଘର ବାବା !
କେତେ ଗାଡ଼ି ତାଙ୍କ ଦୁଆର ମୁହଁରେ ଥୁଆ ହୋଇଚି ?'
ଉତ୍ତର ମୁଁ ଦେଇଥିଲି
'ସେ ଘର ହରେକୃଷ୍ଣ ମହତାବଙ୍କର ।'

+ +

        ପୁଣି ଦୁଇ ବର୍ଷ ପରେ
'ପ୍ରଜାତନ୍ତ୍ର' ପୂଜା ଭେଇଟାଇ ମୋତେ ସିଏ ପଚାରିଲା—
'ଯିଏ ଲେଖିଛନ୍ତି ଏଇ 'ଗାଁ ମଜଲିସ୍‌'
ସିଏ କ'ଣ ସେଇ ହରେକୃଷ୍ଣ ମହତାବ ?
ଯାହାଙ୍କ ଦୁଆରେ ବଡ଼ କୋଠା ଆଗରେ ଥିଲା ଗାଡ଼ିଗୁଡ଼ାକ ?
        "ହଁ ସିଏ" ।

+ +

ମୋ ଜନ୍ମପୂର୍ବରୁ ସେ ଦିନ
ମୋ ଗୋସବାପ କହିଥିବେ
ହରେକୃଷ୍ଣ ପାଠପଢ଼ା ଛାଡ଼ି ହରତାଳରେ ମାତିଲା
ଫିରିଙ୍ଗି ସାହେବ ତାକୁ ଦେବେ ପାନେ ।
ମୋ ବାପାଙ୍କ ମନରେ ସିଏ ଥିବେ ଏକ ବିସ୍ମୟର ପ୍ରତୀକ
ବାଲ୍ୟକାଳୁ ଆସି ହେଲା ମୋ ଯୌବନ ଶେଷ
ମୁଁ ଦେଖିଆସିଛି ତାଙ୍କୁ
ନେତା, କର୍ତ୍ତା ଆଉ ନିର୍ମାତା ରୂପରେ ।

ଊଣେଇଶ ଶହ ପଇଂତ୍ରିଶ ବର୍ଷ ପରେ
ଯାଇ ଅଛି
ପଇଂତିରିଶ ବର୍ଷ ଗ୍ଭଲି
ସେତେବେଳକାର ଯେତେ ମୋ ମନର ପ୍ରଶ୍ନବାଚୀ
ଆଜିପୁଣି ମୋ ପୁଅ ମନରେ !!

+ +

ଶତାବ୍ଦୀର ସୀମାକୁ ଛୁଇଁଲା ଯାହାର ଐତିହ୍ୟ
ତା ସ୍ମୃତିର ଇତିହାସ ଜୀବନ୍ତ ପ୍ରତୀକ
"ହସିବାର ମୂଳ ଦିଏ କ୍ରନ୍ଦନ ପ୍ରଳାପ"

+ +

ସିଏ ଥିଲା ଛାତ୍ର ଆଉ ବିପ୍ଳବୀ ସୈନିକ
ଯୁଦ୍ଧ କରି ଜୟ ରାଜ୍ୟ କଲା ଅଧିକାର
ସେ ଅମାବାସ୍ୟାର ଅନ୍ଧକାର ଚଳୁ
ସୂର୍ଯ୍ୟକୁ କରିଛି ଆହ୍ୱାନ

ସେ ସୂର୍ଯ୍ୟଙ୍କୁ ତୁମେ ଖାଲି ପ୍ରଣାମ କରିଲେ
ଚକ୍ଷୁ ତୁମ ହେବ ଉନ୍ମିଳିତ
ଗ୍ଲାନି ମନୁ ହେବ ଦୂର
ଅହଂକାର ଭେଦକରି—ସତ୍ୟ ଶିବ ସୁନ୍ଦରର
ହେବ ଉପାସକ
ହେବ ପୁଣି ନିର୍ଭୀକ ପ୍ରେମିକ ।

\+ \+

ସୌରଶକ୍ତି ସୁରଭିତ କରୁ ଏଇ ପୂତିଗନ୍ଧଭରା ନରକ ସଂସାର
ମୁଁ ଗାଉଛି ନିଶିଶେଷେ—ଗାଅ ପୁଣି ତୁମେ ମୋର ପ୍ରାଣର ସୋଦର
"ଯବା କୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବ ପାପଘ୍ନଂ ପ୍ରଣତୋସ୍ମି ଦିବାକରଂ ।"

Qr. No. VA-10/3
Unit-II
Bhubaneswar

***

# ସଂଗ୍ରାମୀ ବୀର ନିଅ ପ୍ରଣାମ

କୁଳମଣି ମହାରଣା

ସ୍ୱାଧୀନ ରାଇଜ ସ୍ୱାଧୀନ ସାରଥୀ ସ୍ୱାଧୀନ ମାନସ ନିଅ ପ୍ରଣାମ
ସ୍ୱାଧୀନ ବକ୍ତା ସ୍ୱାଧୀନ ଚେତା ସ୍ୱାଧୀନ ବିଜେତା ନିଅ ପ୍ରଣାମ ।

ସାରସ୍ୱତନଭ ପ୍ରଭ ପ୍ରଭାକର, ସାମ୍ବାଦିକ, ଐତିହାସିକ ପ୍ରବର
ଏକାଧାରେ ବହୁଗୁଣ ବିଭୂଷଣ ସଂଗ୍ରାମୀବୀର ନିଅ ପ୍ରଣାମ ।

ଅଗରପଡ଼ାର ଜ୍ୟୋତି ଅମଳିନ, କେଶରୀ କେ·ସରି ଉତ୍କଳ ଭୁବନ
ଏକାମ୍ରନିବାସୀ, ପ୍ରଜାତନ୍ତ୍ର ଶଶି, ମହାମନ୍ତ୍ର ଦାତା ନିଅ ପ୍ରଣାମ ।

ସ୍ୱତନ୍ତ୍ର ଉତ୍କଳ ଗଠନ ବିଭୂତି—ଅତୁଳ ସମ୍ପଦ ଅତୁଳ କୀରତି
ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ, ରାଜ୍ୟପାଳ, ବିପ୍ଳବୀଭୂପାଳ ନିଅ ପ୍ରଣାମ ।

ରାଜନୀତି ପଙ୍କ ଲଙ୍ଘି ଅଟଳ, ଅନ୍ଧ କମଳାକ୍ଷ, ମୂର୍ଖ ବାଚାଳ;
ଅକରୁଣା ବଳେ ଯେତେ ମହୀତଳେ କରୁଣା କଟାକ୍ଷେ ମହୀୟାନ ।

ମାଳ ମାଳ ମେଢ଼ ଥିଲେ ଚଉକତି; ମହତାବ ବିନା କାହିଁ ତା'ର ଦ୍ୟୁତି
ତାପ ତାପ ମହତାବ ପରତାପେ ଅରୂପ ସ୍ୱରୂପେ କୀର୍ତ୍ତିମାନ ।

ଉତ୍କଳେ ବିରଞ୍ଚି ଉତ୍କଳ କେଶରୀ ଉତ୍କଳ ରାଇଜ ଦିଶେ ହତଶିରୀ
ଭଷଣ ଭୂଷଣେ ପ୍ରଗତି ରପାଣ ଅଭିନେତା ନେତା ଜୟଗାନ ।

ଜନସେବାବ୍ରତ ମୋହର ମଗଜ, ସ୍ୱାର୍ଥମୟ ଯଜ୍ଞ ହୋତା ସାଜିଥାଇ
ଗଣିକା ସମାଜ ଲାଜେ ପଡ଼େ ନଇଁ ଗ୍ରହି ରାଜନୀତି ବିଧି ବିଧାନ ।

ଆସନ ପଦବୀ ଲାଗି ଭିଡ଼ା ଭିଡ଼ି, ଯଥା ସାରମେୟ କାମୁଡ଼ା କାମୁଡ଼ି
ଗୋପନ ପୀରତି, ପରକୀୟାରୀତି—ଜ୍ୱଳନ୍ତ ପ୍ରମାଣ ବିଦ୍ୟମାନ

କାଲି ଯେଦୁଥିଲା ସ୍ବରେ ମାତୃଭୂ, ଆଜି ପିନ୍ଧେ ପିତୃତ୍ୱର ଜୟମାଳ
କ୍ଷମତା ପଲୁବ୍ଧ ଦୁଃଶାସନ କରେ ସ୍ୱରାଜ୍ୟ ଦ୍ରୌପଦୀ ଦୃଶ୍ୟମାନ ।
ପୂଜ୍ୟ 'ବାପୂଜୀ' ଛିରଙ୍ଗା ଗଗିଣୀ, ଗଣ ପ୍ରହସନ ଚାଳେ ହଜିଲାଣି
ଆଦରଶ ଗାନ ପ୍ରବୀଣ ପ୍ରବୀଣା ଭେଜାଇ ଦୀପ୍ତି ଦୀପ୍ତିମାନ ।
ଗଣତନ୍ତ୍ର ତତ୍ତ୍ୱେ ଗଣଧରଷଣ, ଘେରୀ ଛୁରିମର ମାମୁଲି ପ୍ରମାଣ
ରକ୍ଷଣ ସନ୍ତାପ ଭକ୍ଷଣ ପ୍ରତାପେ କଳପନା ନାଟ ସମାଧାନ ।
କଳା କଳାକାର ସାହୁକାର ଭର, ପଞ୍ଚାକ୍ଷର ହାହାକାର ଦେଶଚାମ୍ପ
କଳଙ୍କି ମଣ୍ଡିତ ସରକାରୀ କଳା କଳରବେ ଚଳେ ଦେଶ ତମାମ ।
'କଣ୍ଟ୍ରୋଲ' ବ୍ୟାଧିରେ ସର୍ବହେଲେ କଣା, ଔଷଧ ବାଣ୍ଟନ୍ତି ବିଲୁଆ ଶାଗୁଣା
'କିଲାପୋତା' ମହାମନ୍ତ୍ରର କୁହୁକେ, ବହ୍ନି ବିନା ବହ୍ନି ବହ୍ନିମାନ ।
ବଡ଼, ମରୁଡ଼ିର କଳା, ଧଳା କେଶ; କାର ପୁଷ୍ପମାସ କାର ସର୍ବନାଶ
କଙ୍କାଳ ନିଗିଡ଼ା ଅର୍ଥ ସଙ୍କୀର୍ଣ୍ଣନେ ଉଦଣ୍ଡ ନର୍ତ୍ତନ ମୂର୍ତ୍ତିମାନ ।
ହରିଜନ ଆଦିବାସୀଆ ଉଦ୍ଧାର, କୁମ୍ଭୀର ନୟନୁ ଝରେ ଲୁହଧାର
"ହେଁସ କାହିଁପାଇଁ ଧୋଇବା" ବେପାର ଭେଅଟ ପ୍ରଗ୍ରର ଚାନମାନ ।
ପ୍ରଶ୍ନବାଚୀ ଯୋଗ୍ୟସ୍ଥଳେ ଜନ୍ମ ଦେଇ ଜନନୀ କାନ୍ଦୁଛି ଦ୍ୱାର ଆଉଜାଇ
ପୋଛିବାକୁ ଲୁହଧାର ଆଗଭର କର୍ଣ୍ଣଧାର କାହିଁ ତବ ସମାନ ।
'ଗାଆଁ ମଜଲିସ' ନିର୍ଭୀକ ବାରତା କୋଟି ଜନତାର ଅନ୍ତର ମନ୍ଥା
ଗଜନ ତି କ୍ଷେତ୍ର କ୍ଷେତ୍ରପାଳ ଚିତ୍ତ ଆରତ ସରିତେ କମ୍ପମାନ ।
ଦୁର୍ନୀତି 'ହିରଣ୍ୟ' କରେ ଅଟ୍ଟହାସ, ହରେକୃଷ୍ଣ ଧର 'ନରସିଂହ' ବେଶ
ବୟାଅସି ଜୟନ୍ତୀର ଅଭିଯାନେ 'କୁଞ୍ଜମଣି' ଭଣେ ନିଅ ପ୍ରଣାମ ।

*

# ନୂତନ ହୋଇ ବି ଆମେ ଆଜି ପୁରାତନ

ବିଶ୍ୱମ୍ଭର ପରିଡ଼ା

ଷାଠିଏ ବରଷ ତଳେ—
ଭୟ ତ୍ରସ୍ତ ଦୁର୍ଦ୍ଦିନର ଅମା ଅନ୍ଧକାରେ
ଅଭିଶାପ ଗ୍ରସ୍ତ ଏକ ସମାଜର ଦ୍ୱାରେ

ତମେ ଯେଉଁ ସ୍ୱପ୍ନ ଦେଖିଥିଲ
ଯାହା ପାଇଁ ତୂଳୀତଳ୍ପ ଶଯ୍ୟାକୁ ବି
ବିଷ ମଣିଥିଲ
ଯାର ସାର୍ଥକତା ପାଇଁ
ଜୀବନର ପ୍ରତି ମୁହୂର୍ତ୍ତକୁ
ତିଳ ତିଳ କରି ଢାଳିଥିଲ—
ତମରି ହାତ ରଚନା ସେଇ ଅଟ୍ଟାଳିକା ।

ଆଜିର ସମାଜ ପାଇଁ
ଯୁବ ଛାତ୍ର କର୍ମୀ ନେତା
ପ୍ରାବନ୍ଧିକ ସାମ୍ବାଦିକ
ସମସ୍ତଙ୍କ ପାଇଁ
ନୈରାଶ୍ୟର ବିସ୍ତୀର୍ଣ୍ଣ ପ୍ରାନ୍ତରେ ଏକମାତ୍ର ଯୋଗ୍ୟ ପାନ୍ଥଶାଳା ।

ନୂତନର ଧ୍ୱନି ଦେଇ ଯେତେ ଆସୁଛନ୍ତି
ଦି' ଦିନରେ ପୁରାତନ ପାଲଟି ଯାଉଛନ୍ତି
ମୋର ସେ ଅକ୍ଷୟ କବଚ
ଯାହାର ପରଶେ
ପୁରାତନ ସତତ ନୂତନ
ଅହୋରାତ୍ର ଅବିଶ୍ରାନ୍ତ ତାକୁ ଖୋଜୁଛନ୍ତି ।
ମିଳୁ ନାହିଁ ତାହାରି ସନ୍ଧାନ
ନୂତନ ହୋଇ ବି ଆମେ ଆଜି ପୁରାତନ ।



# ହେ ମହାନ୍

ଜ୍ୟୋତପ୍ରକାଶ କର

ହେ ମହାନ୍ ।
ତୁମେ ଆଜି ଏକଇ ଦିଗନ୍ତ
ଅନେକ ଜୀବନର ।
ତୁମେ ଆଜି ଏକଇ ସିଦ୍ଧାନ୍ତ
ଅନେକ ସିଦ୍ଧିର ।

ଏ ଜାତିର ପୂଜ୍ୟ ତୁମେ,
ଏ ମାଟିର ପୂଜ୍ୟ ।

ଜୀବନ ସଳିତା ତୁମ ଜଳିଛି, ଜଳୁଛି ଓ ଜଳିବ ଅନେକ କାଳକୁ,
ଦେଖାଇ ସେ ଆଲୋକ–ବର୍ତ୍ତିକା ଅନେକ ଜନ୍ମକୁ ।

ତୁମ ଲେଖନୀରେ ଆଜି କେତେ ଭୟଭୀତ,
ତୁମ ଲେଖନୀରେ ଆଜି କେତେ ଯେ ଚକିତ,
ହାତେ ଧରି ଲେଖନୀର ଜୟଟୀକା,
ତୁମେ ଆଜି ଫୁଟାଇ ଦିଅ ତ
ଏ ମାଟିର ଜୟଗୀତି,
ଏ ଜାତିର ଦେଶପ୍ରୀତି,
ଏ ରକ୍ତର ଟକମକ ତାତି ।

ହେ ମହାନ୍ !
ତୁମେ ଆଜି ସ୍ମରଣୀୟ ଏଜାତି ହୃଦରେ,
ତୁମେ ଆଜି ଲଲାଟୀକା ଏଜାତି ଲଲାଟେ ।

ଏ ଜାତିର ଶକ୍ତି ତୁମେ,
ଏ ଜାତିର ଇତି ।
ତୁମରି ସ୍ମରଣେ ଆଜି ଆମେ ଯେ ଗାଉଛୁ
ତୁମରି ସେ ଜୟଗୀତି ।
ହେ ପୂଜ୍ୟ ଅତିଥି !
ମନର କୁସୁମ ତବ, ଝରିଯାଉ ପଥେ,
ଏ ଜାତିର ମୁଖେ, ହସର ଝଲକ ପାଇଁ ।

ତୁମେ ସେଇ ପୂଜ୍ୟ ପୂଜା, ତୁମେ ଜାଗ୍ରତ ପ୍ରହରୀ,
ତୁମେ ଶାଶ୍ୱତ ତୁମେ ସାଗର ଲହରୀ

ହେ ବରେଣ୍ୟ !
ଏ ଜାତି ଐତିହ୍ୟ ଗାଇବ ତୁମରି ଗାଥା,
ତବ ପାଦେ ସଭିଏଁ ପାତିବେ ମଥା,
ଅଲିଭ ଦୀପାଳିରେ ଜଳିଯିବ,
ସମସ୍ତର ସେ ନିଛକ ସ୍ୱପ୍ନମାନେ
ହେଲେ ତୁମ ସ୍ମୃତି ( ନିତିମଲ୍ଲୀ ) ବିକଶିବ,
ଏ ଆକାଶ (ର) ଅବୁଝା ଛାତିରେ ।।



